# ଦ୍ୱୀପ ଓ ଅନ୍ୟାନ୍ୟ ଗଳ୍ପ

ଶ୍ରୀମତୀ ଯଶୋଧାରା ମିଶ୍ର



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ପ୍ରକାଶକ :

**ଶ୍ରୀ ଅନନ୍ତ ମିଶ୍ର**

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୨

ପ୍ରଥମ ସଂସ୍କରଣ :
ଜୟଦେବ ଜୟନ୍ତୀ
ଡିସେମ୍ବର, ୧୯୭୯

ମୁଦ୍ରାକର :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର
ପ୍ରସାଦ ପ୍ରେସ୍, କଟକ-୨

ମୂଲ୍ୟ :
ସାଦା ବନ୍ଧାଇ : ଟ ୧୨-୫୦ ପଇସା
ବୋର୍ଡ ବନ୍ଧାଇ : ଟ ୧୫-୦୦

# Dweepa O Anyonya Galpa

( Short-stories )

**Smt. Jashodhara Misra**

Published by
**Sri Anant Misra**
Cuttack Student's Store
Cuttack-2

First Edition : December, 1979

Printed by
Sri Raghunath Prasad Misra
Prasad Press, Cuttack-2

Price— Popular Rs. 12-50
Deluxe Rs. 15-00

*[ Paper used for printing of this book was made available by Government of Orissa at concessional rate ]*

# କୋଠରୀ

ସେଦିନ ଘରେ ଏକରକମ ନିସ୍ତବ୍ଧ ଚୁପ୍‌ଚୁପ୍ ଭାବ । ଉଦ୍ଧବ ବଜାର ସଉଦା କରି ଫେରୁ ଫେରୁ ଗାଡ଼ିତଳେ ଚାପା ପଡ଼ିଗଲା । ମୁଁ ଓ ବାପା ଦୁହେଁ ତାକୁ ନେଇ ହାସ୍‌ପିଟାଲ ଗଲୁ । ଫେରିଲାବେଳେ ଟାକ୍‌ସିରେ ବାପା ଚଷମା ଖୋଲି ରୁମାଲରେ ଆଖି ପୋଛିଲେ ଓ କହିଲେ—"ବହୁତଦିନରୁ ଘରେ ରହୁଥିଲା ଲୋକଟା, ବଡ଼ ମାୟା ଲାଗିଯାଇଥିଲା । ତୋତେ ତ ସେ କୋଳେଇ କାଖେଇ ମଣିଷ କରିଛି କହିଲେ ଚଳେ ।" ଶେଷଆଡ଼କୁ ତାଙ୍କ ଗଳା ରୁନ୍ଧି ଆସିଲା । ତାଙ୍କ ଚଷମାକଢ଼ା ମୁହଁର କୋହଠୁ ମୋତେ ବେଶି ଆଶ୍ଚର୍ଯ୍ୟ ଲାଗିଲା ତାଙ୍କର ଅନ୍ତରଙ୍ଗ ସ୍ୱର ଓ ସେ ଯେମିତି ଉଦ୍ଧବ କଥା ଅତୀତ କାଳରେ କହୁଥିଲେ—ଯେମିତି ଉଦ୍ଧବ ଆଉ ନାହିଁ, ମରିସାରିଲାଣି ।

ସତରେ ବୋଧହୁଏ ଉଦ୍ଧବ ବଞ୍ଚେ ଆଉ ବଞ୍ଚିବ ନାହିଁ । ମୁଁ ଫ୍ଲାପରେ ସାଥୀରେ ଯାଉଥିବା ଲୋକଙ୍କୁ ଶୁଣିବାରେ ମନ ଦେଲି । ବେଶ୍ କିଛିଦିନ ପରେ ବାପା ମୋତେ ସ୍ୱାଭାବିକ ସ୍ୱରରେ କଥା କହୁଥିଲେ । ତାଙ୍କର ବୋଧେ ଖିଆଲ ବି ନଥିଲା ସେ ମୋ ଉପରେ କେତେ ବିରକ୍ତ ଓ ଅସନ୍ତୁଷ୍ଟ ଥିଲେ ।

ଘରେ ପହଞ୍ଚିଲାବେଳକୁ ମା, ମୀନା, ସୁରି ସମସ୍ତେ ଦୁଆର ମୁହଁରେ—ମୁହଁରେ ଉଦ୍‌ବିଗ୍ନ ଭାବ । ବାପା ସେମାନଙ୍କୁ ବଖାଣି ବସିଲେ । ମୁଁ ଭିତରକୁ ଯାଇ ଜାମା, ଯୋତା ବଦଳେଇଲି । ଧୁଆଧୋଇ ହୋଇ ମୋ ପଢ଼ା-ଘରକୁ ଗଲି । ଘରଟି ବାସ୍ତବରେ ମୋର କୋଠରୀ, ମୋ ପଢ଼ା ଛଡ଼ିବାଯାଏଁ ତା' ନାଁ ପଢ଼ାଘର ରହିଯାଇଛି ସେ ଯାଉଛି, ଯଦିଓ ମୋ ପାଠ ତିନି ବର୍ଷ ହେଲା ସରିଲାଣି ।

ମୁଁ କିଛି କହିବା ପୂର୍ବରୁ ସେ ଦୀର୍ଘଶ୍ୱାସ ଛାଡ଼ି ଠିଆହେଲା ଓ ମୁଁ ବି । ଗେଟ୍ ଯାଏ ଦୁହେଁ ଚାଲିଲୁ ଓ ସେ ଗେଟ୍ ଟପି ଚୁପ୍‌ଚାପ୍ ଚାଲିଗଲା ତା' ଘରକୁ । ମୁଁ ସେଇଠି ଗେଟ୍‌କୁ ଆଉଜି ତା' ଯିବାବାଟକୁ ଚାହିଁ ଗୁଣିହେଲି—ଖାଲି ଆତ୍ମାଭିମାନ କ'ଣ ସବୁ ଚନ୍ଦ୍ରିକା ?

ପୁଣି ପଢ଼ାଘର । ମୀନା ଖାଇବାକୁ ଡାକିଆସିଲା । ବହିକୁ ଚାହିଁ ମନାକଲି । ଏଥରକ ମା ନିଜେ ଆସିଲେ । ବହି ଛାଡ଼ି ଅଳସ ଭାଙ୍ଗିଲି । ତା'ପରେ ଚଟାଣରୁ ମୋଜାଇକ୍‌କୁ ଚାହିଁ ଉତ୍ତର ଦେଲି—"ଜଣେ ସାଙ୍ଗ ଆଜି ଖାଇବାକୁ ଦେଲା ହୋଟେଲ୍‌ରେ । ଆଉ ଭୋକ ନାହିଁ ।"

ଅତି ପୁରୁଣା କେଉଁ ଜମିଦାରଙ୍କ ଘରଥିଲା କେବେ । ବଡ଼ ବଡ଼ କୋଠରୀମାନ କାନ୍ଥ ଦିଆଯାଇ ସାନ ସାନ କରାଯାଇଛି । ଆମେ ତା'ର ଗୋଟିଏ ଅଂଶର ଭଡ଼ାଟିଆ । ଚଟାଣରେ ମୋଜାଇକ୍, ନାଲି ସବୁଜ ରଙ୍ଗର ବଡ଼ ବଡ଼ ଫୁଲମାନ ଚଟାଣସାରା ।

ମା' ପଚାରିଲେ—କୋଉ ସାଙ୍ଗ ସେ ? ହଉ ହେଲା, ଭୋକ ନାହିଁ ତ ଅଳ୍ପ ଟିକେ ଖାଇବୁ ଆ ।

ମୁଁ ପାଦତଳର ସେଇ ରଙ୍ଗୀନ୍ ଫୁଲମାନଙ୍କୁ ଚାହିଁ ଉତ୍ତର ଦେଲି—ଜମା ଭୋକ ନାହିଁ ମା', ଖାଇବିନି ।

ତିନିଦିନ ପରେ ସବୁ କଥା ପୁଣି ନିତିଦିନିଆ ଗତକୁ ଚାଲି ଆସିଥିଲା । ଟେକାଟିଏ ପଡ଼ିଥିବାର ତରଙ୍ଗମାନ କ୍ରମେ ମିଳେଇ ଆସୁଥିଲା । ସକାଳବେଳା ଉଦ୍ଧବପାଇଁ ଖାଇବା ନେଇ ମୁଁ ହସ୍‌ପିଟାଲ୍‌କୁ ବାହାରି ପଡ଼ିଲି । ଗତକାଲି ସେ ଦୁଧ ଓ ଫଳରସ ପିଇଥିଲା । ବଞ୍ଚିଯିବ କି କ'ଣ । ମା' ଉଦ୍ଧବ ପାଇଁ ଖାଇବା ସଜାଡ଼ି-ଦେଲାବେଳେ ମୁଁ ଭାବୁଥିଲି, ମିଛଟାରେ ଏତେ ଖର୍ଚ୍ଚରେ ଏ ସବୁ ନେଇକରି ଯିବି ! କେଜାଣି, ଉଦ୍ଧବ ହୁଏତ ଆଦୌ ଖାଇ ନ ପାରେ । କାଲିଠୁ ତା' ଅବସ୍ଥା ଆହୁରି ଖରାପ ହୋଇଯାଇ ଥାଇପାରେ । ହୁଏତ ସେ ମରି ବି ଯାଇଥାଇପାରେ । ମା'କୁ ଦେଖି ହଠାତ୍ ଚିଡ଼ିମାଡ଼ିଲା । ଏଇ ମୋତେ ଦୁନିଆଁକୁ ଆ[illegible]ଛି । [illegible]ବ ଟିକିଏ ବି ଚିନ୍ତିତ ନୁହେଁ, ମୋ ମନ ଭିତରଟାରେ କ'ଣ ଅଛି ଜାଣିବା ପାଇଁ ।

ରାନ୍ଧବାଡ଼ି ଖାଇବାକୁ ଦେବ । ଏଇ ଯେମିତି କାଳିଆକେ ଉଦ୍ଧବଙ୍କୁ ଶୋଉଥିଲା, ଆଜି ତା' ଲାଗି ଖାଇବାକୁ ସଜାଡ଼ି ପଠାଇ ଦେଉଛି, ସେ ମରିବାକୁ ବସିଛି ବୋଲି । ଖାଲି ବାହାରିଆ ଦେହଟା ବ୍ୟତୀତ ଆଉ କ'ଣ ବୁଝେ ସିଏ ? ମୀନା ବସି ତା'ର ସାଙ୍ଗ ମାଳିମାଠୁ କ'ଣ ସିଲେଇ ଶିଖୁଛି । ବିଛଣା ଉପରେ କାନ୍ଥରେ ତକିଆକୁ ଆଉଜି ଗୋଡ଼ ଲମ୍ବେଇ ବସିଛନ୍ତି ଦୁହେଁ ଓ ଫିସ୍ ଫିସ୍ ଗପି ମଝି ମଝିରେ କୁର୍ କୁର୍ ହୋଇ ହସି ଲୋଟିଯାଉଛନ୍ତି । ତା' ସାଙ୍ଗଟି ଦେଖିବାକୁ ମନ୍ଦ ନୁହେଁ, ଯଦି ଓ ମୋ ସାଙ୍ଗେ ଅଦ୍ୟାବଧି ତାକୁ କଥା କୁହେଇ ଦିଏନାହିଁ ମୀନା । ହଠାତ୍ ମାଳିମାର ଆଖି ପଡ଼ିଲା ମୋ ଉପରେ ଓ ମୁଁ ତାକୁ ଅନେଇଁଥିବାର ଜାଣି ତା'ର ହସ ଥମିଗଲା । ଏବେ ନର୍ଭସ ଦେଖାଯାଇ ସୂତା ଚୁଟୁମି ଛୁଞ୍ଚିରେ ଗଳାଉଛି । ମୀନା ତାକୁ କହୁଣିରେ କେଞ୍ଚି କ'ଣ କହୁଛି; କିନ୍ତୁ ସେ ଶୁଣୁନାହିଁ ।

ଘରୁ ବାହାରି ଆସିଲାବେଳକୁ ବାପା ଦାଣ୍ଡଘରେ ବସିଛନ୍ତି । ମୋତେ ଦେଖି ଖବରକାଗଜ ଆଡ଼େଇ ଅନାଇଲେ, ପୁଣି ମୁହଁଟାକୁ ଆଉଟିକେ ଓହଳାଇ ଖବରକାଗଜ ଘୋଡ଼େଇ ଦେଲେ । ସବୁକିଛି ପୂର୍ବାବସ୍ଥାକୁ ଫେରି ଆସିଛି ।

ବାଟରେ ଯାଉଁ ଯାଉଁ ଅନେକ ବୃଦ୍ଧଙ୍କୁ ଭେଟିଲି—ଶଟାପ୍ଲାର୍ କରି ବ୍ୟାଗ୍ ଧରି ବଜାରକୁ ଯାଉଥିବା କିମ୍ବା ସାମ୍ନା ପାନଦୋକାନରୁ ଅଫିସ୍ ବାଟରେ ପାନଖଣ୍ଡେ ଚୋବାଇବା ପାଇଁ ଯାଉଥିବା ପ୍ରୌଢ଼ମାନେ । ଏମାନେ ବି ସକାଳୁ ଖବରକାଗଜ ଡାଙ୍କି ଡୁଙ୍କି ବସୁଥିବେ, ପୁଅମାନଙ୍କୁ ମନକଥା ବୁଝାଉ ନ ଥିବେ କି ବୁଝୁ ନ ଥିବେ । ଅଶାନ୍ତ ଖାଉଥିବେ, ଦେଉଥିବେ । ଝିଅମାନଙ୍କୁ ଦେଖିଲି । ଗର୍ବରେ ଛାତି ଫୁଲାଇ ବହିଯାକ ବସ୍‌କୁ ଅପେକ୍ଷା କରୁଥିବା ଅନେକ ତରୁଣୀ । ଏଇମାନେ ଭାଇ କି ପ୍ରେମିକଙ୍କୁ ବୁଝୁଥିବେ କେବେ ହେଲେ ? ସମ୍ବେଦନା ଭଲ ଦେଖାଉଥିବେ ?

ବାଟରେ ମୋ ସାନଭାଇର ସ୍କୁଲ ପଡ଼ିଲା । ମୁଁ ଖେଳପଡ଼ିଆରେ ଖେଳୁଥିବା ପିଲାଙ୍କୁ ଚାହିଁଲି । ଭାବିଲି ନ ପାଇ ଯେଉଁ ଦୁବଳା ହେଲା ଟେଙ୍ଗା ପିଲାଟି ଉଦ୍ଧତ ଭଙ୍ଗୀରେ ବଲ୍‌ଟିକୁ ଗଡ଼େଇ ନେଉଛି, ସେ ନିଶ୍ଚୟ ମୋ ଭାଇ ସୁର ଛଡ଼ା ଅନ୍ୟ କେହି ନୁହେଁ । ଉଦ୍ଧତ । ମୋତେ ବେଖାତିର କରୁଛି । ତୋତେ **କୋଳେଇଛି, କାନ୍ଧେଇଛି ମୁଁ, ଜାଣୁ ?**

ତା'ପରେ ଖବରେ ଶୀଘ୍ର ଶୀଘ୍ର ପାଦୁଣ୍ଡ ପକାଇଲି । ଆଜି ବସ୍‌କୁ ଅପେକ୍ଷା କଲି ନାହିଁ । ହଁଅ—କୋଉ ବେଳର ଅଭାବ ହେଉଛି, ମୋ ପାଇଁ ବା ଉଦ୍ଧବପାଇଁ (ଉଦ୍ଧବ ମରି ଯାଇଁ ବା ତଫାତ୍ କ'ଣ ?)

ହସପିଟାଲଟରେ ପହଞ୍ଚି ଅନେକ ବିଷଣ୍ଣ ମୁହଁ ଓ ଧଳାକନ୍ଦ୍ରପ ଟପି ଉଦ୍ଧବର ୱାର୍ଡ଼ରେ ପହଞ୍ଚିଲି । କେମିତି ଖାଲି ଖାଲି ଦେଖାଯାଉଛି । ଉଦ୍ଧବର ମୁହଁରେ ଧଳା ଚଦର ଢଙ୍କାଯାଇଛି । ହଁ, ଏଇ ଦଶମିନଟ୍ ଆଗରୁ ମଲା ସିଏ । ଦଶଟା କୋଡ଼ଏରେ !

ଫେରିଲାବେଳେ ମୁଣ୍ଡ ଉପରେ ଟାଙ୍ଗି ଟାଙ୍ଗି ଖରା । ଶୋକ ଓ ବିତୃଷ୍ଣାରେ ପେଟ ଭିତର ଆଉଟି ହୋଇ ବାନ୍ତି ବାନ୍ତି ଲାଗୁଛି । ବାଟରେ ସୁରର ସ୍କୁଲ ପଡ଼ିଲା । ଅନେକ ତରୁଣୀ ତଥାପି ବସ୍‌କୁ ପ୍ରତୀକ୍ଷା କରୁଥିଲେ ଓ ବୃଦ୍ଧମାନେ ଦୋକାନ ସାମ୍ନାରେ ଖବରକାଗଜ ମେଲି ପାନପାଇଁ ଅପେକ୍ଷା କରୁଥିଲେ ।

ଘରକୁ ପଶିଲି । ବାପା ଦାଣ୍ଡଘର ଖଟରେ ଶୋଇଥିଲେ । କବାଟ ଫାଙ୍କରେ ମୁଣ୍ଡଟେକ ଗୁହାଁଲେ, କ'ଣ କଥା ମୋଠୁ ଆଶା କରୁଥିଲେ କି କ'ଣ ! ଭିତରେ ରୋଷେଇଘର ଦୁଆର ମୁହଁରେ ଦେଖିଲି ମଫସଲି ଟୋକାଟିଏ ବସିଛି ଚୁନାତାନ ହୋଇ ଓ ମା' ମଝିରେ ମଝିରେ ରୋଷଘର ଦୁଆରମୁହଁକୁ ଆସି ତାକୁ ସାଙ୍କୁଲେଇଲା ସ୍ୱରରେ କ'ଣ ସବୁ କହୁଛି । ମୋତେ ଓ ମୋ ହାତରେ ସକାଳର ଭର୍ତ୍ତି ବ୍ୟାଗକୁ ଦେଖି ମା' ଥମକି ଠିଆ ହେଲା ଓ ପଚାରିଲା—"କ'ଣରେ, ଉଦ୍ଧବ କେମିତି ଅଛି ?" ମୁଁ ବ୍ୟାଗ୍ ତଳେ ଥୋଇଦେଲି ଓ କହିଲି—"ଉଦ୍ଧବ ମରିଗଲା । ଆଜି ସକାଳ ଦଶଟା କୋଡ଼ଏରେ ।"

"—ଆଁ ! କ'ଣ କହିଲୁ ?" ମା' ଆଖି ବଡ଼ ବଡ଼ କରି ଘୁନାଆଁ ଗଳାରେ ପଚାରିଲା; କିନ୍ତୁ ମୁଁ ଦେଖିଲି ସେ ଅନୁମାନ କରିସାରିଥିଲା ।

ଟିକିଏ ପରେ ମା' ଲୁହ ପୋଛି ପୋଛି ମୋ ପଢ଼ା ଘରକୁ ଆସିଲା ।

ପଚାରିଲା—"ଉଦ୍ଧବର....."

କହିଲି—ତା'ର ସବୁ ବନ୍ଦୋବସ୍ତ ମୁଁ କରିଆସିଛି । ଟଙ୍କା ଥିଲା । ତାକୁ ଘରକୁ ଆଣି ଆଉ ଲାଭଟା ବା କ'ଣ ହୋଇଥାନ୍ତା ?

ମା' ଆଉଥରେ ଆଖି ଚପୁଡ଼ି ଲୁହ ପୋଛିଲା । ଯାଉ ଯାଉ କହିଲା—"ଗାଧୋଇପଡ଼ ଯା, ସେଇ ଲୁଗାରେ ଆଉ ବସ୍‌ନା । ଯାହା ହେଲେବି···"

ଉପରଓଳି, ସାଢ଼େ ଚାରିଟା ହେବ କି କ'ଣ, ଖରାର ତେଜ କମି ନ ଥାଏ । ଦେଖିଲି ଉଦ୍ଧବ ବୈଠକଖାନାର କଡ଼ ବାରଣ୍ଡାର ଯେଉଁ କୋଣଟିରେ ତା'ର ପେଡ଼ି ଗଣ୍ଠିଲି ରଖିଥାଏ ସେଠି ମାଆ ଓ ମୀନା ଠିଆ ହୋଇଚନ୍ତି । ସେ ମଫସଲୀ ଟୋକାଟି—ସେ ଉଦ୍ଧବର ପୁତୁରା, ଖବର ପାଇ ଆସିଛି—ଉଦ୍ଧବର ପେଡ଼ି ଗଣ୍ଠିଲି ଖୋଲି ଗୋଟି ଗୋଟି ଜିନଷ କାଢ଼ୁଥାଏ—ମଇଳା ତେଲଚିକଟା କନ୍ଥା, ଜାମା, ଧୋତି ଲୁଙ୍ଗି, ଫଟା ଦର୍ପଣ ପାନଆ, ମଇଳା ଚଟିବହି କେତୋଟି —କ'ଣ ପୁରାଣଗୁଡ଼ିଏ ବୋଧେ ।

ହଠାତ୍ ମୋତେ ଚମକାଇ ଦେଇ ମୀନାର ଅଧା ହସଚପା ସ୍ୱର ଶୁଭିଲା, "ଆରେ ଆମ ଉଦ୍ଧବ ଦଶକୁମାର ଚରିତ ବି ପଢୁଥିଲା ନା କ'ଣ ?"

ଉଦ୍ଧବ ବୁଢ଼ାର ଭୁକୁଣ୍ଡିଆ ମୁହଁ, କୋଣିଆ ଆଖି, ଖେଣ୍ଟା ଖେଣ୍ଟା ଦାଢ଼ି ସଙ୍ଗେ ଦଶକୁମାର ଚରିତକୁ ଖାପ୍ ଖୁଆଇବାକୁ ଯାଇ ମୋ ଓଠକୁ ବି ଅଳ୍ପଟିକେ ହସ ଚହଲି ଆସିଲା । ମା' ବି ଦୁଃଖ ଫେଣ୍ଟାଫେଣ୍ଟି କରି ମୁହଁକୁ ହସଟିଏ ଆଣିଲା; କହିଲା—"ହଁ, ହଁ ଦି'ପହରରେ ଖାଇସାରି ସେ ଏଇଠି ବସି ଭୁନୁରୁ ଭୁନୁରୁ କ'ଣ ସବୁ ପଢ଼େ । ବରଷ ସେଇଥର ପ୍ରଥମେ ଆସିଲାବେଳେ ଓଡ଼ିଆ ବହି କେଇଖଣ୍ଡ ଆଣିଥିଲା ଯାହା, ରହିଯାଇଥିବ ସେତକ ।"

ଦଶବର୍ଷ ତଳେ ଆମ ସହିତ ଉଦ୍ଧବ ଓଡ଼ିଶା ଛାଡ଼ିଲା । ସେ କାଳେ ମୋ ଛିଲାଦିନୁ ଆମଘରେ ରହିଆସିଛି । ଆମେ କେଉଁ ପ୍ରତି ଛୁଟିରେ ଘରକୁ ଯାଉ, ଓଡ଼ିଶା । ସିଏ ଘର ଜଗେ, କହେ ପରେ କେବେ ଯିବ । କେବେ କାହିଁ ଯିବାକୁ ଇଚ୍ଛା କରେ ନାହିଁ । ତା' ଘରେ କେହି ନାହାନ୍ତି କାଳେ । କେବଳ ତା'ର

ଝିଅଟିଏ, ବାହାହେଇ ସୁଖରେ ଅଛି ବୋଲି କହେ, ଯଦିଓ ତାଠୁ କେବେ ଚିଠିପତ୍ର ଆସେ ନାହିଁ ।

ଉଦ୍ଧବ ବୁଢ଼ା କଳ୍ପ ଦଶକୁମାର ଚରିତ ପଢ଼ୁଥିଲା ବୋଲି ମୋର ଧାରଣା ନଥିଲା । ଭଲା ଟି କ'ଣ ଠାକୁର ଫାକୁରଙ୍କ ବହି ଆଉ ପଢ଼ୁଥିବ ବୋଲି ମୁଁ ଭାବିଥିଲି । ଏଇ ଅନ୍ଧାରିଆ ବାରଣ୍ଡା କଡ଼ଟି ତା'ର ଗୁପ୍ତ ହାବୁଜ କୋଠରୀଟିଏ, ସେଇଥିରେ ସେ ତା'ର ସଂସାର ପାତି ରହିଛି ବୋଲି ମୁଁ କେବେ ଲକ୍ଷ୍ୟ ବି କରିନାହିଁ । ମଇଳା ବହିଟିକୁ ଉଦ୍ଧବର ସେ ଅପନା ଅନ୍ଧାରିଆ ବାରଣ୍ଡାକଡ଼କୁ ଫିଙ୍ଗିଦେଇ ମୁଁ ମୋ ପଢ଼ାଘର ଆଡ଼େ ଚାଲିଲି । ମୁଣ୍ଡ ଭିତରଟା ପଥର ଭଳି ଭାରି ଓ ଦେହଟା ଅବସାଦରେ ଚୂନା ହୋଇ ଯାଉଥିଲା ।

ମୋ ପଢ଼ାଘର ଚଟାଣରେ ମୁଁ ବଡ଼ ସାବଧାନରେ ପାଦ ପକାଉଥିଲି, ସତେ କି ଅତି ଯତ୍ନରେ ସବୁ ରଙ୍ଗୀନ୍ ଫୁଲର ସେ କୋଟୀକାମ ସବୁ ମୁଁ ପାଦ ପକାଇଲେ ମାତ୍ରେ ଲେସି ହୋଇଯିବ । ରଙ୍ଗୀନ୍ ଫୁଲ ସବୁ ଯିଏ ଯା ଜାଗାରେ, ଭାବୁଥିଲି ଗୋଟିକର ପାଖୁଡ଼ାଟିଏ କି ରଙ୍ଗଟିଏ ବି ଆଉ କାହା ଭିତରକୁ ଚାଲି ଆସିନି । ଲାଗି ଲାଗି ଅଲଗା ଅଲଗା ଥୁଆ ହୋଇଛନ୍ତି ଜ୍ୟାମିତିକ ଫୁଲମାନ ।

ବାପା ବୋଧେ ଦାଣ୍ଡଘରେ ବସିଛନ୍ତି ଏଯାଏଁ ? ମୁଣ୍ଡରେ ହାତ ଦେଇ କ'ଣ ଭାବୁଛନ୍ତି ? ଉଦ୍ଧବ ପାଇଁ କରୁଣାର୍ଦ୍ର ହୋଇଛି ମନ ନା ତାଙ୍କ ଫ୍ୟାକ୍ଟେରୀ ଷ୍ଟ୍ରାଇକ୍ ନେଇ ଉଦ୍‌ବେଗ ? କେଉଁ କେଉଁ ଚିନ୍ତା ଓ ଦୁଃଖ କ୍ରୋଧ ସ୍ମୃତି ଫେଣ୍ଟାଫେଣ୍ଟି ଭାବର ଘଟଣା ସବୁ ଏବେ ରେଳଗାଡ଼ି ଭଳି ଛୁଟିଥିବେ ତାଙ୍କ ମନ ଭିତରେ ? ମୀନା ତା' ଅଧାକଟା ସିଲେଇ ଯାତ୍ରୁ ଯାତ୍ରୁ ଝରକାବାଟେ ଦେଖିଥିବା କେଉଁ ଯୁବକର ମୁହଁ ମନେ ପକାଉଛି ନା ବର୍ଷକ ତଳେ ଛାଡ଼ିଥିବା କଲେଜ ବାରଣ୍ଡାର କେଉଁ କେଉଁ ସ୍ମୃତି ? ମାଆ ତା ଚୂଲି କଡ଼େଇ ଝଣଝାଣ୍ ପାଖେ କ'ଣ ସବୁ ଗପି ଯାଉଥାଏ; ତା' ମୁଣ୍ଡ ଭିତରେ ହାଉଜାଉରୁ ଗୁଣିଆଣି । ଗତକାଲି ଦାସ୍ ବାବୁଙ୍କ ସ୍ତ୍ରୀଙ୍କ ଆଗରେ ଗପୁଥିଲି ଉଦ୍ଧବର ଗୁଣ । ତା'ପରେ ଦାସ୍ ବାବୁଙ୍କ ସ୍ତ୍ରୀ ଧୀର ଓ ଅଧାଶୁଣା ଗଳାରେ କ'ଣ ସବୁ ପାରିବାରିକ କଥାକହି ଆଖି ପୋଛୁଥିଲେ ।

ସୁରନ୍ଦା ତା' ହଳଦିଆ ସ୍କୁଲ୍ ବିଲ୍ଡିଂ ଛାଡ଼ିଥିବଣି, ହୋଇ ବାରଣ୍ଡାର ମୋଡ଼ରୁ ଚଟ୍ କରି ବାହାରି ଆସୁଥିବ ହୁଏତ । କାଲିକାର ବକଟେ ଥିଲୁ ସୁରେ । ମୁଁ ତୋତେ କୋଳେଇଛି କାଖେଇଛି କେତେ । ଏବେ କନ୍ତୁ ତୋ ହଳଦିଆ ସ୍କୁଲ୍ କାନ୍ଥରେ କେତେ କ'ଣ ଗାରେଇଚୁ, କ୍ଲାସ୍ ରୁମ୍ ଡେସ୍କ୍ ତଳେ କେତେ ଚିନାବାଦାମ ଚୋପା ପକେଇଚୁ, ମୁଁ କେବେ ବି ଜାଣି ପାରିବି ନାହିଁ । ତୁ ଆଜି ଅଣନିଃଶ୍ୱାସୀ ଉତ୍ତେଜନାରେ ସାଇକିଲ୍ ମେଳରେ ପଡ଼ିଆରେ ବଲ୍ ଗଡ଼େଇ ନେଉଥିଲୁ, ମୁଁ ଏ ତା ଦାହାର ରାସ୍ତାରୁ ଅନେଇଁ ତୋତେ ଠିକ୍ କରି ଚିହ୍ନି ବି ପାରିଲି ନାହିଁ ।

ଉଦ୍ଭବ ବଟର ଆଜି ମରିଗଲା । କାଲିଠୁ ଗୁଜର ଚିଲିଟିଏ ଦେଖିବାକୁ ପଡ଼ିବ ।

# ଅନ୍ଧାର

ପରୀକ୍ଷାର କିଛିଦିନ ପୂର୍ବରୁ—ପରୀକ୍ଷା ଚିନ୍ତାଟା ଯେତେବେଳେ ଭୂତ ଭଳି ମୁଣ୍ଡରେ ମାଡ଼ି ବସିଥାଏ, ସେତେବେଳେ ସ୍ୱପ୍ନରେ ଚଢ଼ୁ ଚଢ଼ୁ ହଠାତ୍ ଲିଫ୍ଟ୍ ଖସିଗଲେ ଯେମିତି ଲାଗେ, ପିଣ୍ଟୁ ଆସି ଚହଙ୍କିଗଲେ ବି ମୋତେ ଠିକ୍ ସେମିତି ଲାଗେ । ସମୟ ନଷ୍ଟ ହେଲା ବୋଲି ତ ଗୋଟାଏ ନିଶ୍ଚିତ ହତାଶ ଭାବ ତା' ସାଙ୍ଗେ ସାଙ୍ଗେ ନିଜର ଦୋଷ ନୁହେଁ ବୋଲି ଏକରକମ ଦାୟିତ୍ୱମୁକ୍ତ ଓ ଅନ୍ତତଃ କିଛି ସମୟ ପାଇଁ ପରୀକ୍ଷା ଚିନ୍ତା ଓ ପରିଶ୍ରମରୁ ଅନିର୍ଦ୍ଦିଷ୍ଟ କାଳପାଇଁ ବିଶ୍ରାମ । ଆଉ ହଠାତ୍ କିଛି ନୋଟିସ୍ ନ ଦେଇ ପିଣ୍ଟୁ ଯେମିତି ଚେଆର୍ ଛାଡ଼ି ଉଠେ, ସେତେବେଳେ ବି ଠିକ୍ ସେମିତି ଲିଫ୍ଟ୍ ହଠାତ୍ ଖସିଆସିବାର ସମସାମୟିକ ଅନୁଭୂତି—ହଠାତ୍ ଦାୟିତ୍ୱବୋଧର ଜାଗରଣ ଓ ତା'ସଙ୍ଗେ ସାଙ୍ଗେ ନିଜେ ଅଜାଣତରେ ସମୟ ନଷ୍ଟ ଜନିତ ବିରକ୍ତି ତଥା ନିଭୃତ ଇଚ୍ଛା—ବିଘ୍ନଟା ଆଉ କିଛିକ୍ଷଣ ରହିଯାଇଥାଆନ୍ତା ଯଦି !

ପିଣ୍ଟୁ ଏମିତି ପରୀକ୍ଷା ସମୟଟାରେ (ବା ଯେକୌଣସି ସମୟରେ ହେଉ) ଆସିଲେ ମୋ ସମୟ ନଷ୍ଟ କରୁଥିବା ଯୋଗୁଁ ମୌଖିକଭାବେ ଦୁଃଖିତ ବି ହୁଏନି । ସିଏ ଆସି ଗପ କରେ—କୋଉ ଫିଲ୍ମ୍ ସୁଟିଂବେଳେ ହିରୋ ହିରୋଇନ୍‌କୁ ଚୁମୁଟିଲା ଓ ପ୍ରତିବଦଳରେ ଚାପୁଡ଼ା ଖାଇଲାଠାରୁ ଆରମ୍ଭ କରି ପରବର୍ତ୍ତୀ ଇଲେକ୍‌ସନ୍‌ରେ ଜିତିବ ବୋଲି କେଉଁ ନେତା କି ପଲିସି କରୁଛନ୍ତି ଓ ଶେଷତଃ ଆମ କଲେଜ ବିଉଟି ସନ୍ଧ୍ୟା ଦାସ ରାତି ବାରଟାରେ ତା' ହଷ୍ଟେଲରୁ ଗୋଟାଏ କଳା କାର୍‌ରେ ଯିବା ସେ କେମିତି ନିଜ ଆଖିରେ ଦେଖିଛି ଇତ୍ୟାଦି । ଆଉ ଯେଉଁଦିନ ସେ ସିରିୟସ୍ ମୁଡ୍‌ରେ ଥାଏ ନିଜ କବିତା ପଢ଼ାଏ । ଭଲ କବିତା ବୋଲି ମୁଁ ଯଦିଓ କହିପାରିବିନି (ପପୁଲାର କବିଙ୍କ ଧାଡ଼ିଏ ଦି'ଧାଡ଼ି

ସେଥିରୁ ମୁଁ ଚିହ୍ନି ପାରେ) କବିତାଗୁଡ଼ିକ ତା'ର ଗଭୀର ଅନୁଭୂତିଗୁଡ଼ିକର ପରିପ୍ରକାଶ ବୋଲି ପିଣ୍ଟୁ କେବେକେବେ ବିଶ୍ୱାସ ଜନ୍ମାଏ ।

ସେଦିନ ସନ୍ଧ୍ୟାରେ ପିଣ୍ଟୁ ଆସିବା ପୂର୍ବରୁ ବହିକୁ ଚାହିଁ କପାଳରେ ଆଙ୍ଗୁଠି ଘଷି ଘଷି ମୁଁ ଚିନ୍ତା କରୁଥିଲି । ଏ ସମସ୍ତ ବହି ମୋତେ ଉଦରସ୍ଥ କରିବାକୁ ହେବ ପରୀକ୍ଷା ଆଗରୁ—ଅନ୍ତତଃ ମୋ ପାଇଁ ପରୀକ୍ଷାରେ ଭଲ କରିବାକୁ ହେଲେ ତା' ଛଡ଼ା ଆଉ ଉପାୟ କିଛି ନାହିଁ ଓ ପରୀକ୍ଷାରେ ଭଲ କରିବା ଦରକାର । କାରଣ ଏ ରେଜଲ୍ଟ ଅନୁଯାୟୀ ମୋର ପରବର୍ତ୍ତୀ ପାଠ୍ୟକ୍ରମ ନିର୍ଣ୍ଣିତ ହେବ ଓ ତତ୍‌ପରବର୍ତ୍ତୀ ରେଜଲ୍ଟ ବି କିଛି ପରିମାଣରେ ନିର୍ଭର କରିବ; ସର୍ବୋପରି ମୋର ସ୍ୱପ୍ନର ଭବିଷ୍ୟତ ଗଢ଼ିବାକୁ ଏ ସମସ୍ତ ଉଦରସ୍ଥ ବହି ଓ ପରୀକ୍ଷା ଫଳର ଦରକାର ହେବ । ସକାଳୁ ବହି ପାଖେ ବସି ବସି ମୁଁ ସନ୍ତୋଷଜନକଭାବେ ପଢ଼ିପାରି ନ ଥିଲି । ଏଇ କିଛି ସମୟ ଆଗରୁ ଇଚ୍ଛା ହେଉଥିଲା—ଗୋଲି ମାରି ସେ ବହିପତ୍ରକୁ, ସେକେଣ୍ଡ୍ ସୋ'ଟାଏ ଦେଖି ଆସିଲେ ହୁଅନ୍ତା; କିନ୍ତୁ ମୁଁ ଜାଣେ, ସେକେଣ୍ଡ୍ ସୋ'ରୁ ଫେରିଲାପରେ ବହି-ପୃଷ୍ଠାରେ ବା ବିଛଣାରେ ପଡ଼ିଲା ପରେ ନିଦ ଆସୁ ନ ଥିବା ଆଖି ସାମ୍ନାରେ ବାପାଙ୍କ କୁଞ୍ଚିତ କପାଳ ଆଉ ମା'ର କରୁଣ ଆଖି ଦିଶିଯିବ । ମୋ ବହିଥାକରୁ ବାପା ଦେଇଥିବା କେତୋଟି ମହାପୁରୁଷଙ୍କ ଜୀବନୀ ମୋତେ ଗମ୍ଭୀର ଓ ସନ୍ଦିଗ୍ଧ ଆଖିରେ ଚାହିଁଥିଲେ । ଏଥିରୁ କେତୋଟିରେ ବାପାଙ୍କର ଯୁବାବସ୍ଥାର ସ୍ୱାକ୍ଷର ରହିଛି । ସେ ବି ବୋଧହୁଏ ମୋ ପରି ଏକ ସ୍ଥିର ଉଜ୍ଜ୍ୱଳ ଭବିଷ୍ୟତର କଳ୍ପନା କରୁଥିଲେ । ତେବେ ବାପାଙ୍କର ଜଣେ ସ୍ୱଚ୍ଛଳ, ସୁଖୀ, ସାମାଜିକ ନାଗରିକ ହେବାପାଇଁ ଅନେକ ଯୋଗ୍ୟତା ଥିବାସତ୍ତ୍ୱେ ସେ ତାଙ୍କ ଆକାଙ୍କ୍ଷାର ଅନୁପାତରେ ମର୍ମନ୍ତୁଦଭାବେ ଫେଲ୍ ମାରିଛନ୍ତି । କପାଳରେ ଆଙ୍ଗୁଠି ଘଷି ମୁଁ ମନକୁ ଦୃଢ଼ କରୁଥିଲି, ଭାଙ୍ଗି ପଡ଼ିଲେ ଚଳିବ ନାହିଁ । ବାପାଙ୍କର ବ୍ୟର୍ଥତାର ଛାପମରା କୁଞ୍ଚିତ କପାଳରେ ମୋ'ପାଇଁ ଯେତିକି ସ୍ୱପ୍ନ, ମା'ର କରୁଣ ଆଖିରେ ମୋପାଇଁ କେତେ ଗର୍ବ, କେତେ ଆଶା ! ମୋର ସାନ ସାନ ଭାଇଭଉଣୀ, ଯେଉଁମାନେ ଆଜିକାଲି ମୋର ଗମ୍ଭୀର ମୁହଁକୁ ଦେଖି ସସମ୍ମାନ, ଶଙ୍କିତ ଗଳାରେ କଲେଜ କଥା ପଚାରନ୍ତି, ମୋ ଅନୁପସ୍ଥିତିରେ ମୋ ବହିପତ୍ର ଛୁଇଁଯାଆନ୍ତି ଓ ମୋତେ ନେଇ ତାଙ୍କ ସାଙ୍ଗମହଲରେ ଗର୍ବ କରନ୍ତି—ସେମାନଙ୍କ ଆଗରେ ବି ତ ମୋତେ ଆଦର୍ଶ ହେବାକୁ ହେବ । ଅଦୂର ଭବିଷ୍ୟତରେ

ମୋତେ ହୁଏତ ସେମାନଙ୍କ ଦାୟିତ୍ୱ ନେବାକୁ ପଡ଼ିପାରେ । ମୁଁ ହିଁ ଏକୁଟିଆ ମୋତେ ଭଲ ପାଉଥିବା, ମୋର ଆଡ଼କୁ ଚାହିଁ ରହିଥିବା କେତେଜଣଙ୍କର ଭବିଷ୍ୟତ, ଆଶା ଭରସା ସବୁ । ଆଗରେ ମୋର ଗୋଟାଏ ଭାରି, ଗମ୍ଭୀର ଉଜ୍ଜ୍ୱଳ ଭବିଷ୍ୟତ ଯାହାପାଇଁ ମୋତେ ଆଜିଠୁଁ ନିୟମିତ କସରତ କରିବାକୁ ହେବ ।

ଏତେବେଳେ ପିଣ୍ଟୁ ଆସି ପହଞ୍ଚିଲା, ତା'ର ସେଇ ବିରକ୍ତ ପିରିୟଡ଼ ମୁଡ୍‌ଟାଏ ନେଇ । ଦାମି, ଛପା ପେଣ୍ଟ ଉପରେ ସୌଖିନ୍ ପଞ୍ଜାବୀ ପିନ୍ଧି, ଧୂଆଁ ଗୁଡ଼୍ ଗୁଡ଼୍ ଚେଆର୍‌ଟା ଟାଣି ନେଇ ବସିବାପରେ ବି ମୁହଁଟାକୁ ଯଥାସମ୍ଭବ ଗମ୍ଭୀର ଓ ଉଦାସ ରଖିବାର ପ୍ରଯତ୍ନ କରିଥିଲା । ମୁଁ ବହି ବନ୍ଦ କଲି । ସିଗାରେଟ୍‌ଟି ଶେଷ କଲାପରେ ଝରକାଦେଇ ଫିଙ୍ଗି ସେ ଅକସ୍ମାତ୍ ପ୍ରଶ୍ନ କଲା— 'ରେଡିଓଟାଏ ବି ନାହିଁ କିଦୋ ତମ ରୁମ୍‌ରେ ?'

ମୁଁ ମୁଣ୍ଡ ହଲେଇ ନାହିଁ କରୁ କରୁ ଘରର ଆର୍ଥିକ ଅସ୍ୱଚ୍ଛଳତା କଥା ସ୍ମରଣ କଲି ଓ ପିଣ୍ଟୁ ସଙ୍ଗେ ସମୟ ନଷ୍ଟ କରୁଥିବା ଯୋଗୁଁ ନିଜକୁ ଦୋଷୀ ମନେକଲି । ଅଜାଣତରେ ମହାପୁରୁଷମାନଙ୍କ ଆଡ଼କୁ ଆଖି ଚାଲିଗଲା ଓ କିଛି ସମୟଧରି ପିଣ୍ଟୁର ସ୍ୱର ମୋ କାନରେ ବାଜି ଫେରି ଯାଉଥିଲା । ଆଖି ଫେରେଇଲାପରେ ପିଣ୍ଟୁକୁ ଲକ୍ଷ୍ୟକରି ଠଉରେଇବାକୁ ଚେଷ୍ଟା କଲି, ଆଜି ମ୍ୟାଟିନ୍ ଶୋ'ରେ ଦେଖିଥିବା ହିନ୍ଦି ଫିଲ୍ମଟି ବିଷୟରେ ଅନର୍ଗଳ କହିଯାଉଥିବା ଏଇ ଯୌବନପ୍ରାପ୍ତ ଜନ୍ତୁଟିର ଭିତରଟା କେମିତି । ମୋ ଥାକରେ ଥିବା ମହାପୁରୁଷମାନଙ୍କ ନାଁ ଏ କ'ଣ କେବେ ଶୁଣି ନ ଥିବ ? ତା'ମାନଙ୍କ କରୁଣ ମୁହଁ ତା'ର କେବେ ମନେ ପଡୁଥିବ ? ତା ବାପା କ'ଣ ତାକୁ ନେଇ ସ୍ୱପ୍ନ ଦେଖୁଥିବେ ? ପିଣ୍ଟୁର ହାବଭାବରୁ ମନେହେବ ପୃଥିବୀଟା ତା' ପାଦତଳେ । ଚିନ୍ତା, ପରିଶ୍ରମ ଭଳି ଶବ୍ଦମାନଙ୍କ ସହିତ ତା'ର ପରିଚୟ ନାହିଁ । ପିଣ୍ଟୁ କି ଧରଣର ଭବିଷ୍ୟତକୁ ପ୍ରତୀକ୍ଷା କରିଛି ?

ମୁଁ ପିଣ୍ଟୁର ସ୍ୱର ଶୁଣୁ ଶୁଣୁ ନିର୍ଲିପ୍ତ ମୁହଁରେ ଭାବୁଥିଲି, ମୁଁ ଏଠି ଦିନପରେ ଦିନ ସମୟ ନଷ୍ଟ କରେ ପିଣ୍ଟୁର ବକ୍ତୃତା ଶୁଣି, ଅଥଚ ଅନ୍ତତଃ ଖଣ୍ଡେ ଭଲ ବହି ପଢ଼ାଯାଇ ପାରନ୍ତା ସେ ସମୟରେ । ଅସଂଖ୍ୟ ବହିକୁ ମୁଁ

ଜାଣେ, ଯେଉଁସବୁ ଟିଣ୍ଟୁର ବକ୍ତୃତାଠୁ ଅନେକ ଇଣ୍ଟରେଷ୍ଟିଂ ଓ ମୂଲ୍ୟବାନ୍ ଏବଂ ସେ ବହି ସବୁଙ୍କୁ ଟିଣ୍ଟୁ ଚିହ୍ନେ ନାହିଁ । ଟିଣ୍ଟୁର ପିଲକିଆ କବିତା ବି ଶୁଣେ ଧୈର୍ଯ୍ୟ ଧରି —ଟିଣ୍ଟୁର ଧାରଣା ନାହିଁ କେଉଁ ଧରଣର କବିତାଗୁଡ଼ିକ ସହି ମୁଁ ପାରେନି । ଟିଣ୍ଟୁ ବୋଧେ ଭାବେ ଯେ ସେ ମୋତେ ବକ୍ତୃତା ଦିଏ ମୋତେ କୃପାକରି, ତା'ର ଦଳୀୟ ଅନେକ ବନ୍ଧୁ ଥିବା ସତ୍ତ୍ୱେ; ଅଥଚ ବସ୍ତୁତ ବୁଝେନି ମୁଁ ତା' କଥା ଶୁଣେ ପ୍ରାୟ ତାକୁ କୃପା କରି । ଯେଉଁ କୋଣରୁ ମୁଁ ଜୀବନକୁ ଦେଖେ, ସେ ବିଷୟରେ ଟିଣ୍ଟୁ କ'ଣ ବା ଜାଣେ । ମୋର ଜୀବନ ବିଷୟରେ ଦାୟିତ୍ୱବୋଧ ଅଛି, କାରଣ ମୁଁ ଜୀବନକୁ ଗୁରୁତ୍ୱ ଦିଏ—ଟିଣ୍ଟୁ ଅପେକ୍ଷା ଯଥେଷ୍ଟ ବେଶି । ମୁଁ ସବୁବେଳେ ଜୀବନକୁ ସୂକ୍ଷ୍ମଭାବେ ବିଶ୍ଳେଷଣ କରିବାକୁ ଚେଷ୍ଟା କରିଛି, ଟିଣ୍ଟୁ ପରି ମେଞ୍ଚାଏ କାଦୁଅ ଭଳି ମାନି ନେଇନି । ତଥାପି ଏ କଥା ସତ ଯେ ମୋ ପ୍ରତି ଟିଣ୍ଟୁର କୌଣସି ପ୍ରକାରର ସମ୍ମାନ ନାହିଁ, ତା'ର ଦଳୀୟବନ୍ଧୁଙ୍କ ତୁଳନାରେ ମୋର ସତ୍ ପ୍ରକୃତିପାଇଁ ନୁହେଁ ବା ମୁଁ ଭଲଛାତ୍ର ହୋଇଥିବା ହେତୁ ବି ନୁହେଁ । ଆଉ ମୁଁ ବୋଧହୁଏ ଟିଣ୍ଟୁ ସାମ୍ନାରେ ତା' କଥାରେ ଗୁରୁତ୍ୱ ଆରୋପ କରି ତା' ଧାରଣା ସବୁ ଅବ୍ୟାହତ ରଖିବାରେ ଏକ ପ୍ରଚ୍ଛନ୍ନ ଆନନ୍ଦ ପାଏ ।

ଓ୍ୱାଚ୍‌ରେ ଦେଖିଲି ରାତି ଦଶଟା ଓ ଟିଣ୍ଟୁ ଯେଣୁ ଉଠିବାର ଲକ୍ଷଣ ଦେଖାଇଲା ନି, ଅଗତ୍ୟା ତା' କଥାରେ କୌତୂହଳୀ ହେବାର ପ୍ରଚେଷ୍ଟା କଲି । ରାତି ବଢ଼ିବା ସଙ୍ଗେ ସଙ୍ଗେ ଟିଣ୍ଟୁ ଜଣେ ଜନପ୍ରିୟ ଯୁବଲେଖକଙ୍କ ଲେଖା ତଥା ଅନେକ ହିନ୍ଦୀ ଫିଲ୍ମ ଡାଏଲଗ୍ ଉଦ୍ଧାର କରି ମୋତେ ଶୁଣାଇଲା ଓ ମୋ ପେନ୍ ନେଇ ଖଣ୍ଡେ କାଗଜରେ ଅନେକ ବାଙ୍କ ଜଟିଳ ରେଖାସବୁ ଟାଣି ତା'ର ନିଜ ଜୀବନର ପ୍ରଥମ ପ୍ରେମକାହାଣୀ ଶୁଣାଇଲା । ତା'ର ସାରାଂଶ, ସେ ଫାଷ୍ଟ୍‌ଇୟରରେ ପଢୁଥିବାବେଳେ ଘରପାଖ ପିୟୁ ପଢ଼ୁଥିବା ଜଣେ ଝିଅକୁ ସେ ପ୍ରେମ କରିଥିଲା ଓ ପ୍ରତିଦାନ ବି ପାଇଥିଲା । ସେମାନେ କଲେଜଆଡ଼ୁ କେତେଥର ସିନେମା ଯାଇଥିଲେ ଓ ଆଉଥରେ ବର୍ଷାରେ ଭିଜି ଭିଜି ଏକାଠି କଲେଜରୁ ଫେରିଥିଲେ । ଝିଅଟି ବି. ଏ. ପଢ଼ିବାକୁ କୌଣସି ଏକ ମହିଳା କଲେଜ ହଷ୍ଟେଲ୍‌କୁ ଗଲା ଓ ସେ ଛୁଟିରେ ଆସିଲେ ଟିଣ୍ଟୁ ସହିତ ଦେଖାକରେ । ଏବେ ଟିଣ୍ଟୁ ଥାର୍ଡ଼ଇୟରରେ ରହି ଯାଇଥିବାସ୍ଥଳେ ଝିଅଟି ବି. ଏ. ପାଶ୍ କରି ଫରେଷ୍ଟର ଅଧିକାରୀଙ୍କୁ ବିବାହ କରୁଛି ।

ପିଣ୍ଟୁର ଗପ ସରିଲାବେଳକୁ ରାତି ବେଶୀ ହୋଇଯାଇଥିଲା । ବାହାରର କୁହୁଡ଼ିକୁ ଅନ୍ୟମନସ୍କଭାବେ ଚାହିଁ ରହିଥିବା ପିଣ୍ଟୁ ଅଲଗା ମଣିଷଟିଏ ଭଳି ମନେ ହେଉଥିଲା; ଅଦ୍ଭୁତ ଲାଗିଲା ମୋତେ—ଦିନବେଳେ ଉଇଁକିନ୍ ଓ ଗୁଟାପାର୍ଚ୍ଚ ଓ ମୋଟା କଲି ବାଳରେ ତାଙ୍କି ହୋଇ ରହି ଏଇ ପିଣ୍ଟୁ ଜମାରୁ ଦିଶେ ନାହିଁ ।

ପିଣ୍ଟୁ ପୁଣି ପ୍ରେମରେ ପଡ଼ିଥିଲା ଏତେଦିନ ଧରି । ଏଇ ପାଠଶାଠ ସାଙ୍ଗେ ସମ୍ପର୍କ ନ ଥିବା, ସାରାଦିନ ସିଗାରେଟ୍ ଖାଇ ସହରସାରା ଚକ୍କର ଦେଉଥିବା କୁଳାଙ୍ଗାର ପିଣ୍ଟୁ; ସେ ପୁଣି ଏତେ ଗମ୍ଭୀରଭାବେ ଅନ୍ୟମନସ୍କ ହୋଇପାରୁଚି ତା'ର ବ୍ୟର୍ଥ ପ୍ରେମ କଥା ଭାବି । ତେବେ ମୀନାକ୍ଷୀକୁ ବିବାହ କରିବାପାଇଁ ସେ କେବେ ଚେଷ୍ଟା କଲା ନାହିଁ । କାହିଁକି ? ପ୍ରେମ କରିବା ଛଡ଼ା ଜୀବନଟିଏ ଆରମ୍ଭ କରିବାପାଇଁ ସମ୍ବଳ ସଞ୍ଚୟ କରିବାର କେଉଁ ଚେଷ୍ଟା ବା କରିଚି ସେ ? କେବଳ ତା' ବାପାଙ୍କ ପାଖରୁ ଓ ସାଙ୍ଗସାଥୀଙ୍କଠାରୁ ସମସ୍ତ ପ୍ରକାର ଉପକରଣ ସଂଗ୍ରହ କରି ଫୁର୍ତ୍ତି କରିଚି ଆଜଯାକେ । ଆଉ ଏବେ ମୋ ଝରକାପାଖେ ବସି ଚୁଟ୍‌ଗ୍ରମ୍ ସହି ଯାଉଚି । ମୋତେ କେମିତି ଅବରୁଦ୍ଧ ଓ ବିଦ୍ରୋହୀ ଲାଗିଲା ପିଣ୍ଟୁର ହତାଶ, ଉଦାସ ମୁହଁ ଦେଖି । ମୁଁ ନିଶ୍ୱାସଟାଏ ନେଇ ତାକୁ ବୁଝାଇବାକୁ ଉଦ୍ୟତ ହେଲି ଯେ ଦୁନିଆଁରେ ଚଳିବାକୁ ହେଲେ ଖାଲି ଭାବପ୍ରବଣ ହେଲେ ଚଳେ ନାହିଁ, ପ୍ରାକ୍‌ଟିକାଲ୍ ହେବାକୁ ହୁଏ । ପ୍ରେମ କରି ଜାଣିଲେ ହୁଏ ନାହିଁ, ପ୍ରେମ ପାଇଁ ହକଦାର୍ ହେବାକୁ ହୁଏ । ଥାଉ; ଏବେ ଆଉ ତାକୁ ସେସବୁ କହି ଲାଭ କ'ଣ । ସେ ଥାଉ; ବରଂ ଯେମିତି ଅଛି । ମୁଁ କ୍ଲାନ୍ତ ହୋଇ ଚେଆର୍ ପଛକୁ ଆଉଜିଗଲି ।

—କାଲି ତେବେ ମୀନାକ୍ଷୀର ବାହାଘର ଏଟେଣ୍ଡ୍ କରୁଛ ?

ପିଣ୍ଟୁ ବାହାରୁ ଆଖି ଫେରେଇ ମୋତେ ଖରବରରେ ଚାହିଁଲା (ଏଇଟା ବି କ'ଣ ତା'ର କୌଣସି ହିନ୍ଦୀ ଫିଲ୍ମ ହିରୋର ପୋଜ୍‌ର ଅନୁକରଣ ? ନାଃ—ଛି, ମୋର ଲଜ୍ଜିତ ହେବା ଉଚିତ) । ତା'ପରେ ଟିକେ ଶାନ୍ତ ହେଲାଭଳି ମୁଣ୍ଡ ଟୁଙ୍ଗାଇ କହିଲା ଯେ ସେ ଏଯାଏ ଠିକ୍ କରିନି, ଓ ପକେଟ୍‌ରୁ ସୁନ୍ଦର ନାଲି କାଗଜରେ ଲେଖା କାର୍ଡଟାଟିଏ କାଢ଼ି ମୋ ସାମ୍ନାରେ ରଖିଲା ।

ଭାବପୂର୍ଣ୍ଣ, କରୁଣ ରସାପ୍ଲୁତ କବିତାଟିଏ—ତା’ ପ୍ରେମିକାକୁ ବିଦାୟ ବାର୍ତ୍ତା । କବିତାଟିର ଗୁଣନିର୍ଣ୍ଣୟ କରିବା ଅବସ୍ଥାରେ ମୁଁ ନ ଥିଲି; କାରଣ ସେତେବେଳେ କେବଳ କବିତା ପଛରେ ଥିବା ଚିଣ୍ଟୁକୁ ଦେଖୁଥିଲି । ମୁଁ ପଢ଼ି ସାରିବା ପରେ କବିତାଟିକୁ ଯତ୍ନରେ ଚଉଡ଼ି ରଖି ରଖି ଚିଣ୍ଟୁ କହିଲା, ତା’ର ବାହାଘରକୁ ନ ଯିବାର ପ୍ରଧାନ କାରଣ ହେଲା ବର୍ତ୍ତମାନ ପ୍ରେଜେଣ୍ଟ ଦେବାପାଇଁ ତା’ ପାଖରେ ସମ୍ବଳର ଅଭାବ ଓ କେବଳ କବିତାଟିଏ ନେଇ ଖାଲି ହାତରେ ଯିବାକୁ ସେ ଚାହୁଁନି । ଚିଣ୍ଟୁର ଇଙ୍ଗିତ ବୁଝିଲି ଓ ଚିନ୍ତିତ ହେଲି । ମୋ ପାଖରେ କମ୍ ଟଙ୍କା ଓ ଘରୁ ଆସୁ ଆସୁ ଆହୁରି ଅନ୍ତତଃ ଆଠ ଦଶ ଦିନ ।

ଚିଣ୍ଟୁ ତା’ ପ୍ରେମିକାକୁ ଗୋଟାଏ ପେନ୍ ଦେବାକୁ ଚାହୁଁଥିଲା, ଯହିଁରେ ମୀନାକ୍ଷୀ ଲେଖିବ ଓ ତା’ର ପୂର୍ବତନ ପ୍ରେମିକକୁ ମନେ ପକାଇବ । ପେନ୍‌ର ରଙ୍ଗ ଓ ଆକୃତି ବି ସେ ପ୍ରାୟ ଠିକ୍ କରିସାରିଥିଲା । ବେଶି ଦାମ୍‌ର ପେନ୍ ତ ଦେଇ ହେବନି, ଏଇ ଦଶଟଙ୍କା ଭିତରେ ଓ ସେ ମୋତେ ସପ୍ତାହେ ଭିତରେ ନିଶ୍ଚୟ ଫେରାଇ ଦେବ । ମୁଁ ମୋ ପାଖେଥିବା ଅର୍ଥର ସ୍ୱଳ୍ପତା ତଥା ଆହୁରି ଦଶଦିନର ଖର୍ଚ୍ଚ କଥା ଚିନ୍ତା କରୁଥିଲି । ତେବେ ଶେଷରେ ଚିଣ୍ଟୁର ମୁହଁକୁ ଦେଖିବା ପରେ ନିଜକୁ ଲଜ୍ଜାବୋଧ ହେଲା ।

ଚିଣ୍ଟୁ ମୋ ହାତରୁ ଦଶଟଙ୍କାର ନୋଟ୍‌ଟି ନେଇ ନେଇ କୃତଜ୍ଞତା ଜ୍ଞାପନ କଲା ଯେ ମୁଁ ନ ଦେଇଥିଲେ ତା’ର ଏତେ ଛୋଟ ଅଥଚ୍ ଚରମ ଆଶା ଟିକକ ବି ପୂରଣ ହୋଇପାରି ନ ଥାନ୍ତା ଓ ସେ ନିଶ୍ଚୟ ସପ୍ତାହକ ଭିତରେ ମୋତେ ଫେରେଇବ । ତା’ର କଥାର ଶେଷାଂଶରେ ମୋର ଖୁବ୍ କମ୍ ବିଶ୍ୱାସ ଥିଲେ ବି ମୁଁ ତା’ର ଆଶ୍ୱସ୍ତ ଭାବରେ ଖୁସି ହେଲି । ଯା’ ହେଉ ମୁଁ ତା’ର କିଛି ଉପକାର କରିପାରିଲି !

ପରବର୍ତ୍ତୀ କେଇଦିନ ଚିଣ୍ଟୁ ସାଙ୍ଗେ ମୋର ଦେଖାହେଇନି । ତା’ପରେ ସେଦିନ ସକାଳୁ ଖାଲି ପେଟରେ ରାସ୍ତାରେ ଏଣେତେଣେ ବୁଲୁ ବୁଲୁ ଚିଣ୍ଟୁକୁ ଦେଇଥିବା ଟଙ୍କା କଥା ବିମର୍ଷ ମନରେ ଭାବୁଥିଲି, ହଠାତ୍ ସାମ୍ନାରୁ ଚିଣ୍ଟୁ ଆସିଲା । ମୋ ଭାବନା କାଳେ ସେ ଦେଖି ପକେଇଥିବେ ଆଶଙ୍କା କରି ଟିକେ ଖୁସି ଗଳାରେ ପଚାରିଲି—କ’ଣ କେମିତି ହେଲା ବାହାଘର ?

ହର୍ଷୋତ୍ଫୁଲ୍ଲ ଚିତ୍ତରେ ସେ ସାଇକଲ୍‌ରୁ ଓହ୍ଲାଇ ପକେଟ୍‌ରୁ ତିନୋଟି ଟଙ୍କା ମୋ ହାତକୁ ବଢ଼ାଇଦେଲା ଓ ନିଜ ଛାତି ପକେଟ୍‌କୁ ଆଙ୍ଗୁଠି ଦେଖାଇ ଘୋଷଣା କଲା ଯେ ସେ ବାହାଘରକୁ ଯାଉନି ଆଉଁ। ଯାଇ ବା ସେ କ'ଣ କରିଥାନ୍ତା ? କେବଳ ଗୋଲାପି କାଗଜର କବିତାଟି ପଠାଇଦେଇଛି, "(ଲେଖିଛି ଯେତେବେଳେ ଭାବିଲି ପଠେଇଦିଏ।") ତା' ଛାତି ପକେଟ୍‌ରେ ତା'ର ପୂର୍ବ ବର୍ଣ୍ଣିତ ପେନ୍‌ଟିଏ ଶୋଭା ପାଉଥିଲା।

ମୁଁ ହାତରେ ଟଙ୍କାଧରି ଥକ୍‌କାହୋଇ ଠିଆହେଲି। ପ୍ରଥମେ ତ କଥାଟା କିଛି ବୁଝିପାରିଲି (ମୋ ପାଇଁ ବି)। ଟ୍ରେନ୍ ହ୍ୱିସିଲ୍ ଦେଇ ଛାଡ଼ିବାପରେ ଷ୍ଟେସନ୍‌ରେ ଥିବା ଆତ୍ମୀୟଙ୍କୁ ଅନେଇ, କୋହ ଚାପି ହାତ ହଲେଇ ବିଦାୟ ନେଲା ପରେ ହଠାତ୍ କରେନ୍ ଟଣାଯାଇ ଟ୍ରେନ୍ ରହିଗଲା ପରି। ପିଣ୍ଟୁ ଆଶ୍ୱାସନା ଦେଉଥିଲା ଯେ ସେ ବାକିଟଙ୍କା ଅବିଳମ୍ବେ ଫେରାଇ ଦେବ ଓ ଆଜିର ଟଙ୍କାରେ ଗୋଟାଏ ସିନେମା ଦେଖାଯାଉ।

ଖପରେ ଝିଟକୁଥିବା ତା' ଛାପାସାର୍ଟ ଓ ପେନ୍‌ସାଙ୍ଗକୁ ତା'ର ଫିଲମ୍ ଜାଣିଥିବା ହସ ମୋତେ କୁତ୍ସିତ ଲାଗିଲା। ପରୀକ୍ଷା ଓ ପାଠର ବାହାନା କରି ମୁକ୍ତି ପାଇଲି।

ଦିନଟାସାରା ଭଲ କରି ପଢ଼ି ପାରି ନ ଥିବାରୁ ସନ୍ଧ୍ୟାଟା ପୁରା ପାଠରେ ବିନିଯୋଗ କରିବାକୁ ମୁଁ ମନସ୍ଥ କରିଥିଲି। ଆଜି ବାପାଙ୍କଠୁ ଉପ-ଦେଶାତ୍ମକ ଚିଠିଟିଏ ପାଇଥିଲି। ମା' ବି ସାଙ୍ଗରେ ଖଣ୍ଡେ ସାନ କାଗଜରେ ସ୍ନେହବୋଳା ଚିଠିଟିଏ ଲେଖିଛି, ଦେବୀଙ୍କୁ ସେ ଭୋଗ ଯାଚିଛି ମୁଁ ପରୀକ୍ଷାରେ ଭଲ କରେ ବୋଲି; ଆଉ ତା' ଚିଠି କୋଣରେ ସବା ସାନ ଭଉଣୀ କୁନି ବଙ୍କା ବଙ୍କା ଅକ୍ଷରରେ ଅନେକ କିଛି ବରାଦ କରିଛି ନିଜପାଇଁ। ବେଶ୍ ଦୁଇଘଣ୍ଟା ବହିରେ ଜୋର କରି ମନ ଲଗାଇବା ପରେ ମନର କେଉଁ ନିଭୃତ କୋଣରେ ଇଚ୍ଛା ହେଉଥିଲା ପିଣ୍ଟୁ ଆସନ୍ତା କି !

ପିଣ୍ଟୁ ଆସିଲା ନି। ତେବେ ସାମାନ୍ୟ ଝଡ଼ପରେ ଲାଇଟ୍ ଚାଲିଗଲା। ଅନେକ ଦିନ ପରେ, ଆଜି ଏ ଅନ୍ଧାରରେ ମୁଁ ହଠାତ୍ ଖୋଲାଖୋଲି ମିଲିମା କଥା ଭାବିବାକୁ ସାହସ କଲି। ମିଲିମାକୁ ମୋତେ ଭଲଲାଗେ। ଖୁବ୍ ଭଲ

ଲାଗେ; କିନ୍ତୁ କେବେ ତା' ପାଖେ କିଛି ପ୍ରକାଶ କରିନ । ମାଳମାକୁ ମୁଁ ଭଲପାଏ ? ତାକୁ ବାହା ହେବାକୁ ଚାହେଁ ? କେଜାଣି । ନାହିଁ ବୋଧେ । ତା' ଛଡ଼ା—ଆଜିଠୁ ଯଦି ମୁଁ ବାହା ହେବା କଥା ଚିନ୍ତାକରେ ମୋ ଭବିଷ୍ୟତର ନିଖୁଣ ମାନଚିତ୍ରରେ କିଛି ଅଙ୍କା ବଙ୍କା ଗାର ପଡ଼ିଯାଇ ପାରେ, ମାନଚିତ୍ରର ରୂପରେଖକୁ ବଦଳେଇ ଦେଇପାରେ ଓ ତା'ପରେ ମୋ ବାପାଙ୍କ ସ୍ୱପ୍ନ, ମୋ ନିରୀହ ମା'ର ଗର୍ବ ଓ ମୋ ସରଳ ଭାଇ ଭଉଣୀଙ୍କ ଆଦର୍ଶ ?

ପିଣ୍ଟୁ ଭଳି ପ୍ରେମ ମୁଁ କରିପାରିବି ? ପ୍ରେମ କହିଲେ କ'ଣ ବୁଝାଏ, ପିଣ୍ଟୁଠୁ ମୁଁ ବେଶି ପ୍ରାଞ୍ଜଳଭାବେ ଜାଣିଛି । ମୁଁ ପ୍ରେମଭଳି କୋମଳ, ଗଭୀର ଭାବଗୁଡ଼ିକୁ ସ୍ୱୀକାର କରେ, ଖୁବ୍ ସମ୍ମାନ କରେ, ଏମିତି କି ମୋର ଆଦର୍ଶ ଧରଣର ଗୋଟାଏ କଳ୍ପନାପ୍ରସୂତ ମୂର୍ତ୍ତିକୁ ମୁଁ ମନେ ମନେ ପୂଜାକରେ ଓ ମୁଁ ମୋ ପୂଜିତ ଭାଇମାନଙ୍କ ପାଖେ ଏତେ ନତମସ୍ତକ ଯେ ସେମାନଙ୍କୁ ମୋ ଜୀବନରେ ବାସ୍ତବ, ସକ୍ରିୟ ଅଂଶ ଗ୍ରହଣ କରିବାକୁ ଦେବାଭଳି ଦୁଃସାହସ ମୁଁ କରିନାହିଁ । ପିଣ୍ଟୁ ଭଳି ସେଣ୍ଟିମେଣ୍ଟ୍ ସମୂହକୁ ନେଇ ଖାମ୍‌ଖିଆଲି ହେବାର ପ୍ରେଷ୍ଟେଜ୍‌ ଓ ଆଗ୍ରହ ମୋର ନାହିଁ । ମାଳମାକୁ ମୁଁ ପ୍ରେମପତ୍ର ଲେଖିପାରିବି ନାହିଁ; କାରଣ ପ୍ରତିଜ୍ଞାଭଙ୍ଗର ଆଶଙ୍କାରେ ପ୍ରତିଜ୍ଞା କରିବା କଥା ମୁଁ କେବେ ମନକୁ ଆଣେ ନାହିଁ ।

ଅନ୍ଧାରରେ ଆଖିବୁଜି ମୁଁ ମୋତେ ଦେଖିଲି, ପିଣ୍ଟୁକୁ ଦେଖିଲି ଓ ଧୀରେ ଧୀରେ ଅନ୍ଧାରରେ ମୋ ବନ୍ଦ ଆଖିପତା ତଳେ ମୁଁ ପିଣ୍ଟୁ ପାଲଟିଲି । ଦେଖିଲି ମୋ ମୁଣ୍ଡ ଉପରେ ଆଉ ଗୋଟିଏ ବି ଭାରୀ ପଥର ନାହିଁ, ମୋ ମନରେ ଆଉ ଗୋଟିଏ ବି ଗ୍ଲାନି ନାହାନ୍ତି—ଏମିତି କି ମୁଁ ପୂଜା କରୁଥିବା ମୂର୍ତ୍ତିମାନଙ୍କ ମୁହଁ ବି ମୋର ଆଉ ମନେ ନାହିଁ । ମୁଁ ପିଣ୍ଟୁ; ପ୍ରତିମୁହୂର୍ତ୍ତରେ ସ୍ୱପ୍ନ ଦେଖିପାରୁଛି ଓ ପ୍ରତି ମୁହୂର୍ତ୍ତରେ ପୁଣି ଭାଙ୍ଗିପାରୁଛି । ଦିନ ଓ ରାତି ସ୍ୱଚ୍ଛନ୍ଦରେ ମୋ ମନରେ ଖରା, ବର୍ଷା, ଅନ୍ଧାର, ଆଲୁଅ ସୃଷ୍ଟି କରୁଛନ୍ତି ।

# ତୃଷ୍ଣା

ନିକୁଞ୍ଜବିହାରୀ ଧୁଡ଼ୁ ଧୁଡ଼ୁ ସାଇକେଲ୍‌ଟି ଲୁହାଗେଟ୍‌ ପାଖେ ଆଉଜାଇ ଦେଉ ଦେଉ ଆଲ୍‌ସେସିଆନ୍‌ କୁକୁରଟି ଆଡ଼େ କାକୁତିଭରା ହସଟିଏ ଛାଡ଼ିଲେ—ମୁଁ ପରା ପୁରୁଣା ଲୋକ, ଚିହ୍ନି ପାରୁନୁ ? ଅଳ୍ପଦୂରରୁ ଉହୁଙ୍କି ଆସୁଥିବା କୁକୁର ନରମିଯାଇ ଗୋଡ଼ ଶୁଙ୍ଘି ଲାଞ୍ଜ ହଲାଇଲା । ପ୍ରଥମ ସମସ୍ୟାର ମୁକାବିଲା ପରେ ଡରି ଡରି ଛାତିରେ ସେ ଭିତରକୁ ପଶିଲେ—ଭଗବାନ କରନ୍ତୁ, କିଶୋର ବାବୁ ଅଫିସ୍‌ରୁ ଫେରି ନ ଥାନ୍ତୁ ।

କିଶୋର ବାବୁ ଅଫିସ୍‌ରୁ ଫେରି ନ ଥିଲେ । ଭିତର ବାରଣ୍ଡାରେ ବେତ ଚଉକିରେ ତାଙ୍କ ସ୍ତ୍ରୀ ଲଳିତା ଦେବୀ ସିଲେଇ ସରଞ୍ଜାମ କୋଳରେ ରଖି ସନ୍ଧ୍ୟାର ଫିକା ନାରଙ୍ଗୀ ଆକାଶରେ ଅଙ୍କା ସରୁ ସରୁ ଝାଉଁପତ୍ର ଆଡ଼େ ଅନେଇଥିଲେ । ଲୁହାଗେଟ୍‌ର କଡ଼ା ଖୋଲିବା ଶବ୍ଦ ତାଙ୍କ କାନରେ ପଡ଼ିଥିଲା ଓ ସେ ନିକୁଞ୍ଜବିହାରୀଙ୍କ ଆସିବାକୁ ପ୍ରତୀକ୍ଷା କରିଥିଲେ ।

ନିକୁଞ୍ଜବିହାରୀ ଲେଖାରେ ଲଳିତା ଦେବୀଙ୍କ ମାଉସୀ ପୁଅ ଭାଇ ହେବେ, ଲଳିତାଙ୍କୁ ସେ 'ତୁ' କରି ସମ୍ବୋଧନ କରନ୍ତି । କିଶୋର ବାବୁ ଏ ସହରକୁ ବଦଳି ହୋଇ ଆସିବା ପରେ ପରେ ନିକୁଞ୍ଜବିହାରୀ ଖବର ନେଇ ଧାଇଁ ଆସିଥିଲେ ଓ ସ୍ୱ-ପରିଚୟ ଦେଇଥିଲେ । ଫର୍ମାଲ୍‌, କୃତ୍ରିମତାର ଆବହାଓ୍ୱାରେ ବେଶ୍‌ କିଛି ଦିନ ରହି ରହି ଏ ନୂତନ ସହରରେ ନିକୁଞ୍ଜବାବୁଙ୍କ ବନ୍ଧୁତା, ଲାଜ୍‌ ଲାଜକା ଆତ୍ମୀୟିତା ଲଳିତା ଦେବୀଙ୍କୁ ମନ୍ଦ ଲାଗିଲାନି । ଅନ୍ତତଃ ଏକୁଟିଆ ସନ୍ଧ୍ୟାରେ କ୍ଳାନ୍ତ ଆକାଶକୁ ଚାହିଁ ବସିବା ଅପେକ୍ଷା ବେଳେ ବେଳେ ଏ ନିରୀହ ବ୍ୟକ୍ତିଟିର ଗପ ଶୁଣିବା ଭଲ ।

ନିକୁଞ୍ଜବିହାରୀ ହସ ହସ ମୁଖରେ ସାମ୍ନା ଚଉକିଟି ଟାଣି ବସି ଯାଇଥିଲେ ଓ ବଖାଣୁଥିଲେ ଅଫିସ୍‌ରେ କିଶୋର ବାବୁଙ୍କ ପ୍ରତାପ କଥା (ସତେ ଯେମିତି କିଶୋର ବାବୁ ପ୍ରତାପୀ ଅଫିସର୍ ହେବା ନିକୁଞ୍ଜ ବାବୁଙ୍କର ହିଁ ଗୌରବ ।) ଲଳିତା ଦେବୀ ତାଙ୍କ କଥାରେ କୌତୂହଳୀ ହୋଇପଡ଼ି ଶୁଣୁଥିଲେ । ପତଳା ଗ୍ରେଟିଆ ମଣିଷଟିଏ । ପରିଧାନ ସବୁଦିନେ ପୂରାହାତ ନାଳ କାମିଜ ଓ ଖାକି ରଙ୍ଗର ଢିଲା ପେଣ୍ଟ୍ । କଥା କହୁ କହୁ ବେଳେ ବେଳେ ସେ ଅନ୍ୟମନସ୍କ ହୁଅନ୍ତି ଓ କପାଳରେ ହାତ ବୁଲାଇଲାବେଳେ ମଣିବନ୍ଧ ତଳକୁ ସାର୍ଟ ଖସିପାଇ ହାତର ଗାଢ଼ ନୀଳ ଶିରା ସବୁ ଦେଖାଯାଏ । ତେବେ ଯୌବନ କାଳରେ ତାଙ୍କ ମୁହଁ ଯେ କୌଣସି ସୁନ୍ଦରୀ ତରୁଣୀର ମୁହଁ ସହ ତୁଳନୀୟ ହୋଇଥିବ । ସନ୍ଧା କୁଞ୍ଚିତ ଭ୍ରୂ ତଳେ ଲମ୍ବା ଆଖି ଦୁଇଟି ଏବେ କରୁଣ, ଛଳ ଛଳ । ସିଧା ସୁନ୍ଦର ନାକ ଓ ସୁଗଠିତ ଚିବୁକ ମଝିରେ କାତର, ସନ୍ତାପିତ ଓଠ—ସବୁବେଳେ ଆଘାତ ପାଇବାର ଭୟରେ ଆହତ ଯେମିତି । ଆସିଲେ ସେ କବାଟରେ କରାଘାତ ନ କରି ସିଧା ଭିତରକୁ ପଶି ଆସନ୍ତି ଓ ଲଳିତା ଦେବୀଙ୍କ ଆଖି ତାଙ୍କ ଉପରେ ନ ପଡ଼ୁଣୁ, ସେ ତାଙ୍କ କରୁଣ ଆଖି ଓଠରେ ମଧୁର ଅମାୟିକ ହସଟିଏ ବିଛୁରି ଦିଅନ୍ତି—ତାଙ୍କର ସାମାନ୍ୟ ଆଶ୍ଚର୍ଯ୍ୟ ଓ ଆହତ ହେବା ଭଙ୍ଗୀରେ ସ୍ଥିର ହୋଇ ଯାଇଥିବା ଭ୍ରୂ ଓ ଟାକୁଆଗାଲର ପୃଷ୍ଠଭୂମିରେ ଏ ହସଟି କିନ୍ତୁ ବେଖାପ୍ ଦିଶେ ।

ନିକୁଞ୍ଜବିହାରୀ ଗପି ଚାଲିଥିଲେ--ତାଙ୍କର ଦଶମ ଶ୍ରେଣୀରେ ପଢ଼ୁଥିବା ଝିଅ ଭଲ ପଢ଼ୁଛି ଓ ସ୍କୁଲ୍‌ରେ ସିଲେଇ ପ୍ରତିଯୋଗିତାରେ ପ୍ରାଇଜ୍ ପାଇଛି । ନିକୁଞ୍ଜବାବୁ ତାଙ୍କ ପରିବାର କଥା କହିଲେ, ସ୍କୁଲ୍‌ରେ ପଢ଼ୁଥିବା ପୁଅ ଝିଅ କେତୋଟିଙ୍କ କଥା ହିଁ କହନ୍ତି । ଆଉ ବଡ଼ ପୁଅଟି ଯେ କଲେଜରେ ପ୍ରଥମ ବର୍ଷରେ ରହି ଯାଇଛି, ପ୍ରାୟ ସ୍ଥାୟୀ ଭବେ ଓ ବଡ଼ ଝିଅ ଯିଏ ବିଧବା ହୋଇ ଘରେ ଅଛି, ତାଙ୍କ କଥା ସେ ପ୍ରାୟ କହନ୍ତି ନାହିଁ ବା ଲଳିତା ଦେବୀ ମଧ ସେମାନଙ୍କ କଥା ଶୁଣିବାକୁ ଉତ୍ସୁକ ହୁଅନ୍ତି ନାହିଁ । ନିକୁଞ୍ଜବିହାରୀଙ୍କ ସ୍ତ୍ରୀ ମୁଖରା—ତାଙ୍କ କଥା ସେ ସବୁଠୁ କମ୍ କହନ୍ତି । ବାକି ଯେ ଗପନ୍ତି ବଜାର ଦର କଥା, ଆଜି କାଲିକା କଲେଜ ପିଲାଙ୍କ କଥା ଓ ସର୍ବୋପରି ଜନମୁଖରେ କିଶୋର ବାବୁଙ୍କ ଖ୍ୟାତି କଥା ।

ନିକୁଞ୍ଜବିହାରୀ ଲଳିତା ଦେବୀଙ୍କୁ ଚୁପ୍ ଦେଖି ହଠାତ୍ ନୀରବ ହୋଇ ଯାଇଥିବେ ଓ ସମ୍ଭବତଃ ମନେ ମନେ ବ୍ୟସ୍ତ ହୋଇ ପରବର୍ତ୍ତୀ ବକ୍ତବ୍ୟବସ୍ତୁ ଖୋଜୁଥିଲେ । ଅଗତ୍ୟା ଲଳିତା ନିଜେ ମୁହଁ ଖୋଲିଲେ—ପୁଅ ଝିଅଙ୍କଠୁ ଚିଠି ଆସିନି ଅନେକ ଦିନ ହେଲ, କିଶୋର ବାବୁ ସିନା ସଦା ବ୍ୟସ୍ତ, ଲେଖିବାକୁ ବେଳ ନାହିଁ...

ଏ ଦୁଃଖିନୀଟି ପାଖରେ ଲେଖିବାକୁ ବା କ'ଣ ଅଛି ? ସେ କରୁଣ ଛଳ ଛଳ ଆଖିରେ ଚିଲିପିଲିବ ଯାହା କହିଲେ ବ । ଏକଥା ଜଳ ଜଳ ସତ୍ୟ ଯେ ସେ ଲଳିତା ଦେବୀଙ୍କୁ ସନ୍ତୁଷ୍ଟ ରଖିବାକୁ ଚାହାନ୍ତି, ଆଶା ପୋଷଣ କରନ୍ତି, କିଶୋର ବାବୁଙ୍କ କାନରେ ତାଙ୍କ କଥା ଲଳିତା ଦେବୀ ମଝିରେ ମଝିରେ ପକାଇବେ ଓ କିଶୋର ବାବୁ କେତେବେଳେ କେମିତି ଖୁସି ମିଜାଜ୍‌ରେ ଥିଲେ, ତାଙ୍କଆଡ଼େ ଟିକେ କୃପାଦୃଷ୍ଟି ଢାଳିବେ । ଏକଥା ଜାଣି ବି ନିକୁଞ୍ଜବାବୁଙ୍କ ଉପରେ ବିରକ୍ତ ହୋଇ ହୁଏନାହିଁ । ଦୟା ଆସେ । ନିରୀହ ପ୍ରାଣୀଟିଏ, ସଂସାରରେ ପାଦ ଜଣେ ରଖିବାର ପ୍ରଚେଷ୍ଟା ।

ନିକୁଞ୍ଜବିହାରୀ ଅବଶ୍ୟ ମନରେ କୌଣସି ଅଭିସନ୍ଧି ରଖି ଲଳିତାଙ୍କ ପାଖକୁ ଆସୁଛନ୍ତି ବୋଲି ଭାବନ୍ତି ନାହିଁ । ଲଳିତା ଏକୁଟିଆ ଥାଏ ପ୍ରାୟ ସବୁବେଳେ, ସାନ ପୁଅ ଝିଅ ଦୁଇଟି ଭାରତ ମାନଚିତ୍ରରେ ଦେଖା ଦୋଉ ଦୂର ସହରର ସ୍କୁଲ୍‌ରେ ପାଠ ପଢ଼ନ୍ତି । ସ୍ୱାମୀ ତ ତାର ସଦାବ୍ୟସ୍ତ, ଘର କାମ ପାଇଁ ଚାକର ଅଛନ୍ତି । ନିକୁଞ୍ଜ ବାବୁ ଯାଇ ଗପ ସପ କଲେ ଲଳିତା ଖୁସି ହୁଏ । ବଡ଼ ଲୋକର ସ୍ତ୍ରୀ ବୋଲି ଗର୍ବ ନାହିଁ, ସବୁଥର କହେ, ପୁଣି ନିଶ୍ଚୟ ଆସିବାକୁ ।

ଘ୍ଟ କରି ଥୋଇ ଘଡ଼ି ଦେଖି ନିକୁଞ୍ଜ ବାବୁ ଏଥର ଉଠିଲେ—ମୁଁ ଯାଏ ଲଳିତା, ମୋର କାମ ଅଛି, ଡେରି ହେବ । ଲଳିତା ଜାଣନ୍ତି କାମରେ ନୁହେଁ, କିଶୋର ବାବୁଙ୍କ ଆସିବା ସମୟ ହୋଇଗଲା ବୋଲି ସେ ବ୍ୟସ୍ତ । କିଶୋର ବାବୁ ଅଫିସ୍‌ରୁ ଫେରି ତାଙ୍କର ଏ ଅଯତ୍ନ କର୍ମଚାରୀଟିକୁ ଘରେ ଦେଖି ଖୁବ୍ ଖୁସି ହୁଅନ୍ତି ନାହିଁ । କବାଟ ପାଖକୁ ବଳେଇ ଦେବାକୁ ଆସି ଲଳିତା ପୁରୁଣା ଅନୁରୋଧର ପୁନରାବୃତ୍ତି କଲେ—ଭାଉଜଙ୍କୁ ନେଇ କେବେ ଆସନ୍ତୁ । ନିକୁଞ୍ଜ ବାବୁ ଗତାନୁଗତିକ ପ୍ରତିଶ୍ରୁତି ଦେଲେ, ଭାଉଜଙ୍କୁ ଫୁରସତ୍ ନାହିଁ, ସମୟ ହେଲେ ନିଶ୍ଚୟ ନେଇଆସିବେ ।

ପରବର୍ତ୍ତୀ କେତେଦିନ କିନ୍ତୁ ଲଳିତା ଦେବୀଙ୍କର ଅଭ୍ୟାସଗତ ନିରୁଦ୍‌ବେଗ ପ୍ରଶାନ୍ତି ସତ୍ତ୍ୱେ ନିକୁଞ୍ଜବାବୁ ଆସିଲେ ନାହିଁ ଏବଂ ତତ୍‌ପରବର୍ତ୍ତୀ ଦିନ ସନ୍ଧ୍ୟାରେ କିଶୋର ବାବୁ ଅଫିସ୍‌ରୁ ଫେରି ଯେତେବେଳେ ଦେଖିଲେ, ଲଳିତା ଆକାଶର ସମବର୍ଣ୍ଣ ଶାଢ଼ୀ ଅଳଙ୍କାରଆଦିକୁ ନିରବରେ ଗୁହିଁ ବସିଛନ୍ତି, ଆଜ ସନ୍ଧ୍ୟାରେ ଥିବା ପାର୍ଟି ବିଷୟରେ ତାଙ୍କୁ ସକାଳୁ କହିଥିବା ସତ୍ତ୍ୱେ, ତାଙ୍କ କ୍ଳାନ୍ତି ସଙ୍ଗେ ବିରକ୍ତି ଓ ଧୈର୍ଯ୍ୟହୀନତା ମିଶି କ୍ରୋଧରେ ପରିଣତ ହେଲା ।

ପରବର୍ତ୍ତୀ କେଇ ମିନିଟ୍‌ରେ ନିଜର ତ୍ରୁଟିଜନିତ କିଂକର୍ତ୍ତବ୍ୟମୂଢ଼ତା ଭିତରେ ଲଳିତାଦେବୀ ପ୍ରସ୍ତୁତ ହୋଇ ଗାଡ଼ିରେ ବସିଲେ; କିନ୍ତୁ ବାଟସାରା ଯେତେବେଳେ ସେ କିଶୋର ବାବୁଙ୍କୁ ବିରକ୍ତିରେ କୁନ୍ଥଳବାର ଦେଖିଲେ, ଅସ୍ୱନକ ଅଭିମାନ ଓ ଅପମାନରେ ତାଙ୍କର କଣ୍ଠନଳୀ ଅବରୁଦ୍ଧ ହୋଇପଡ଼ିଲା । କାହିଁକି ଏ ଦଣ୍ଡ । ସେ ତ ସମ୍ପୂର୍ଣ୍ଣ ଭୁଲିଯାଇଥିଲେ—ଏ ପାର୍ଟିରେ ତାଙ୍କର ଆଗ୍ରହ ନାହିଁ । ଯେଉଁ ମୁହୂର୍ତ୍ତ କେତୋଟା ପାଇଁ ସେ କିଶୋର ବାବୁଙ୍କ ଜୀବନରେ ଦରକାର ପଡ଼ନ୍ତି, ସେଥିରେ ତିଳେମାତ୍ର ତ୍ରୁଟି ସହ୍ୟ କରାଯାଏ ନାହିଁ ।

ଆଲୋକ, ଫୁଲ ଓ ସୁସଜ୍ଜିତା ନାରୀ ପୁରୁଷଙ୍କ ଗହଣରେ ସେ ବିରାଟ ବଗିଚାରେ ଲଳିତା ଦେବୀ କ୍ରମାଗତ ଆଲୁଅକୁ ପଛକରି କୋହଚାପି ଯଥାସାଧ୍ୟ ଚେଷ୍ଟାରେ ମୁହଁର ମାଂସପେଶୀମାନଙ୍କର ବିଚଳନକୁ ଦମନ କରିବାର ପ୍ରଚେଷ୍ଟା କରୁଥିଲେ—କାନ୍ଦିବାକୁ ହେବ ନାହିଁ ଏଠି ଖବରଦାର୍ !

ଫେରନ୍ତା ବାଟରେ କିଶୋର ବାବୁ ଭଲ ମୁଡ୍‌ରେ ଥିଲେ ଓ ଷ୍ଟିଅରିଂ ଉପରେ ହାତରଖି ପାର୍ଟିର ଛୋଟ ଛୋଟ କଥା ସବୁ ସ୍ମରଣକରି ହସୁଥିଲେ ଖୁବ୍ । ଲଳିତା ବି ହସୁଥିଲେ—ତାଙ୍କର ଆଉ କ୍ରୋଧ ନ ଥିଲା, କେବଳ ଛାତି ଭିତରେ ଗୋଟାଏ ନିଦା ପୀଡ଼ା । ବାହାରେ ଜହ୍ନ ପଡ଼ୁଥିଲା । ପଛକୁ ଆଉଜିଯାଇ ସିଟ୍‌ଧାରରେ ମୁଣ୍ଡ ରଖି ଲଳିତା ଲକ୍ଷ୍ୟ କରୁଥିଲେ, ରାସ୍ତାକଡ଼ ଗଛ ସବୁର ଲମ୍ବା ଲମ୍ବା ଡାଳ ଓ ପାଗଳ ଆକାଶରୁ ଜହ୍ନଟା ଛୁଟି ଚାଲିଥିଲା, ଛୁଟି ଚାଲିଥିଲା ।

ଦୀର୍ଘଶ୍ୱାସ ଟାଣି ଲଳିତା ଭାବୁଥିଲେ, ଛୁଟି ଚାଲିଯିବାକୁ ବାଟ ବି ନାହିଁ ! ଚିର ଅପରିଚିତ ଡାଳଙ୍କ ଭିତରେ ବନ୍ଦୀ ହୋଇ ରହିବାକୁ ହେବ—

ଚୁପ୍‌ଚାପ୍ ଆଜିକି ଶୋଇଗଲେ ଯାଇ, ଏ ଗ୍ରାମ ତ ବେଶି କଷ୍ଟ । ଆଖି ବନ୍ଦ କରି ମୁଣ୍ଡଟାକୁ ଫାଙ୍କା କରୁ କରୁ କାହିଁକି ଲଳିତାଙ୍କୁ ତାଙ୍କ ପୁରୁଣା ଗାନପୁରାଟା ମନେ ପଡ଼ିଗଲା ଓ ଆପଣାର ମୁହଁଟିଏ ଚଟ୍‌କରି ହସିଗଲା ।

ବିଛଣାରେ ପଡି ଲଳିତା ତାଙ୍କ ସ୍ୱାମୀଙ୍କୁ ପଚାରୁଥିଲେ—ନିକୁଞ୍ଜଭାଇ ବଞ୍ଚନ୍ତି କେମିତି କହିଲ ?

କିଶୋର ବାବୁ ଭ୍ରୂକୁଞ୍ଚନ କରି ଅନ୍ଧାରରେ ଲଳିତାଙ୍କ ଆଡ଼େ ଚାହିଁଲେ ।

—ମାନେ, ତାଙ୍କର ଏତେ ଦୁଃଖ, ଏତେ ଜଞ୍ଜାଳ, କେମିତି ବଞ୍ଚନ୍ତି ଖାଲି ଅଭ୍ୟାସବଶତଃ ?

ଆରେ, ଟିଲାହୁଆ ନେଇ ଘର କରନ୍ତି, ଚାକିରି କରନ୍ତି, ଅଭ୍ୟାସ-ବଶତଃ କାହିଁକି ବଞ୍ଚିବେ ? ସାମାନ୍ୟ ବିରକ୍ତିମିଶା ହସଟିଏ ହସି କଥାଟାକୁ ଏଡ଼େଇ ଯାଉଛନ୍ତି ଭାବି କିଶୋରବାବୁ ହାଇମାରିଲେ । ଲଳିତା ତଥାପି ନିରୁତ୍ସାହବନ୍ଧା । ଧୀର ଗଳାରେ କଥାଟା କିଶୋର ବାବୁଙ୍କ ହୃଦୟଙ୍ଗମ କରାଇବାର ଚେଷ୍ଟା କଲେ । —ଏତେ ସାନ ଚାକିରି, ଏତେ ଟିଲାହୁଆ, କୋଉ ଗୋଟାଏ ଗଳିରେ ଭଡ଼ାଘରେ ରହନ୍ତି କୁଆଡ଼େ । ଭାଉଜ ତ ଚିର ଅସନ୍ତୁଷ୍ଟ, ତାଙ୍କର କମ୍ ଦରମା ଓ ଚାକିରି କ୍ଷେତ୍ରରେ ଅପାରଗତା ଲାଗି ଚିଡ଼ ଚିଡ଼ ହୁଅନ୍ତି ସବୁବେଳେ । ବଡ଼ ପୁଅଟି କୁଳାଙ୍ଗାର । ବଡ଼ ଝିଅ ବିଧବା । ସେମାନେ ନିଜ ନିଜ ଜୀବନରେ ବିଫଳତା ପାଇଁ ନିକୁଞ୍ଜଭାଇଙ୍କୁ ଦାୟୀ କରୁଥିବେ ହୁଏତ । ବାକି ସାନପିଲାମାନେ—ଅଭାବ ଅନଟନରେ ବଢ଼ି ତାଙ୍କର କେତେ ପିତୃଭକ୍ତ ଥିବେ କିଏ କହିବ ? ନିକୁଞ୍ଜ ଭାଇଙ୍କର ଖୁବ୍ ଭଲ ସାଙ୍ଗ କେହି ନାହାନ୍ତି । ସେ ସିନେମା ଦେଖୁଥିବେ ? ଅସମ୍ଭବ । ଜୀବନକୁ ଉପଭୋଗ କରିବାର ଅନ୍ୟ କୌଣସି ପନ୍ଥା ଜାଣିଥିବେ ? ନୁହେଁ ନିଶ୍ଚୟ । କେମିତି ବଞ୍ଚନ୍ତି ସେ ?

କିଶୋରବାବୁଙ୍କୁ ନିଦ ଲାଗି ଆସୁଥିଲା ବୋଧହୁଏ, ତାଙ୍କ ଲମ୍ବା ନିଃଶ୍ୱାସ ଶୁଭୁଥିଲା । ଲଳିତା ତଥାପି ଅସ୍ପଷ୍ଟ ଗଳାରେ କହି ଚାଲିଥିଲେ—ନିକୁଞ୍ଜଭାଇ କେମିତି ବଞ୍ଚନ୍ତି ଜାଣ ? ବଞ୍ଚିବା ତାଙ୍କର ଦାୟିତ୍ୱ । ସେ ବଞ୍ଚିଛନ୍ତି

ଅନ୍ୟ କେତୋଟି ପ୍ରାଣୀଙ୍କୁ ବଞ୍ଚାଇବା ପାଇଁ, ଯେଉଁମାନଙ୍କ ବଞ୍ଚିବା ପାଇଁ ସମ୍ବଳ ଯୋଗାଇବା ତାଙ୍କ ଦାୟିତ୍ୱ ଅଥଚ ବିନିମୟରେ କୃତଜ୍ଞ ହେବା ଯେଉଁମାନଙ୍କ କର୍ତ୍ତବ୍ୟର ଅନ୍ତର୍ଭୁକ୍ତ ନୁହେଁ ।

ଲଳିତା ଦେବୀ ଜାଣିଥିଲେ କିଶୋରବାବୁ ଶୋଇଲେଣି । ସେ ଆହୁରି ଅସ୍ପଷ୍ଟ ଗଳାରେ କେବଳ ଓଠର ସଞ୍ଚାଳନାରେ କହିଲେ—ମୁଁ କାହିଁକି ତେବେ ଦୁଃଖୀ ହେବି କହ ? ମୋର ତ ଅଭାବ ନାହିଁ କିଛି । ମୁଁ ଜାଣେ ସେ ନିରମ, ଭାବପ୍ରବଣ ଜୀବଟିକୁ ମୋଠୁ ଯଥେଷ୍ଟ ବେଶି ଦାୟିତ୍ୱ ତୁଲାଇବାକୁ ହୁଏ, ସଂଗ୍ରାମ କରିବାକୁ ହୁଏ ଓ ବଞ୍ଚିବାକୁ ହୁଏ, ଅନ୍ୟଲାଗି ।

ପରଦିନ ଅପରାହ୍ନ ପୂରା ବିତି ନ ଥିଲା, ନିକୁଞ୍ଜବାବୁ ଆସି ପହଞ୍ଚିଲେ । ବେଶ୍ ସକାଳୁ କିଶୋରବାବୁ କାମରେ ଚାଲିଯାଇଥିଲେ । ସ୍ୱାମୀ ଗଲାପରେ ଲଳିତାଦେବୀ ପୁଅ ଝିଅଙ୍କୁ ଚିଠି ଲେଖିଲେ ଓ ବିବାହୋତ୍ତର ଜୀବନର ଫଟୋ ଆଲବମ୍ ଖୋଲି ଦେଖିଲେ—ଯେଉଁ ସମୟରେ ପୁଅ ଝିଅ ଦୁହେଁ ତାଙ୍କ ଜୀବନରେ ଅବିଚ୍ଛେଦ୍ୟ ଅଂଶ ପାଲଟି ଯାଇଥିଲେ । ସେମାନେ କିନ୍ତୁ କିଶୋରବାବୁଙ୍କ ଇଚ୍ଛାନୁଯାୟୀ ସୁଦୃଢ଼ ଭିତ୍ତି ପାଇଁ ଖ୍ୟାତିସମ୍ପନ୍ନ ସ୍କୁଲମାନଙ୍କୁ ଗଲାପରେ କ୍ରମଶଃ ସେମାନଙ୍କ ଅନୁପସ୍ଥିତିକୁ ଲଳିତା ମାନିନେଲେ । ଚିଠି ଲେଖିଲାବେଳଠାରୁ ସାରା ଦି'ପ୍ରହରର ଏ ଘରୁ ସେ ଘର ହେବା ଭିତରେ ମେଞ୍ଚାଏ ଅନ୍ଧୁଆ ସୂତାଭଳି ଲଳିତାଙ୍କ ମନର ଗମ୍ଭୀର ଧାରରେ ଗୋଟିଏ ବିଷଣ୍ଣ ଭାବନା ଗୋଡ଼ାଇ ଥିଲା—ନିଜ ଚାହୁଁଥିବା ଜୀବନ ସେ ପାଇ ନ ଥିଲେ, ପାଇବାର ସ୍ୱପ୍ନ ବହୁ ପଛରେ ପଡି ଯାଇଥିଲା । ଯେଉଁ ଜୀବନ ମିଳିଲା, ସେଥିରେ ସେ ନିଜକୁ ହଜାଇ ଦେଇ ପାରିଲେ ନାହିଁ, ଫିଙ୍ଗିଦେଇ ବି ପାରିଲେ ନାହିଁ, ଖାଲି ନିଶ୍ଚେଷ୍ଟ ହୋଇ ସ୍ରୋତରେ ଭାସି ଚାଲିଥିବା କଥା—ଯେ ଭାସି ଚାଲିବା ସ୍ଥିର ରହିବା ସଙ୍ଗେ ସମାନ ।

ଆଜି ଲଳିତା ଦେବୀ ହଠାତ୍ ଅନୁରୋଧ କଲେ ଯେ ସେ ନିଜେ ନିକୁଞ୍ଜ ଭାଇଙ୍କ ସଙ୍ଗରେ ଯାଇ ତାଙ୍କ ଘରୁ ବୁଲି ଆସିବେ, ଭାଉଜ ନ ଆସିଲେ ନାହିଁ । ନିକୁଞ୍ଜବିହାରୀ ବିସ୍ମିତ ହେଲେ, ଖୁସି ହେଲେ ଓ ସାମାନ୍ୟ ବିବ୍ରତ ହେଲେ ।

ରିକ୍ସାରେ ଅନେକ ଗଳିକନ୍ଦିର ଧକ୍କା ଚକଡ଼ ପରେ ଘରଟି ପହଞ୍ଚିଲା । ନିକୁଞ୍ଜବିହାରୀ ଆଗରେ ସାରଥୀ ପରି ସାଇକଲ ଗଡ଼ାଇ ଆସିଥିଲେ । ସାନ, ପୁରୁଣା ପକ୍କା ଘରଟିଏ । ଆଖପାଖ ଅଧିକାଂଶ ପତନୋନ୍ମୁଖ ପକ୍କାଘର ବା ପୁରୁଣା ଖପରଛପର ଘର । ରାସ୍ତାରେ ମଇଳା ଚିରାସାର୍ଟ ପିନ୍ଧି ଚୁଟ୍ଣ ପିଲଗୁଡ଼ାଏ ଡୁ ଡୁ ଖେଳୁଥିଲେ । ଘର ସାମ୍ନାଦେଇ ବହିଯାଉଥିବା ବୁଦ୍ ବୁଦ୍ ଭରା ଗାଢ଼ ସବୁଜ ନାଳ ଉପରେ ଦୁଇଖଣ୍ଡ କାଠପଟା ପଡ଼ିଥିଲା ଭିତରକୁ ପଶିବାଲାଗି ।

ଲଳିତାଦେବୀ ଗୋଟାଏ ସଉକ୍‌ରେ ଚାଲି ଆସିଥିଲେ । ସେ ନିକୁଞ୍ଜବିହାରୀଙ୍କ ପରିବାରରେ ଏମିତି ଚହଳ ସୃଷ୍ଟି କରିବେ ବୋଲି ଜାଣି ନ ଥିଲେ । ପରିଚୟ ଓ ପ୍ରମାଣର ଆଦାନ ପ୍ରଦାନ ପରେ ଲଳିତା ଦେବୀ ଓ ନିକୁଞ୍ଜବାବୁ ଦୁଇଟି କାଠ ଚଉକିରେ ବସିଥିଲେ, ନିକୁଞ୍ଜବାବୁଙ୍କ ସ୍ତ୍ରୀ ଆଗରେ ଠିଆହୋଇ ହସ ହସ ମୁହଁରେ ଡାହାଣହାତ ଆଙ୍ଗୁଠି ସନ୍ଧିରୁ ଚକଟାଅଟା ସଫା କରୁଥିଲେ । ବଡ଼ ପୁଅଟିକୁ ଛାଡ଼ି ବାକି ସମସ୍ତ ସନ୍ତାନ ଲଳିତାଙ୍କୁ ବେଢ଼ି କୌତୂହଳୀ ଦୃଷ୍ଟିରେ ଚାହିଁଥିଲେ—ତାଙ୍କ ଖୋଷାକୁ, ହାତରୁ ଝୁଲୁଥିବା ବ୍ୟାଗ୍‌କୁ ଓ ଯୋତାକୁ । ଲଳିତାଦେବୀ ପ୍ରଶ୍ନଟିଏ ପଚାରିଲେ ସେମାନେ ପରସ୍ପରଆଡ଼େ ଅନାଅନି ହୋଇ ଅପ୍ରସ୍ତୁତ ହେଲାଭଳି ହସନ୍ତି ଓ ତାପରେ ନିକୁଞ୍ଜବାବୁ ଓ ତାଙ୍କ ସ୍ତ୍ରୀଙ୍କ ବାରମ୍ବାର ପ୍ରଶ୍ନଟିର ପୁନରାବୃତ୍ତି, ଅନୁରୋଧ ଓ ତାଗିଦା ପରେ କୁଣ୍ଠିତ ଉତ୍ତରଟି ମିଳେ । ମଲ୍ଲୁ, ନିକୁଞ୍ଜବାବୁଙ୍କ ବଡ଼ ଝିଅଟି, କବାଟ ଉହାଡ଼ରେ ଅଧାଦେହ ଲୁଚାଇ, ନିକୁଞ୍ଜବାବୁଙ୍କର ଯୌବନବେଳର ମୁହଁଟିରେ ଲଜ୍ଜା ଓ କୌତୂହଳ ଫୁଟାଇ ଚାହିଁଥିଲା । ଫ୍ରଣ୍ଟ କୋଠରୀଟିର ଗୋଟାଏ ବଡ଼ ଥାକରେ ପିଲାଙ୍କ ବହିପତ୍ର ଗଦାହୋଇ ରହିଥିଲା ଓ ସେ ଅଞ୍ଚଳର କାନ୍ଥସାରା ସ୍ୟାହି ତଥା ଅନ୍ୟାନ୍ୟ ବିକୃତ ରଙ୍ଗଗୁଡ଼ିକର ହାତଲେସା ଦାଗ । ପଟା ଖଟଟିଏରେ ଚଉତା ହୋଇ କନ୍ଥା ଓ ମଇଳା ତକିଆ ଆଦି ରହିଥିଲା ଗୋଟାଏ କଡ଼କୁ । କାନ୍ଥରେ ପୁରୁଣା କ୍ୟାଲେଣ୍ଡର୍ ଓ ଝିଅର କାଚବନ୍ଧେଇ ସିଲେଇ କାମ । ଘରଟିରେ ଲୋକ ବଳେଇ ପଡ଼ୁଥିବାର ରୁଦ୍ଧ ଆବହାଓ୍ୱା ।

ଲଳିତା ଦେବୀଙ୍କୁ ଗାଢ଼ କଷା ଚା’ ଓ ପାଖ ଦୋକାନର ବରା ଆଳୁଚପ୍‌ରେ ଆପ୍ୟାୟିତ କରାଗଲା । ସନ୍ଧ୍ୟା ହୋଇ ଆସୁଥିଲା, ଲଳିତା ଦେବୀ

ଯିବାକୁ ବ୍ୟସ୍ତ ହେଲେ । ନିକୁଞ୍ଜବାବୁ ସାନଝିଅଟିକୁ ନିର୍ଦ୍ଦେଶ ଦେଲେ— ଲଳିତା ଦେବୀଙ୍କୁ ଛାତ ଉପରୁ ବୁଲେଇ ଆଣିବା ପାଇଁ—ଏ ସମୟ ଭିତରେ ସେ ରିକ୍ସା ଡାକିଆଣିବେ ଓ ନିଜେ ଲଳିତାଙ୍କ ଘର ପର୍ଯ୍ୟନ୍ତ ଛାଡ଼ିବାକୁ ଯିବେ ।

ଘର ଭିତରକୁ ଛୋଟ ବାରଣ୍ଡା ଓ ଦୁଆର ବାରଣ୍ଡାରୁ ଅଣଓସାରିଆ ପାହାଚ ଉପରକୁ ଯାଇଛି—ଇଟା ଦିଶୁଛି ପାହାଚମାନଙ୍କରୁ । ଆଗେ ଅଗେ ଝିଅଟି ଚାଲୁଥିଲା ଓ ପଛେ ପଛେ ଝାପ୍‌ସା ଅନ୍ଧାରରେ ଲଳିତା ଦେବୀ ଡରି ପାଦ ପକାଉଥିଲେ । ପାହାଚ ଉପରଟି ଖପର ଢଙ୍କା ଓ ତା' ବାହାରକୁ ଛୋଟିଆ ଖୋଲା ଛାତଟିଏ ସନ୍ଧ୍ୟାର ନାଲି ଆଲୁଅରେ ସ୍ପଷ୍ଟ ଦିଶୁଥିଲା । କୁଣ୍ଡମାନଙ୍କରେ ଗୋଲାପ ଗଛ କେତୋଟି । ସାନ ସାନ ଫୁଲ ଧୀର ପବନରେ ଦୋହଲି ନାରଙ୍ଗୀ ଛିଟରେ ଉଜ୍ଜ୍ୱଳ ଦିଶୁଥିଲେ—ଘର ଚାରିଆଡ଼ର ଦରଭଙ୍ଗା ଖପରଛାତ ଓ ଲୁଗା କନ୍ଥା ଶୁଖୁଥିବା ଶିଉଳିଲଗା ପକ୍କା ଛାତର ପୃଷ୍ଠଭୂମିରେ ଫୁଲଗୁଡ଼ିକ ମାନୁ ନଥିଲେ ଆଦୌ । ତଳୁ ରାସ୍ତାରୁ ତୁ ତୁ ଖେଳୁଥିବା ପିଲାଙ୍କ ପାଟି ଶୁଭୁଥିଲା ତଥାପି; ଘର ପଛପଟ ଗାଡ଼ିଆର ଶାଗୁଆ ପାଣି ଛାଇମିଶା ନାଲିଛିଟରେ ବିଶ୍ରୀ ଦିଶୁଥିଲା । ଚାରିଆଡ଼େ ମଳିନ, ପତନୋନ୍ମୁଖ ଘରଙ୍କ ଭିଡ଼, ଅଣଓସାରିଆ ଦୁଆର ମାନଙ୍କରେ ମଳିନ ଲୋକମାନେ ଆତଯାତ ହେବାର ଦିଶୁଛି ।

ଏଠାକାର ମଳିନ ଜୀବନ ଭଦ୍ରଲୋକଙ୍କ ଭିତରୁ ନିକୁଞ୍ଜ ବାବୁ ଜଣେ— ଧକଡ଼ ଚକଡ଼ ଗଳିରାସ୍ତାରେ ଜୀବନସାରା ଚୁପ୍ ଚାପ୍ ମୁହଁ ପୋଡି ଚାଲୁଥିବା ଲୋକଙ୍କ ଭିତରୁ ଜଣେ । ପିଠିରେ ବୋଝ—ସାମ୍ନାରେ ରାସ୍ତା । ଲଳିତାଙ୍କର ମନେ ପଡ଼ିଲା, ନିକୁଞ୍ଜବିହାରୀଙ୍କ ଜୀବନ ସହିତ ସେ ନିଜ ଜୀବନର ତୁଳନା କରୁଥିଲେ । ଲଳିତାଙ୍କୁ ହସ ମାଡ଼ିଲା ଆତ୍ମ ଦମ୍ଭରେ—ନାଃ, ନିଜ ପ୍ରତି ଅନ୍ତତଃ କିଛି ସମ୍ମାନ ରହିବା ଉଚିତ । ଏ ଜୀବନ ପଶୁଜୀବନ । ଦମ୍ଭୀ ଘୃଣା-ଭରିକାରେ ସେ ଶିଟେଇଲେ ।

ହଠାତ୍ ଲଳିତା ଭାବିଲା—କାହୁଁ ଏଠି କଣ ଦେଖିବା ପାଇଁ ଆସିବାକୁ କହିଲେ ନିକୁଞ୍ଜ ବାବୁ ? ସାନ ଝିଅଟି ଉଦ୍ଦେଶ୍ୟରେ ଆଖି ବୁଲାଇ ସେ ଦେଖିଲେ ନିକୁଞ୍ଜ ବାବୁ କେତେବେଳେ ଆସି ଛାତ ଉପରେ ହାତ ଛନ୍ଦି ଶାନ୍ତ ଆଖିରେ ଅନେଇଚନ୍ତି ଦୂରକୁ । ରିକ୍ସା ଆସିଗଲାଣି ? ଲଳିତା ଆଶ୍ଚର୍ଯ୍ୟରେ ପଚାରିଲେ,

ଆସି ଯାଇଛ । ନିକୁଞ୍ଜ ବାବୁ ସଂକ୍ଷିପ୍ତ ଉତ୍ତର ଦେଇ ପୁଣି ଅନ୍ୟମନସ୍କ ଭାବେ ଛାତ କଡ଼ ଆଡ଼କୁ ଗ୍ଲେଲେ ।

ଲଳିତାଙ୍କର ମନେପଡ଼ିଲା, ଘରକୁ ଫେରିବାକୁ ହେବ, କିଶୋର ବାବୁ ଫେରିଥିବେଣି ହୁଏତ । ହଠାତ୍ ତାଙ୍କର ଅଦମ୍ୟ ଇଚ୍ଛାହେଲା ନିକୁଞ୍ଜ ବାବୁଙ୍କ ସରୁ କାନ୍ଧକୁ ଝାଙ୍କି ଦେଇ ପଚ୍ଚରିବେ—ବଞ୍ଚିବାକୁ ମନୋଟନସ୍ ଲଗେନାହିଁ ତମକୁ ? ମନୋଟନସ୍ ଲାଗେନ ? ସୁଖ କ'ଣ ଜାଣିଚ ତମେ ? ଆନନ୍ଦ କଣ ଜାଣିଚ ?

ନିକୁଞ୍ଜ ବାବୁ ହଠାତ୍ ଆକାଶ ଆଡ଼କୁ ମୁହଁ ଫେରାଇ କହିଲେ—କେମିତି ଲାଗିଲା ସୂର୍ଯ୍ୟାସ୍ତ ?

ସୂର୍ଯ୍ୟାସ୍ତ ? ଲଳିତା ଦେବୀ ଆଶ୍ଚର୍ଯ୍ୟ ହୋଇ ଗ୍ହିଁଲେ । ସୂର୍ଯ୍ୟାସ୍ତର ରଙ୍ଗ ଆହୁରି ଗାଢ଼ ହୋଇଥିଲା ଓ ନିକୁଞ୍ଜ ବାବୁ ତାଙ୍କ ଚିଲ୍‌ପେଣ୍ଟ, ନେଳୀ କାମିଜ୍ ସମେତ ସେ ରଙ୍ଗରେ ଗାଧୋଇ ଆଲଗା ଦିଶୁଥିଲେ—ସେ ରଙ୍ଗରେ ହେଉ ବା ସେ ପରିବେଶରେ ହେଉ, ଏକ ମୁଗ୍ଧ ଆବେଗ ତାଙ୍କ ମୁହଁରେ ନୂଆ ଛାପ ଦେଇଥିଲା । ନିକୁଞ୍ଜ ବାବୁ ସେଇ ଆବେଗରେ ଥାଇ ପଶ୍ଚିମ ଆକାଶ ଆଡ଼େ ଆଙ୍ଗୁଠି ଦେଖାଇ କହୁଥିଲେ—ସୂର୍ଯ୍ୟୋଦୟନ୍ତ । ସେଇଠି ହୁଏ, ସେଇ ଫିକାନୀଳ ପାହାଡ଼ ମାଳ ଦିଶୁନି, ଏବେ ଏ ନାଲି ଝରିରେ ବେଶି ଅସ୍ପଷ୍ଟ ଦିଶୁଚ—ସେଠି ।

ନିକୁଞ୍ଜବିହାରୀଙ୍କ ପ୍ରାଚୀ କରୁଣ ଭ୍ରୂ ଓ ଆଖି ଏବେ ଏକ ମଧୁର ଭାବରେ ଅଙ୍କିତ ଦିଶୁଥିଲା । ସେ ତାଙ୍କ ଆତ୍ମୀୟ ସ୍ୱରରେ ଆଉ ଟିକେ ନୂତନ ମାଧୁର୍ଯ୍ୟ ମିଶାଇ କହିଲେ—ଜାଣୁ ଲଳିତା, ପ୍ରତିଦିନ ଭୋର୍‌ରୁ ମୁଁ ନିଶ୍ଚୟ ଏଠିକି ଆସେ, ପୂର୍ବ ଆକାଶଟା ଉଜ୍ଜ୍ୱଳ ଦିଶିବାକୁ ଆରମ୍ଭ କରିବାଠାରୁ ସୂର୍ଯ୍ୟ ପୂରା ଉଦୟ ହେବାଯାଏଁ—ମନରେ ଏତେ ଶାନ୍ତି, ଏତେ ଆନନ୍ଦ ଆସେ ! ତା'ପରେ ସୂର୍ଯ୍ୟଙ୍କୁ ପ୍ରଣାମକରି ଫେରେ ।

ଲଳିତା ଦେବୀଙ୍କ ହୃଦପିଣ୍ଡଟା ହଠାତ୍ ସଙ୍କୋଚନରେ ଯନ୍ତ୍ରଣା ଦେଲା । ଏ କିଏ ନିରୀହ ଦୁଃଖୀ ନିକୁଞ୍ଜ ବିହାରୀଙ୍କ ଭିତରେ ? ଏ ଫୁଲଗୁଡ଼ିକ ଦେଖୁଚୁ ! ମୁଁ ନିଜେ ହାତରେ ଲଗେଇଚି ଏ ଗଛଗୁଡ଼ିକ । ମୋ ବଡ଼ଝିଅ ମାଲୁ ଏମାନଙ୍କର ଯତ୍ନନିଏ, ପାଣିଦିଏ । ଅଳ୍ପ ମାଟିକିନା, ବେଶି ବଡ଼ ଫୁଲ ହେଉନାହିଁ ।

ଲଳିତା ଦେଖି ହଠାତ୍ ନିଜକୁ ନ୍ୟୂନ, ଅପମାନିତ ମନେକଲେ । ଏ ଏତେଦୂର ଗନ୍ଧ—ଏତେ ସବୁଜ ଅପର ପାର୍ଶ୍ୱ ? ଗୋଟାଏ ପାଖର ଧୂସର ପ୍ରତିବିମ୍ବ ହିଁ ଦେଖି ଲଳିତା ଆତ୍ମପ୍ରସାଦ ଲଭୁଥିଲେ ସମବୟଥୀ ପଡ଼ୋଶୀଟିଏ ବୋଲି ? ତାଙ୍କର ଧୈର୍ଯ୍ୟ ଚ୍ୟୁତ ଘଟୁଥିଲା । ତଳେ ରିକ୍ସା ଅଟକିଛି, ଯିବାକୁ ହେବ ।

ନିକୁଞ୍ଜ ବାବୁ କହୁଥିଲେ—ମୋ ଠାକୁର ଘର ଦେଖିଛ ? ଏଇ ସାହାଡ଼ ତଳେ ବାରଣ୍ଡା କଡ଼କୁ ଛୋଟିଆ କୋଠରୀଟିଏ, ଧୂପ, ଚନ୍ଦନ ବାସ୍ନାରେ ଠାକୁରଙ୍କ ସାମ୍ନାରେ ବଡ଼ ପ୍ରଶାନ୍ତ ଆସେ, ଦେଖିବାକୁ ଟିକେ ?

—ନା, ମୋର ଡେରି ହେଲଣି । ଲଳିତା ଦେଖି ନିଜ କଣ୍ଠରେ ଏକ ଅହେତୁକ, ନିଷ୍ଫଳ କ୍ରୋଧର ଆଭାସ ପାଇଥିଲେ । ଆହୁରି କେଉଁ ନିଭୃତ ଭୟାନକ ଆତ୍ମଦମ୍ଭର ଦ୍ୱୀପ ଭିତରକୁ ତାଙ୍କୁ ଠେଲିଦେବାକୁ ଚାହୁଁଛନ୍ତି ନିକୁଞ୍ଜ ବାବୁ ? ଠକି ହୋଇ ଯିବାର ବ୍ୟର୍ଥ ଆକ୍ରୋଶ ଓ ଅଭିମାନରେ ସେ ସେଠୁ ମୁକ୍ତି ଚାହୁଁଥିଲେ ।

ଓହ୍ଲାଇବା ବେଳେ ସିଡ଼ିଟା ଆହୁରି ଅନ୍ଧାର ହୋଇ ଯାଇଥିଲା—ସନ୍ଧ୍ୟା ନଇଁ ଆସିଥିଲା । ନିକୁଞ୍ଜ ବାବୁ ଅଭ୍ୟସ୍ତ ପାଦରେ ଓହ୍ଲେଇ ଯାଉଥିଲେ, ତାଙ୍କର କାଳୁଆ ଅନ୍ଧାର ସିଡ଼ିକୁ ଭୟ ନାହିଁ । ସେ ଶୀତଳ ପଥରକୁ ଚିହ୍ନି ତାଙ୍କ ସ୍ପର୍ଶକୁ କରି ଜାଣନ୍ତି । ଏକ ସହଜ ଦେହରକ୍ଷା ଦୁନିଆଁରେ ବଞ୍ଚୁଥିବା ଲଳିତାଙ୍କୁ କିନ୍ତୁ ଏଠି ପାଦ ପକାଇବାକୁ ଭୟ ହେଉଥିଲା—ଅନେକ ଦିନ ନିଶ୍ଚେଷ୍ଟ ହୋଇ ରହିବା ପରେ, ଅନ୍ଧାରରେ ନିଜେ ପାଦ ପକାଇବା ତାଙ୍କର ଆଉ ମନେ ନାହିଁ । ତାଙ୍କ ଜୀବନ୍‌ ଶୋଇଲା ପୁଅର ଶୀତଳ ଜୀବନ—ମୃତ ଜୀବନ । ଏ ଜାଗା ତାଙ୍କୁ ଭୟ ଦେଉଥିଲା—ଅନ୍ଧାରର, ନିଃସଙ୍ଗତାର, ମୃତ୍ୟୁର, କବରର ।




ନିଜ ବାରଣ୍ଡାରେ ବସି, ଝିପ୍ ଝିପ୍ ବର୍ଷାରେ ଭିଜି ରାସ୍ତାରେ ଯାଉଥିବା ସ୍କୁଲ୍ ଛୁଆଙ୍କୁ ଦେଖି ପଦ୍ମନାଭ ବାବୁ ଅଳ୍ପନିକ ସେଣ୍ଟିମେଣ୍ଟାଲ୍ ହେଲେ— କାହିଁଗଲା ସେ ବାଲ୍ୟକାଳ ! (ଆଖି ଟେବୁଲ୍ ଉପରେ ଗୋଡ଼ ଓ ରାସ୍ତା ଆରପାଖ କୋଠାଭେଦି ଦୃଷ୍ଟି) ଯେତେବେଳେ ସେ କାଖରେ ସ୍ଲେଟ୍ ଜାକି ଖାଲି ପାଦରେ କାଦୁଅ ଛପଛପ କରି ସ୍କୁଲ୍ ଯାଉଥିଲେ ! ଅଥଚ ଦେଖ ହଠାତ୍ ସେ ବୁଢ଼ା ହୋଇ ରିଟାୟାର୍ କରିବା ଉପରେ । ଚେଷ୍ଟା କରିବି ସେ ବିସ୍ମୃତ ପ୍ରାୟ ସ୍କୁଲ୍ ଘରେ ମନଟାକୁ ବେଶିକ୍ଷଣ ଲଗାଇ ପାରିଲେନି । ଏକଥା ଅବଶ୍ୟ ଆଜି ନୂଆ ନୁହେଁ, ଗତ ଅନେକଦିନ ହେଲା ଚିନ୍ତାଟା ତାଙ୍କ ମନକୁ ଶୟନେ ସ୍ୱପନେ ଜାଗରଣେ ଆଚ୍ଛନ୍ନ କରି ରଖୁଛି । ବୟସ ଓ ତାଙ୍କ ସଂସାର ଛଡ଼ା ଡାଏବିଟିସ୍ ଓ ବ୍ଲଡ଼୍ ପ୍ରେସର୍ ବି ତାଙ୍କୁ ଚିନ୍ତାର ଖୋରାକ ଦେଉଛି । ଆଜିଭଳି ବର୍ଷାଭରା ଶନିବାରଟାରେ ବି ସେ ଅଫିସ୍ ନଯାଇ କେବଳ କାକୁସ୍ଥ ଚିତ୍ତରେ ରିଟାୟାର୍ କରିବାକୁ ଦିନ କେତୋଟି ଥିବା କଥା ଭାବୁଛନ୍ତି, ପୁଣି ମନଟାକୁ ଅନ୍ୟ ଦିଗକୁ ଟାଣାଓଟରା କରୁଛନ୍ତି । ପୁଣି ସେ ମନଟାକୁ ଓଟାରିଲେ—ବାହାରେ ବର୍ଷା, ଶୀତଳ ଶାନ୍ତ ପରିବେଶ, କାମ କିଛି ନାହିଁ । ପ୍ରାୟ ଓଦା ବାରଣ୍ଡାର ନିରାପଦ ଶୁଖିଲା କୋଣଟିରେ ପ୍ରିୟ ବେତ ଚଉକିଟି—ଯିଏ ତାଙ୍କ ଶରୀରର ଆୟତନକୁ ବର୍ଷପରେ ବର୍ଷ ନିର୍ବିବାଦରେ ମାନିନେଇ ତଦନୁଯାୟୀ ନିଜର ଆକୃତି ବଦଳାଇଛି ଓ ନିଜ ଦେହରେ ଆଶ୍ରିତ ଶରୀରର ସ୍ପଷ୍ଟ ଛାପଟିଏ ବହନେଇଛି— ବାସ୍, ସେଇଥିରେ କେବଳ ଦେହଟିକୁ ସମ୍ପୂର୍ଣ୍ଣରୂପେ ଖାପ୍ ଖୁଆଇ ଆରାମ୍ କରିବା କଥା ।

ପୁରୁଣା ଜଣାଶୁଣା ଦୁନିଆ । ଜିଆଟିଏ ବାରଣ୍ଡା ଉପରକୁ ଉଠିବାକୁ ଚେଷ୍ଟାକରି ପରାସ୍ତ ହେଉଛି ବାରମ୍ବାର—ଗୋଟିଏ ଜାଗାରେ ତା'ର ନାଲି ରବରନଳୀ ଭଳି ଦେହଟା ଲମ୍ବୁଛି ପୁଣି ସଙ୍କୁଚିତ ହେଉଛି । ରାସ୍ତାରେ ସାନ ଝିଅଟିଏ ଟିଣ ସୁଟ୍‌କେସ୍‌ଟିଏ ଝୁଲାଇ ଝୁଲାଇ ଅନ୍ୟମନସ୍କ ହୋଇଚାଲି ପାଦ ଘୋଷାରି ଚାଲୁଛି ଯେ ତା ଧଳା ଫ୍ରକ୍ ଓ ଚିକ୍କଣ ଗୋଡ଼ ପଲ୍ଟସାରା ମାଟିଆ କାଦୁଅ ଛିଟା । ରଙ୍ଗହୀନ ଅସଂଖ୍ୟ କାଚ ସୂତା ଭଳି ବର୍ଷା ପଡ଼ିଚାଲିଛି ଅବିରତ —ଆକାଶରୁ ମାଟିକୁ, ମାଟିରୁ ଆକାଶକୁ ରଫୁ କଲାଭଳି । ନିଜ କଳ୍ପନାକୁ ନିଜେ ତାରିଫ୍ କଲେ ପଦ୍ମନାଭ ବାବୁ । ପିଲାଦିନେ ବର୍ଷାଋତୁକୁ ନେଇ ରଚନା ଲେଖାଯାଏ ଓ କବିତା ବି ପଢ଼ାଯାଏ । କୌଣସି କବିତା ତାଙ୍କର ଆଉ ମନେନାହିଁ । ଏ ଉତ୍ତୀର୍ଣ୍ଣ ବୟସଟା ସମ୍ପୂର୍ଣ୍ଣରୂପେ ତାଙ୍କ ମନକୁ ଆଚ୍ଛାଦିତକରି ରଖିଛି । ଏଇତ, ପୁନର୍ବାର ବର୍ତ୍ତମାନଟା ଧସେଇ ପଶିଲା । ପଦ୍ମନାଭ ବାବୁ ମେରୁଦଣ୍ଡ ସିଧାକରି ଭିଡ଼ମୋଡ଼ ହେଲେ ବର୍ତ୍ତମାନକୁ ମନରୁ ଝାଡ଼ିଝୁଡ଼ି ଦେବାପାଇଁ ଓ ମନକୁ ଦୃଢ଼କଲେ ଏ ଶାନ୍ତ ଦ୍ୱିପ୍ରହରେ ଯେ ଏଇଠି ବସି ଚାରିଟାଯାଏଁ ବର୍ଷାଋତୁ ଓ ଅତୀତର ମନ୍‌ସୁନ୍ ଛଡ଼ା ଆଉ କିଛି ଭାବିବେ ନାହିଁ ।

ଏ ସମୟରେ ପତ୍ନୀ କୁମୁଦିନୀ ପ୍ରବେଶିଲେ ଓ ଏ ପ୍ରକାର ବର୍ଷାକୁ ଚାହିଁ ନିଶ୍ଚିନ୍ତରେ ବସିଥିବା ପଦ୍ମନାଭ ବାବୁଙ୍କୁ ଦେଖି ବିସ୍ମିତ ହେଲେ ।—କହୋ, ତମେ କଣ ଆଜି ଅଫିସକୁ ଯାଇନା ମୋଟେ ?

—ନାଃ ! ରିଟାୟାର୍ କରିବାକୁ ଦିନ ଚାରିଟା ରହିଲା । ମୁଁ ନଗଲେ କୋଉ ଏବେ ଅଫିସଟା ଅଚଳ ହୋଇଯାଉଛି ।

କୁମୁଦିନୀ ଦୀର୍ଘଶ୍ୱାସ ଛାଡ଼ି ଭାବିଲେ, ପଦ୍ମନାଭ ବାବୁ ଏ କଥାଟା ଆଗରୁ ଭଲ ହୃଦୟଙ୍ଗମ କରିଥାନ୍ତେ !

—ତମେ ଘରେ ଅଛ, ଅଥଚ ଆମେ କେହି ଜାଣିପାରୁନୁ, ଏ ନୂଆ କଥା ! ଏ ବାହାରଦୁଆରେ ବସିଚ ସକାଳ ପହରୁ ?

ପତ୍ନୀଙ୍କର ପ୍ରଥମ ବାକ୍ୟର ବ୍ୟଙ୍ଗୋକ୍ତିକୁ ପଦ୍ମନାଭବାବୁ ବେଖାତିର୍ କରି ନିର୍ଲିପ୍ତ ଉତ୍ତର ଦେଲେ—ଏ ବାହାର ନୁହେଁ, ଆମ ବାରଣ୍ଡା । ଆଉ ମୁଁ ଭାତ ଖାଇସାରି ଦିନ ବାରଟାରୁ ବସିଚି ଏଠି, ସକାଳ ପହରୁ ନୁହେଁ ।

ଅତଃପର ପତ୍ନୀ କହିଲେ ଯେ ସେ ଏ ଧରମଛଡ଼ା ତାଙ୍କ ସ୍ୱାମୀଙ୍କଠୁ ଆଉ କେଉଁ ପ୍ରକାର ଉତ୍ତର ବା ଆଶା କରିଥାନ୍ତେ ! ତେବେ ସେ ଅଫିସ୍ ଯଦି ନ ଯାଉଛନ୍ତି, ବେକାର୍ ବସି ରହିବା ଅପେକ୍ଷା, ଘରୁ ଫୋନ୍‌ଟା ଉଠିଯିବା ଆଗରୁ ସୀତାନାଥ ବାବୁଙ୍କୁ ଫୋନ୍‌କରି ଘରଭଡ଼ା କଥାଟା ବୁଝିନେବା ଉଚିତ୍, ଓ ପୀତାମ୍ବର ବାବୁଙ୍କୁ ଟିକେ ଏଟରେନ୍‌ର ଗୃହକର କଥାଟା ମନେ ପକେଇଦେଲେ ବି ଚଳନ୍ତା । କୁମୁଦିନୀ ଫେରି ଯାଉ ଯାଉ ରହିଯାଇ ପୁଣି ପଚାରିଲେ—ଆଚ୍ଛା, ଏ ମାସ ଦରମାଟା କଣ ସତରେ ଏବେ ମିଳିବନି ?

ପଦ୍ମନାଭ ବାବୁ ପକେଟ୍‌ରେ ହାତ ପୂରାଇ ଅବଶିଷ୍ଟାଂଶ ନୋଟ୍ କେତୋଟିର ମୋଡ଼ ଭିତରେ ଆଙ୍ଗୁଠି ଚଳାଉ ଚଳାଉ ପ୍ରଥମେ ଦୋ ଦୋ ପାଞ୍ଚ ହୋଇ ଓ ପରେ ପତ୍ନୀଙ୍କ ମୁହଁକୁ ସିଧା ଚାହିଁ ଉତ୍ତର ଦେଲେ—ସରିଯାଇଛି ।

—ମାନେ ?

—ମାନେ ଆଉ କଣ ? ପଦ୍ମନାଭ ବାବୁ ନିରୀହ ଉତ୍ତର ଦେଲେ—ଘରଟାଏ ତୋଳା ହୋଇଛି ପରା !

—ହେ ଭଗବାନ୍ ! ପ୍ରଥମେ କୁମୁଦିନୀ ରାଗରେ ଫାଟିବାକୁ ବସିଲେ । ତା’ପରେ ରୁଦ୍ଧକଣ୍ଠରେ ଭାଗ୍ୟକୁ ନିନ୍ଦା ଓ ପଦ୍ମନାଭବାବୁଙ୍କୁ ବୁଢ଼ାକାଳରେ ସଦ୍‌ବୁଦ୍ଧି ଦେବାକୁ ଭଗବାନଙ୍କୁ ପ୍ରାର୍ଥନା କରୁ କରୁ ପ୍ରସ୍ଥାନ କଲେ ।

ଅନତି ବିଳମ୍ବେ ସୁଷମା ଆସି ଆଶ୍ଚର୍ଯ୍ୟ ହେଲା—ବାପା, ଏ ବର୍ଷାଟାରେ ଏଠି ବସିଛ ? ଛୁଟିଟା ଆସୁନି ? (ଅଥଚ ସେ କୁମୁଦିନୀଙ୍କ ସ୍ୱଗତୋକ୍ତି ଶୁଣିଛି ନିଶ୍ଚୟ) !

ପଦ୍ମନାଭ ବାବୁ ଜାଣିଥିଲେ, ତାଙ୍କୁ ଘରେ ଆବିଷ୍କାର କଲାପରେ ଏମାନେ କେହି ଆଉ ଶାନ୍ତିରେ ରହିବାକୁ ଦେବେନି, ବା ବର୍ଷାଋତୁ ସମ୍ବନ୍ଧରେ ହେଉ କିମ୍ବା ତାଙ୍କ ଯୌବନ ସମ୍ବନ୍ଧରେ ହେଉ ଚିନ୍ତା କରିବାକୁ ଦେବେନି । ତେବେ ଅନେକଦିନ ପରେ ବାପଘରକୁ ଆସିଥିବା ତାଙ୍କର ଏଇ ସୁନ୍ଦରୀ ସୁଖୀ

ଝିଅ ଉପରେ ସେ କେବେହେଲେ ବିରକ୍ତ ହୋଇପାରନ୍ତି ନାହିଁ । ସୁଷମା ଆସି ପାଖ ବେତଚଉକିରେ ବସି ଅଭିମାନୀ ମିଠା ଗଳାରେ କହିଲା—ତମକୁ ତ କେବେଠୁ କୁହାଯାଉଥିଲା ଯେ ବାପା ତମେ ଏଥର ଛୁଟି ନେଇ ଘରେ ବସ । ଅଥଚ ତମେ ଅଫିସ୍ କାମକୁ ଛାଡ଼ିଲ ନାଇଁ, ସେଆଡ଼େ ଘର ତୋଳା, ହେଉ ଖରାପ—ବାରଆଡ଼ୁ ବାର ଚିନ୍ତାରେ ତମେ ଖାଲି ନିଜକୁ କଷ୍ଟ ଦେଉଛ । ତମ ଭଲ ପାଇଁ କୁହାଗଲେ ତ ତମେ ଶୁଣିବନି ।

ତାଙ୍କ ପରିବାରର ସମଷ୍ଟିରେ ଗୋଟାଏ ଦଳ ବା ଏକକ ଓ ପଦ୍ମନାଭ ବାବୁ ଆଉ ଏକ ଏକକ । ତାଙ୍କୁ ତାଙ୍କ ଭଲ ମନ୍ଦ ପାଇଁ କୁହାଯାଏ । ତେବେ ସୁଷମାର କଥାରେ କିଛି ଯାଏଆସେ ନାହିଁ । ପଦ୍ମନାଭବାବୁ ଜାଣନ୍ତି ସେ ନିଜ ପରିବାରକୁ ନେଇ ସମ୍ପୂର୍ଣ୍ଣ ନିମଗ୍ନ ଓ ସୁଖୀ ।

ପ୍ରସ୍ତାବ ଫେରନ୍ତି ସ୍କୁଲ୍‌ରୁ ଝିଅଙ୍କୁ ଅନାଇ ପଦ୍ମନାଭ ବାବୁ କହିଲେ —ମୀନୁଟା ଫେରିଲାନି କେମିତି ? ସ୍କୁଲ୍ ଛୁଟି ହେଲାଣି ନା କ'ଣ ।

—ଅଚ୍ଛା ବାପା, ଗୋଟାଏ କଥା କହିବି ? ତମେ କିନ୍ତୁ ପୁଣି ହଠାତ୍ ରାଗି ଉଠିବ ନାଇଁ, ଶୁଣିବ ମୋ କଥା ?

—କହ !

—ତମେ ସେ ଘରତୋଳା ଏଥର ବନ୍ଦକର । ଯଥେଷ୍ଟ ହେଲାଣି ସେ ଘର—

ଓ ପଦ୍ମନାଭ ବାବୁଙ୍କୁ ପ୍ରତିବାଦର ସୁଯୋଗ ନଦେଇ—ଅନ୍ତତଃ ଏଆଡ଼େ ନିଜଘର କଥା ତ ଟିକେ ଭାବ । ଋଣ ହେଲାଣି କାହିଁରେ କଣ । ତମେ ରିଟାୟାର୍ କଲାପରେ ଘର ଚଳିବ କେମିତି ଭାବ ଦେଖିଛ ? ବୀରେନ୍ ତ ବୃକଶଟିଏ ପାଇଲାନି ଏଯାଏଁ । ତମକୁ ବି ତ ବୁଢ଼ାଆଙ୍କୁ ଚିନ୍ତା ସାଙ୍ଗକୁ ପରିଶ୍ରମ । ଘରଟା ବି ଯଥେଷ୍ଟ ବଡ଼ ହେଲାଣି, ଆଉ ନୂଆ କରିବାର କିଛି ଅର୍ଥ ନାହିଁ—

ପଦ୍ମନାଭବାବୁ ଯଥେଷ୍ଟବେଳ ସହିଥିଲେ, ଏଥର ଇତସ୍ତତଃ ହେଲେ ଓ ସପ୍ରତିଭ ଗଳାରେ କହିଲେ—ଦେଖ୍ ମା, ତୁ ବାହାସାହା ହେଇ ତୋର ଘରସସାର କଲୁ । ଦିନ କେତେଟା ପାଇଁ ଆସିଛୁ, ତୋର ଆଉ ଏସବୁରେ ମୁଣ୍ଡ ଖେଳାଇବା···

କଥା ଶେଷ ନ ହେଉଣୁ ସୁଷମା ଉଠି ସାରିଥିଲା । ନାକପୁଡ଼ା ଫୁଲାଇ, ମୁହଁ ନାଲକରି ଢୁଲି ଯାଉ ଯାଉ ଥରିଲା ଗଳାରେ କହିଲା—ମୁଁ ଜାଣେ ତମେ ସେମିତି କହିବ । ମୁଁ ପର କନା—

ପଦ୍ମନାଭ ବାବୁ ଭଲଭାବେ ଜାଣନ୍ତି ସୁଷମା ବାହାହେଲାଦିନୁ ପର ହେଇ ଯାଇଥିବା କଥାଟା ଉଭୟପକ୍ଷରୁ ଆଦୃତ ସତ୍ୟ । ଆଜିକାଲି କଥାଟା ଉଚ୍ଚାରିତ ହେଲେ ସେ କୌଣସି ନୂତନ ଯନ୍ତ୍ରଣା ଅନୁଭବ କରନ୍ତି ନାହିଁ ।

ଅଟରେ ଭିତରୁ ଝିଅର ସୁଁ ସୁଁ କାନ୍ଦ ଶୁଭିଲା ଓ କୁମୁଦିନୀଙ୍କ ବିକ୍ଷୋଦ୍‌ଗାର—କାହିଁକି ତୁ ତାଙ୍କୁ କହିବାକୁ ଯାଉ ? କରନ୍ତୁ ସେ ତାଙ୍କ ମନ ଯାହା କରନ୍ତୁ । ନିଜଛଡ଼ା ଆଉ କାହା କଥା ଭାବିଛନ୍ତି ସେ ଜୀବନରେ ?···

ଉତ୍ତର ଦେବାକୁ ଅଭ୍ୟସ୍ତ ଗର୍ଜନ ଗୁଡ଼ା ତଣ୍ଟି ପାଖେ ଠେଲିହେଇ ଆସୁଚି । ହଠାତ୍ ତାଙ୍କୁ ଏକପ୍ରକାର ଅଳସୁଆ ଲାଗିଲା । ଥାଉ, ଏ ଅଣ୍ଡାଦିନଟାରେ ଗତାନୁଗତିକ ଗର୍ଜନ ତର୍ଜନ ଗୁଡ଼ାଏ କରି ଲାଭ ନାହିଁ । ବରଂ ଘେରାଏ ବୁଲି ଆସିଲେ ଯାଏ ।

ପାର୍କଟା ଦୈର୍ଘ୍ୟରେ ଗଳାଉ ଗଳାଉ ପଦ୍ମନାଭବାବୁ ଭାବିଲେ—ତମେମାନେ କେହି ମୋତେ ବୁଝିନାହଁ । ସମ୍ବେଦନା ଦେଖାଇନାହଁ । ଆଉ କେତେଦିନ ମୁଁ ତମ ପାଇଁ ହିଁ ବଞ୍ଚିବ ? ଓ କହିଲେ—ଆରେ ମୀନୁ, ଗ୍ଣ' ଟିକେ କରନ୍ତୁ ନାଇଁ ?

—ମୀନୁ ଫେରିନି ସ୍କୁଲରୁ । ଆଜି ଶନି ନାହିଁ ବୋଲି କେତେଥର କୁହାଯିବ ? ଆସିବ କୁଆଡ଼ୁ ଶୁଣେ ? ଠଙ୍କା···ଇତ୍ୟାଦି ଇତ୍ୟାଦି ।

ପଦ୍ମନାଭ ବାବୁ ଏଥର ଅଭ୍ୟସ୍ତ ଗର୍ଜନ କଲେ—ଓଃ ! ଖାଲି ଏଇଟା ନାହିଁ, ସେଇଟା ନାହିଁ, ଖାଲି ଦିଅ ଦିଅ ଦିଅ । ସମସ୍ତଙ୍କ ପାଇଁ ଖୋରାକ ଯୋଗାଇ ଯୋଗାଇ ଜୀବନଟା ଗଲା ।

—ସାନ ପରିବାର କରିବା ଉଚିତ ଥିଲା । ଘରେନ୍ ବାପ କଥାଟକୁ ଆଉଜି ପଲ୍ଲକରି ସିଗ୍ରେଟ୍ ଖାଉ ଖାଉ କେତେବେଳେ ଧୂଆଁ ମଧ୍ୟଦେଇ ଗମ୍ଭୀର ଟିପ୍ପଣୀ କାଟିଲା ।

ପଦ୍ମନାଭ ବାବୁ ଚଟି ହଳକ ଖୋଜୁ ଖୋଜୁ ଦୀର୍ଘ ଗୁପି ଦୀର୍ଘଶ୍ୱାସ ଛାଡ଼ିଲେ । ଘରେନ୍‌ଟାକୁ ସେ ଆଜକାଲି କିଛି କହନ୍ତି ନାହିଁ । ତା'ର କାହିଁକି କେଜାଣି ବଦ୍ଧମୂଳ ଧାରଣାଟାଏ ହୋଇଯାଇଛି ଯେ ସେ ଖରାପ ଛାତ୍ର ହେବା ମୂଳରେ ତଥା ସେ ଚାକିରି ନ ପାଇବା ମୂଳରେ (ସର୍ବୋପରି ତା ଜୀବନଟା ବ୍ୟର୍ଥ ହେବା ମୂଳରେ) ବାପା ଦାୟୀ । ପଦ୍ମନାଭ ବାବୁ ତାଙ୍କର ଏ ଧାରଣାକୁ ବଦଳାଇବାକୁ ଚେଷ୍ଟା କରିନାହାନ୍ତି, ବିଶ୍ଳେଷଣ କରିବାକୁ ବି ନୁହେଁ । କେବଳ ସବୁଦିନ ଠାକୁରଙ୍କୁ ଡାକନ୍ତି—ଘରେନ୍‌କୁ ଚାକିରିଟାଏ ମିଳିଯାଉ ।

କାନ୍ଥ କଣ୍ଟାରୁ ଛତାଟା ନେଲାବେଳେ ଟଙ୍ଗାଯାଇଥିବା ବନ୍ଧନ—ଧୂଳିତଳର ଫଟୋଟି ଉପରେ ନଜର ପଡ଼ିଗଲା । ବଧୂ କୁମୁଦିନୀ ଓଢ଼ଣା ତଳୁ ଚାହିଁଚନ୍ତି । କେଉଁ କୋଣରୁ ଫଟୋଟା ଉଠିଚି ଯେ ଧାରି ନାକପୁଡ଼ାର ଗୁଣାଟାରୁ ଖିଚି ଆଲୋକରେଖା ବାହାରିଲାପରି ଦିଶୁଚି । ବରୁ ବାହାରି ଯାଉ ଯାଉ ତଥାପି ସ୍ୱଗତୋକ୍ତି କରୁଥିବା କୁମୁଦିନୀଙ୍କ ଉପରେ ଦୃଷ୍ଟିଟା ପହଁରେଇ ଦେଇଗଲେ । ଧାରିନାକର ପୁଡ଼ା ଦ'ଟା ସାମାନ୍ୟ ଟେକିହେବା ଅବସ୍ଥାରେ ପ୍ରାୟତଃ ରହୁଥିବାରୁ ନାକଟା ଭ୍ରାମ୍ୟ ଭ୍ରୂକଟାକ୍ଷରୁ ରୂପ ନେଇଚି ଓ ପାଟି କଡ଼ିଯାଏ ଖୋଲିହୋଇ ଯାଇଥିବା କେନାଲ୍‌ଟାର ମଝି ଗହ୍ୱରରେ, ପୁଡ଼ା ଉପରେ ଗୁଣାଟା ଏବେ ହଳଦିଆ ପଡ଼ିଗଲାଣି ।

—କୁଆଡ଼େ ଚାଲିଲ ଏ ବର୍ଷାଟାରେ ?

—ଯାଏ ଘରଟା ଆଡ଼େ ଚକେ ବୁଲିଆସେ । ପଦ୍ମନାଭ ବାବୁଙ୍କ ନିର୍ଲିପ୍ତ ଉତ୍ତର ।

ସିଧାସିଧା ବାହାର ଆସୁଥିବା ବେଳେ ଭିତରୁ ଶୁଭୁଥିଲା—ଏଡ଼େ ସଉକ୍ ଘରଟାରେ ଯେ ଏ ବର୍ଷାରେ ଡନ୍ତୁବୁଡ଼ ଯିବ ? ମୁଣ୍ଡକୁ ସତରେ ଭୂତ ଚଢ଼ିଛି ନା କଣ ?

ରାସ୍ତାରେ ବର୍ଷାପାଣି ଓ ରାସ୍ତାକଡ଼ ନାଲି ରୁଗୁଡ ମାଟିରେ ଗୋଳାପାଣିର ଅନେକ ମୋଟା ସରୁ ସ୍ରୋତ । ମୁଣ୍ଡ ଉପରେ ଛତା ଟେକି ପଦ୍ମନାଭ ବାବୁ ବର୍ଷାକୁ ବେଖାତିର୍ କରି ଚାଲୁଥିଲେ ।

ଘରେ ଥିଲେ ସବୁଚିନ୍ତା । ଦିନାକେତେ ପରେ ପେନସ’ ଟଙ୍କାରେ ଚଳିବେ କେମିତି । ପତ୍ନୀ ପୁଣି ଏବେ ନୂଆ ଲଗେଇଛନ୍ତି—ମିନୁଟାର ମ୍ୟାଟ୍ରିକ୍ ହେଲା, ବାହାଘରର ଠିକଣା କରିବାକୁ ହେବ । ସୁରେନ୍ ଏଯାକେ ଚାକିରି ପାଇଲାନି । ସୁରେନ୍‌ର ବି ମଣିଷ ହେବାର ଲକ୍ଷଣ ଦିଶୁନି ! (ପରୀକ୍ଷା ହଲ୍‌ରେ ପରୀକ୍ଷକଙ୍କୁ ବନ୍ଧମୂର୍ତ୍ତି ଦେଖାଇ ଖୋଲଖୋଲି ବହିରୁ ଉତାରିଦେବା ଆଦି ବୀରତ୍ୱର କଥା ସେ ଗର୍ବରେ ଗପେ ଓ ବଡ଼ଭାଇ ବୀରେନ୍ ତା ପିଠି ଥାପୁଡ଼ାଇ ସାବାସି ଦିଏ) । ବ୍ଲଡ଼୍‌ପ୍ରେସର୍, ଡାଏବେଟିସ୍, ସର୍ବୋପରି ଋଣଗୁଡ଼ାଏ ।

ସ୍କୁଲ୍ ଫେରନ୍ତା ଟୋକାଗୁଡ଼ାଏ ଘରକୁ ନ ଯାଇ ରାସ୍ତାକଡ଼ ନାଳର ଗୋଳା ପାଣିରେ ଖେଳରେ ମାତିଛନ୍ତି । (କାହିଁଗଲା ଆହା ବାଲ୍ୟକାଳ !) ବର୍ଷା କମିଛି । ଆକାଶ ନଇଁ ଆସିଛି ଅଳ୍ପ ଉଚ୍ଚକୁ ଓ ସଦ୍ୟସ୍ନାତ ପୃଥିବୀ ପରିଚ୍ଛନ୍ନ ଓ ପ୍ରଫୁଲ୍ଲ ।

ଘରୁ ବେଶ୍ କିଛି ଦୂର ଚାଲିଆସିଥିଲେ ସେ । ଅଳ୍ପଦୂରରେ ଦିଶୁଥିବା ଟାପୁ କଡ଼ଦେଇ ବାଁ ହାତି ଗଲେ କିଛି ଦୂରରୁ ସବୁଜ ଗଛଗଛାଳି ଭେଦି ଯେଉଁ ପଞ୍ଚାଏ ପାନବରଜ ଘର ଦେଖାଯାଏ, ତା’ ଭିତରେ ସର୍ବୋଚ୍ଚ ଉଜ୍ଜ୍ୱଳତମ ହୋଇ ଗଢ଼ି ଉଠୁଥିବା ଘରଟି ପଦ୍ମନାଭ ବାବୁଙ୍କର । ଅନେକ ବେଳହେଲା ଟୋକିଟି ଛୁଆକୁ ଘରେ ଛାଡ଼ିଦେଇ ଯାଇଥିବା ମା’ ପରି ସେ ଉଦ୍‌ବିଗ୍ନ ପାଦ ଚାଳିଲେ ।

ପାହାଡ଼ ମୋଡ଼ ପାଖେ ବୁଲିଲାବେଳକୁ ବର୍ଷା ପୁଣି ଟୁପ୍‌ଟାପ୍ ପକେଇଲା । ନିଶ୍ଚିନ୍ତିଆ ରାସ୍ତାକଡ଼କୁ ଶାନ୍ତ ସବୁଜ ଗଛଗୁଡ଼ାଏ ପଚ ସଜେଇ ଠିଆ ହୋଇଛନ୍ତି । ଗଛଟିଏ ତଳେ ତରୁଣ ତରୁଣୀ ଦୁଇଜଣ, ହାତରେ ବହି, ଅନ୍ତରଙ୍ଗ

ବସ୍ତୁ । ଦୁହେଁ ଚମକଲା ପରି ବୁଲି ଗୁହିଁଲେ, ପଦ୍ମନାଭ ବାବୁ ବି ଥମକି ଠିଆ ହେଲେ—ଏ ତ ରମା, ବ୍ରଜବାବୁଙ୍କ ଝିଅ, ଆଉ ପୁଅଟା ବି ଚିହ୍ନା ମନେ ହେଉଛି । ଏ ଦି'ଟା କଲେଜ ଛାଡ଼ି ଏ ଅଜାଗାରେ ଏ ଅବେଳାରେ ? ଗୁଲୁ ଗୁଲୁ ପଦ୍ମନାଭ ବାବୁ ନଠେଇ ନଠେଇ ଦୁଇଜଣଙ୍କୁ ଦେଖୁଥିଲେ ଓ ସେ ଦୁହେଁ ତାଙ୍କୁ ପଛକରି ନିରବ ନିଷ୍ଫଳ ରହି ଯାଇଥିଲେ ।

ଅନ୍ୟବେଳ ଭଳି ରାଗ, ଧିକ୍କାର ନ ଆସି ତାଙ୍କୁ ଅଦ୍ଭୁତଭାବେ ନିରାସକ୍ତ ଓ ଉଦାସ ଲାଗିଲା । ଟିକେ ଆମୋଦିତ ବି ହେଲେ ସେ । ଆଜିକାଲି ସମସ୍ତ ବଦଳିଛି । ତା ଛଡ଼ା—ବାଲ୍ୟକାଳ ରହିଛି, ଯୌବନ ରହିଛି, ଜୀବନ ରହିଛି, ରହିଥିବ ଚିରକାଳ କୋଟି କୋଟି ଜନ ଜରାଗ୍ରସ୍ତ ହୋଇ ମରିଗଲେ ବି ।

ପଦ୍ମନାଭବାବୁଙ୍କୁ ଯୌବନକାଳରେ ସିନେମା ଦେଖିବାକୁ ଭଲ ଲାଗୁଥିଲା, ପ୍ରେମ କରିବାକୁ ଭଲ ଲାଗୁଥିଲା, ସୁନ୍ଦର ପୋଷାକ ପିନ୍ଧିବାକୁ ଓ ଭଲ ଖାଇବାକୁ ବି । ଧୀରେ ଧୀରେ ସଉକ୍‌ମାନଙ୍କ ତଣ୍ଟି ଚିପି ମାରିବାକୁ ହେଲା—ପିଲାମାନଙ୍କୁ ମଣିଷ କରିବାକୁ ହେବ, ଅନ୍ୟ କେତେଜଣଙ୍କ ପ୍ରତି ବି ଦାୟିତ୍ୱ ଅଛି । ବର୍ଷଗୁଡ଼ିକୁ ଆହୁତି ଦେବାକୁ ହେଲା । କାହିଁକି ସେ ପ୍ରାଣାନ୍ତକ ଲାଗିଥିଲେ ପିଲାମାନଙ୍କୁ ମଣିଷ କରିବାକୁ ? ନିଜ ଜୀବନକୁ ନଷ୍ଟକରି ଏମିତି ଅନିଶ୍ଚିତତା ପଛରେ ଧାଇଁଥିଲେ କାହିଁକି ? କର୍ତ୍ତବ୍ୟ ! ପ୍ରକୃତିର ନିୟମ । କେବଳ ନିରାସକ୍ତ କର୍ତ୍ତବ୍ୟ ପାଳନ କହିଲେ ଅବଶ୍ୟ ଭୁଲ୍ ହେବ, ନିଜ ସନ୍ତାନମାନଙ୍କୁ ସେ ପ୍ରାଣମୂର୍ଚ୍ଛା ଭଲ ପାଆନ୍ତି । ତେଣୁ ସେ ସ୍ୱପ୍ନ ବି ଦେଖିଥିଲେ (ନା ସ୍ୱପ୍ନ ଦେଖିବାର ଖୋରାକ ପାଇଥିଲେ ବୋଲି ପିଲାଙ୍କୁ ଭଲପାଇଥିଲେ ?) —ତାଙ୍କ ପିଲାମାନେ ମଣିଷ ହେବେ, ତାଙ୍କଠୁ ଆହୁରି ଭଲ ଓ ଉଜ୍ଜ୍ୱଳ ମଣିଷ । ତାଙ୍କ ସ୍ମୃତିକୁ ଆହୁରି ସ୍ପଷ୍ଟଭାବେ ପୃଥିବୀରେ ଜାହିର୍ କରିବେ ଓ ତାଙ୍କ ପରେ ତାଙ୍କୁ ବଞ୍ଚେଇ ରଖିବେ ।

ମଣିଷ କେବେ ତିଆରି କରିହେଲାଣି ? ପ୍ରତି ମଣିଷ ତ ଗୋଟାଏ ଲେଖାଁ ଅଲଗା ସମ୍ପୂର୍ଣ୍ଣ ମଣିଷ ନିଜ ଗୋଡ଼ରେ । ଅଥଚ କେମିତି ସେ ଭାବିନେଲେ ଯେ ତାଙ୍କ ପୁଅଝିଅ ତାଙ୍କରି ସୃଷ୍ଟି । ନିଜ ଅଭିଜ୍ଞତାରୁ, ଜୀବନର ଖରାପ ଭଲ ଜିନିଷ ସବୁ ଯୋଗ ବିଯୋଗ କରି ସେ ସୁନ୍ଦର, ସମ୍ପୂର୍ଣ୍ଣ । ଉଜ୍ଜ୍ୱଳ ମଣିଷ କେତୋଟି ଗଢ଼ିବେ—ନିଜ ଜୀବନର ସମ୍ପୂର୍ଣ୍ଣ ସୁଧ ସେ ପାଇପାରିବେ ନିଜ ସୃଷ୍ଟି ଭିତରେ ।

('ଖାଲି ଶାସନ, ଶାସନ କରି କରି ମୋତେ ତମେ ଅଥର୍ବ କରି ଦେଇଚ, ମୋ ସାମର୍ଥ୍ୟ ଯଥେଷ୍ଟ ବେଶି ଓଜନ ମୋ ଉପରେ ମାଡ଼ିଦେଇ ମୋତେ ପଙ୍ଗୁ କରିଦେଇଚ'—ବୀରେନ୍‌ର ଉକ୍ତି । 'ସୁଷମା ପାଠ ପଢ଼ି କ'ଣଟା କରିବ, ପରିବାର ତ ହେବ ଯାହା ହେଲେ ବି—ସୁଷମାର ବୋଉ । 'ବୋଉଲୋ ! ପାଠ ପଢ଼ିଥିଲି ବୋଲି ସିନା ସେ ସୋସାଇଟିରେ ଚଳିପାରିଲି'—ସୁଷମା । ଆଉ ବିନାକା ଗୀତମାଳା ଗୁଣୁ ଗୁଣୁ ସୁରେନ୍ ରେଡ଼ିଓକୁ ସଲାମ ବଜାଏ—'ଗୀତେ ରହିବୋ ମେରେ ଗୁରୁ ।') ଏହିପରି ଭାବରେ ଭୁଲ୍‌ଭାଲ୍ ଗଣନାଗୁଡ଼ିଏ କରି ନିଜ ଜୀବନଟାକୁ ସମ୍ପୂର୍ଣ୍ଣ ଭାବେ ଖର୍ଚ୍ଚ କରିଦେଇ ସେ ଦେବାଳିଆ ହୋଇଗଲେ ।

ଦୂରରୁ ନିଜ ଘରର କିଛି କିଛି ଅଂଶ ଗଛଗହଳରୁ ଦେଖି ପଦ୍ମନାଭ ବାବୁ ଉଚକିତ ହେଲେ । ତିନିମହଲା ଘର—ପ୍ରାସାଦ ପରି ଦିଶିବ ପୂରା ତିଆରି ଓ ରଙ୍ଗଦିଆ ସରିଲେ । ଟଙ୍କା ସରୁ, ପରବାୟ ନାହିଁ । ଜୀବନଟା ସାରା ତ ପୁଣି ଭଗ୍ନ ହେଲା ଅକାରଣେ । ଆଉ କିଛି ସରୁ, ଗୋଟାଏ କିଛି ତିଆରି ହେବ ତ । ତାଙ୍କର ତିଆରି ଘର, ଇଟା ସିମେଣ୍ଟ ତିଆରି, ରହିଥିବ ପୃଥିବୀରେ ଦୃଢ଼ ହୋଇ । ଝଡ଼ ବତାସ ତା'ର କିଛି କ୍ଷତି କରିପାରିବେନି, ଜରାମୃତ୍ୟୁ ବି ନୁହେଁ । ତୋଳି ତୋଳି, ଘର ତୋଳି—ସର୍ବସ୍ୱାନ୍ତ ହୋଇ ଘର ତୋଳି ସେ ରହିବା ପାଇଁ ବୟସ ଆସୁଚି, ସାଙ୍ଗରେ ନେଇଯିବ ଗଲାବେଳେ । ମନକୁ ମନ ହସିଲେ ପଦ୍ମନାଭ ବାବୁ । ଆରେ ମଲାବେଳେ ପୃଥିବୀରେ ଛାଡ଼ିଯିବ ବୋଲି ତ ଘର ତୋଳୁଚି । ଆଉ କ'ଣ ତମେମାନେ ରହିଁବ ଖାଲି ଯେମିତି ମରିଯିବ—ହଠାତ୍ ନିଶ୍ଚିହ୍ନ ହୋଇଯିବ ଚୂରମାର ? ପଦ୍ମନାଭ ବାବୁ ମନେ ମନେ ଦୃଶ୍ୟ ଆଙ୍କିଲେ—ବହୁଦୂରୁ ଗଡ଼ ଗଡ଼ ଆସୁଥିଲା ସୂତା ଗୁଳିଟିଏ, ହଠାତ୍ ସରିଯିବ, ମିଳେଇଯିବ । ପାଖାପାଖି ଗଡ଼ୁଥିବା ସୂତାମାନେ ହଠାତ୍ ପାର୍ଶ୍ୱବର୍ତ୍ତୀ ଫାଙ୍କଟିକୁ ଲକ୍ଷ୍ୟ କରିବେ, ତା'ପରେ ପୁଣି ପରସ୍ପର ପାଖକୁ ପାଖ ଲାଗିଆସିବେ, ଫାଙ୍କ ଯୋଡ଼ିଯିବ । ଜୀବନ ଗଢ଼ିଥିବ ଯେମିତି, ମୋର କିଛି ଚିହ୍ନ ରହିବ ନାହିଁ । ମୋ ପୁଅ ଝିଅ ? ସେମାନେ କିଏ ମୋର ? ହେଇ ଆଜଠୁଁ ତ ସେମାନେ ଦେହ ହାତ ଧୋଇ ଝାଡ଼ିଝୁଡ଼ି ଦୂରରେ ଠିଆ ହେଲେଣି । ମୁଁ ବୋଲି କ'ଣ କେହି ନଥିଲି ଏ ଦୁନିଆଁରେ ? ପାଣି ଧାରଟିଏ ଗଡ଼ିଯାଇଥିଲି କେବଳ ? ମୁଁ ଅଛି ମୁଁ । ଏତେଦିନ ଧରି ବଞ୍ଚିଛି ସକ୍ଷମ ଭାବେ । ଘର ତୋଳି ପାରୁଛି । ଏଇ ତ ମୋର ପ୍ରମାଣ ।

ଘର ପାଖେଇ ଆସିଲାବେଳକୁ ବର୍ଷା ବେଗ ବଢ଼ାଇଲା । କାମ କରୁଥିବା କୁଲିମାନେ ଭିତରେ ଆଶ୍ରୟ ନେଇଛନ୍ତି । ଅଧା ତିଆରି ଘରଟା ନିତାନ୍ତ ସାଧାରଣ ମାଟିଇଟାର ସୂଚନା ଦେଉଛି । ତଥାପି ବିରାଟ କିଛି ଗୋଟାଏ—ଓ ଏହାର ଗଠନ ମୂଳରେ ସେ ନିଜେ—ମନରେ ଦମ୍ଭ ଆସୁଛି, ବିଶ୍ୱାସ ଆସୁଛି । ଏଇ ତ ବର୍ଷା ଗୁରଆଡ଼କୁ ପାଉଁଶିଆ ଏକାକାର କରିଥିଲେ ବି ତା' ଭିତରେ ତାଙ୍କ ଘରଟା ତାର ସୁଦୃଢ଼ କାୟା ବିସ୍ତାର କରିଛି ।

ବର୍ଷା ବିଷୟରେ ହଠାତ୍ ଖୁବ୍ ସଚେତନ ହୋଇ ପଦ୍ମନାଭ ବାବୁ ଗୋଟାଏ ବନ୍ଦ ଘରର ବାରଣ୍ଡା ଉପରକୁ ଉଠିଗଲେ । ସାଇକେଲ୍ ଚଢ଼ାଳୀ ଜଣେ ବି ବର୍ଷାରୁ ଆଶ୍ରୟ ନେବାପାଇଁ ସେଇ ବାରଣ୍ଡାକୁ ଉଠିଲେ ଓ—ଆରେ ପଦ୍ମନାଭ ବାବୁ ଯେ ! ଇଆଡ଼େ କୁଆଡ଼େ ?

—ଏଇ ମୋ ଘରଆଡ଼େ ଟିକେ ଦେଖିବାକୁ ବୁଲିଆସିଥିଲି । ବର୍ଷାଟା—

—ଓ ! ଘରକାମ ଚାଲିଛି ପରା । ଯା ହେଉ, ବିରାଟ ଘରଟାଏ ତୋଳୁଛନ୍ତି, ଏ ଅଞ୍ଚଳଟାରେ ପୂର୍ବ ବାଣ ଦେଇପକାଉଛି ।

ପଦ୍ମନାଭ ବାବୁ ତୃପ୍ତିରେ ବାଲଧାରା ମଧ୍ୟ ଦେଇ ନିଜ ଦୃଷ୍ଟିକୁ ସ୍ୱଚ୍ଛିଲେ ।

—ଆପଣଙ୍କ ରଠାପ୍ଲାର୍ କରିବା ଦିନ ତ ହୋଇ ଆସିବଣି ନା କ'ଣ । ଆଉ ପୁଅ କ'ଣ ଚାକିରି ପାଇଲା ?

ଅବିରାମ ବର୍ଷାଜନିତ ଶୀତରେ ଆଉଜେଇ ପଦ୍ମନାଭ ବାବୁ ପ୍ରଶ୍ନଟା ଏଡ଼ିଗଲେ ଓ ଘରଟା ଆଡ଼ୁ ଦୃଷ୍ଟି ରଖି ପକେଟରୁ ସିଗାରେଟ୍ କାଢ଼ିଲେ । ବନ୍ଧୁଙ୍କୁ ଯାଚିଲେ ଓ ବନ୍ଧୁ ମନାକରି ମୁହିଁ ଫେରାଇଲେ—ସାନପୁଅ କଲେଜରେ ପଢ଼ିଲାଣି ପରା ? ଭଲ ପଢ଼ୁଛି ?

ପଦ୍ମନାଭ ବାବୁ ସିଗାରେଟ୍ ଧରାଇବାରେ ମନଧ୍ୟାନ ଦେଲେ (ଓଦା ଦିଆସିଲି ଧରୁନି) ଓ ସଫଳ ହେଲାପରେ ପୋଡ଼ା କାଠିଟା ଫିଙ୍ଗୁ ଫିଙ୍ଗୁ ସିଗାରେଟ୍ଟା ଦମେ ଟାଣି କହିଲେ—ଘରଟା ପୂରା ତିଆରି ସରିଯାଉ ଦେଖିବେ । ଘର ସାମ୍ନାଟା, ପୋର୍ଟିକୋ ପାଖ କେମିତି ଡେକୋରେଟ୍ କରାଯିବ, କେମିତି ରଙ୍ଗ ଦିଆଯିବ, ତା'ର ସବୁ ପ୍ଲାନ୍ ମୁଁ ନିଜେ କରିଛି ।

# ଗୋଟିଏ ରଜାଙ୍କ ଗପ

ଚା'ଶେଷ କରି ବିକ୍ରମବାବୁ କହିଲେ, "ଏଥର ଖବରକାଗଜଟା ରଖନ୍ତୁ। ଜମାନ୍ତୁ କିଛି ଗପ। ନହେଲେ ସଞ୍ଜ ବେଳଟା ଜମା କଟିବନି।"

ଶିବପ୍ରସାଦ ପେପର୍ ଥୋଇ ଥଣ୍ଡା ପଡ଼ିଆସୁଥିବା ଚା' ଶୀଘ୍ର ଶୀଘ୍ର ଶେଷକଲେ। ମଫିରୁ କହିଲେ, "ଏ ତିନିଦିନ ପୁରୁଣା ଖବର କାଗଜକୁ ବି ଏଠି ଡିଟେକ୍ଟିଭ୍ ବହି ପରି ପଢ଼ିବାକୁ ପଡ଼େ। କଣ ଆଉ କରିବାକୁ ଅଛି କହ ନାହାନ୍ତି ଏ ଜଙ୍ଗଲଟାରେ ?"

ପୁରୁଣାକାଳିଆ ଡାକବଙ୍ଗଳାଟିଏ, ବାରଣ୍ଡାରେ ଦୁହେଁ ବସିଥିଲେ। ବିକ୍ରମ ବାବୁ ନୂଆ ତହସିଲ୍ଦାର୍ ହୋଇ ଆସିଛନ୍ତି ଏବଂ ଶିବପ୍ରସାଦ ଗତ ତିନିବର୍ଷ ହେଲା ଏଇଠି ଅଛନ୍ତି ଜଙ୍ଗଲ ବିଭାଗ ଏ.ସି.ଏଫ୍ ଭାବରେ। ଆଗରେ ଅସଜଡ଼ା ବଗିଚା ଓ ତା ଆଗକୁ ସରୁ ପକ୍କା ରାସ୍ତାଟିଏ, କିଛି ବର୍ଷ ଆଗରୁ ରାସ୍ତାଟି ମନ୍ତ୍ରୀ ଆସିବେ ବୋଲି ସହରର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ତିଆରି ହୋଇଥିଲା। ଡାକବଙ୍ଗଳା ବି ସେତିକିବେଳେ ମରାମତି ହୋଇଥିଲା ଓ ନୂଆ ପର୍ଦ୍ଦା ଇତ୍ୟାଦି ଲାଗିଥିଲା।

ଲକ୍ଷ୍ମଣପୁର ଅତି ନିଭୃତ ମଫସଲି ସହରଟିଏ। ପୂର୍ବେ ଛତିଶଗଡ଼ର ଛୋଟିଆ ଆଦିବାସୀ ଅଧ୍ୟୁଷିତ ରାଜ୍ୟଟିଏ ଥିଲା। ଏବେ ତହସିଲ ଅଫିସ୍ ହୋଇଛି। ବାସ୍ତବରେ ମଫସଲ ହିଁ କୁହାଯିବ, ମଝି ମଝିରେ ସହରର ହାଉଆ ଚମକାଏ ବାଜ ମେରିଯାଏ ଯାହା। ସହର ମଝିରାସ୍ତାରେ ଆଦିବାସୀ ଝିଅ ଲମ୍ବାବେଣୀରେ ନାଲି, ନେଳି, [illegible] ଛୋଟିଆ [illegible] ଉପରେ [illegible]

ଶାଢ଼ୀ ପିନ୍ଧି ଦଳ ଦଳ ଗୀତ ଗାଇ ଗାଇ ଯାଆନ୍ତି । ଲମ୍ବ ବେଣୀ ରଙ୍ଗଣୀଫୁଲ ଗୁନ୍ଥା ହେଲପରି ବାହୁ ବାହୁରେ ଅଣ୍ଟା କାନ୍ଧ ଛନ୍ଦାଛନ୍ଦି । ହାଟ ଫେରନ୍ତି ଲୋକେ ପକ୍କା ରାସ୍ତା ଉପରେ ବି ସେତେହେଲେ ଅଭ୍ୟାସ ନ ଥିଲା ଧାଡ଼ିବାନ୍ଧି ଚାଲନ୍ତି ।

ବିକ୍ରମବାବୁଙ୍କ ପାଇଁ ନିର୍ଦ୍ଦିଷ୍ଟ କ୍ୱାର୍ଟର୍ସ ମରାମତି ଚାଲିଥିବାରୁ ସେ ଡାକ-ବଙ୍ଗଳାରେ ରହିଛନ୍ତି ମାସେ ହେଇଗଲାଣି । ଏ ଭିତରେ ସେ ଲଛମନପୁରର ସାମାଜିକ ଜୀବନ ସହିତ ପରିଚିତ ହେଇଗଲେଣି । ଦେଖିଲେଣି ତାଙ୍କ ପରି ପରିବାର ନ ଆଣି ଏକୁଟିଆ ରହୁଥିବା ଚାକିରିଆ କେଇଜଣ କେମିତି ଠିକ୍ ତାଙ୍କରି ପରି ଧରାଧରି କୁହାତବାଲା ସତ୍ତ୍ୱେ ଏଠାକୁ ପୋଷ୍ଟିଂ କ୍ୟାନ୍‌ସଲ କରାଇ ନ ପାରି ଅଗତ୍ୟା ଆସିଛନ୍ତି ଓ ଚିହ୍ନା ପରିଚୟଙ୍କ ମାଧ୍ୟମରେ ବଦଳି ପାଇଁ ଚେଷ୍ଟା କରୁକରୁ ଆପାତତଃ ଭାଗ୍ୟକୁ ଆଦରି ରହିଛନ୍ତି । ସନ୍ଧ୍ୟାବେଳେ କେତେଜଣ କୋଠରିକିଆ କ୍ଲବ୍‌ଘରଟିରେ ବସି ତାସ୍ ଖେଳନ୍ତି । ରାତି ନଅଟା, ଦଶଟା ଯାଏ ଘରଟି ହସଖୁସିରେ କମ୍ପୁଥାଏ । ମଝି ମଝିରେ ଯାହା ସମସ୍ତେ ହଠାତ୍ ଗମ୍ଭୀର ହେଇ ହାତର ତାସ୍ ମୁଠାରେ ଧ୍ୟାନ ଦେଲାବେଳକୁ ପାଖଟେବୁଲରୁ ପେଟ୍ରୋ-ମାକ୍ସ ଲାଇଟ୍‌ଟିର ସାଁ ସାଁ ଓ ଦୂରରୁ ବିଲୁଆ ବୋବାଳି ଶୁଭେ । ସବୁ ସରକାରୀ ଘରେ ବିଜୁଳିବତି ଓ ପଙ୍ଖା ଲାଗିଛି, ତେବେ ଗୋଟିଏ ଡିଜେଲ୍ ଜେନେରେ-ଟରରୁ ବିଜୁଳୀ ସପ୍ଲାଇ କେବଳ ସନ୍ଧ୍ୟାରେ ତିନିଘଣ୍ଟା ପାଇଁ ଆସେ । ରାସ୍ତାର ବତିଖୁଣ୍ଟମାନ ଜଳି ଉଠେ ମିଞ୍ଜିମିଞ୍ଜି ଲଣ୍ଠନ ପରି । ଡାକବଙ୍ଗଳା ତଥା କ୍ଲବର ଶହେ ପାୱାର୍ ବଲ୍‌ବ୍ ଜଳେ ପନ୍ଦର ପରି, ପଙ୍ଖା ଘୂରେ ସତେକି ଦମକାଏ ପବନରେ ଆପେ ଆପେ ଥରେ ଦି'ଥର ଘୂରି ଆସିଲା ।

ନିକଟତମ ବନ୍ଦର ସହର ଛତିଶ ମାଇଲ ଦୂର, କଚା ରାସ୍ତା, ବାଟରେ ଦୁଇଟା ଅଗଭୀର ନାଳ ପଡ଼େ । ସେଥିରେ ପୋଲ ନାହିଁ, ଗୋଟି ମୋରମ୍ ବିଛାଯାଇ ଶୀତ ଆରମ୍ଭ ବେଳକୁ ରାସ୍ତା ତିଆରି ହୁଏ ତହିଁରେ । ଗ୍ରୀଷ୍ମ ଶେଷରେ ପ୍ରଥମ ଅସରା ବର୍ଷା ସବୁ ଧୋଇନିଏ । ତା'ପରେ ସହରକୁ ଯାତାୟାତ ବନ୍ଦ ହୋଇଯାଏ ପ୍ରାୟ ।

ଶିବପ୍ରସାଦ ବଖାଣୁଥିଲେ ତାଙ୍କର ଗତବର୍ଷର ଗୋଟିଏ ଶିକାର ଅନୁଭୂତି । ଏଠି କିଛିଦିନ ରହିଗଲା ପରେ ପ୍ରାୟ ସବୁ ମଧ୍ୟବିତ୍ତ ଚାକିରିଆ ବନ୍ଧୁକଟିଏ କିଣନ୍ତି ଓ ଶିକାରରେ ମନ ବଳାନ୍ତି । ବିକ୍ରମବାବୁଙ୍କ ପରି ନୂଆ ହେଇ

ଆସିଥିବା ଅଳ୍ପ ବୟସ୍କ ଲୋକ ପ୍ରଥମେ ଶିକାର ଅଭିଜ୍ଞତା ମାନ ଶୁଣି ଉତ୍ସାହ ପାଆନ୍ତି ନୂଆ ପଉଳ୍ଟିଏ ପାକାର କରିବାକୁ । ଶିବପ୍ରସାଦ ପ୍ରତିଥର ଅଲଗା ସ୍ୱାଦର ଶିକାର କାହାଣୀ ଶୁଣାନ୍ତି । ଏଥରର କାହାଣୀ ଥାଏ, ଥରେ ରାତିବେଳ, ଲୋଡେଡ୍ ବନ୍ଧୁକ ନେଇ ସେ ଗୋଟିଏ ପାଖ ପାହାଡ଼ି ରାସ୍ତାରେ ଯାଉଥାନ୍ତି ଜିପ୍‌ରେ । ହଠାତ୍ ଖଣ୍ଡେ ଆଗରେ ସ୍ପଷ୍ଟ ଜିପ୍ ଆଲୁଅରେ ପାହାଡ଼ ଗହଣି ପାଖରୁ ବାଘଟିଏ ରାସ୍ତା ଉପରକୁ ଆସି ଧୀର ଚାଲିରେ ରାସ୍ତା ଅତିକ୍ରମ କରି ପାହାଡ଼ ପାଖ ଜଙ୍ଗଲ ଆଡ଼କୁ ଗଲା । ଶିବପ୍ରସାଦ ଲୋଭ ସମ୍ଭାଳି ପାରିଲେ ନାହିଁ । ଡ୍ରାଇଭରକୁ ଗାଡ଼ି ରୋକିବାକୁ କହି ବାଘଟି ଠିକ୍ ଜଙ୍ଗଲ ଭିତରକୁ ପଶିବା ଆଗରୁ ଫାୟାର୍ କଲେ । ତାଙ୍କ ଲକ୍ଷ୍ୟ ବ୍ୟର୍ଥ ଯାଏନାହିଁ, ତେବେ ପଛ ପାଖରୁ ଗୁଳି ଯାଇଥିଲା, ବାଘଟି ସମ୍ଭବତଃ ଆହତ ହୋଇ ଗର୍ଜନ କରି ଦୌଡ଼ି ଅଦୃଶ୍ୟ ହୋଇଗଲା ଜଙ୍ଗଲ ଭିତରେ । କିନ୍ତୁ ବାଟ ଯିବାପରେ ଗୋଟିଏ ଅନ୍ଧ ବଙ୍କା ବୁଲଣି ବେଳକୁ ହଠାତ୍ ସେ ଲକ୍ଷ୍ୟକଲେ ଉପରପାଖ ପାହାଡ଼ର ପଥରଟିଏ କଡ଼ରୁ ଝକ୍‌ଝକ୍ ଆଖି ଯୋଡ଼ିଏ ଚାହିଁଛି । ବାଁ ପାଖ କିନ୍ତୁ ଦେଖୁନଥିବା ଅନୁମାନ କରି ହେଉ ନଥିବା ଗଭୀର ଅନ୍ଧାର । ସେତେବେଳକୁ ଭାଗ୍ୟକୁ ସେ ନିଜେ ହ୍ୱିଲ୍ ପାଖେ ବସିଥାନ୍ତି, ତତ୍‌କ୍ଷଣାତ୍ ସ୍ପିଡ୍ ଦେଇ ନେଇ ଯାଉଁ ଯାଉଁ ବାଘ ଡେଇଁଲା ଜିପ୍ ଉପରକୁ—ଠିକ୍ ଜିପ୍ ପାର ହେଇଚି ଆଉ ବାଘ ପଡ଼ିଲା ରାସ୍ତା ଉପରେ । ଦେହରୁ ଝାଳ ଶୁଖିନି, ଆଉ ପାଞ୍ଚ ମିନିଟ୍ ଯାଇଥିବ କି ନାହିଁ ଆଗ ମୋଡ଼ରେ ପାହାଡ଼ ଉପରୁ ପୁଣି ସେଇ ଜଳଜଳ ଆଖି ।

ଶିବପ୍ରସାଦ ସେଦିନ ନିଜର ବନ୍ଧୁକ ଡ୍ରାଇଭିଂ କାରସାଦି ବଳରୁ ଯେମିତି ବାଘ ସହିତ ଦୁଇଥର ମୁକାବିଲା କରି ବଞ୍ଚି ଆସିଥିଲେ, ଶୁଣିସାରିଲା ବେଳକୁ ବିକ୍ରମବାବୁଙ୍କର ହାତଗୋଡ଼ ସବୁ ଲୁହାଝିଲେଇ ଗଣ୍ଠିମାନଙ୍କରେ ଦେଇଥିଲା ପରି ଲାଗୁଥାଏ ଓ ନିଶ୍ୱାସ ଖରଚର ବନ୍ଦ ଥାଏ । ଗପ ସରିଲା ପରେ ଭିଡ଼ମୋଡ଼ ହୋଇ ହାତଗୋଡ଼ ଲମ୍ବାଇ ସେ ଆରାମରେ ବସିଲେ ଓ ଆଉ ଦି' କପ୍ ଟି' ପାଇଁ ବରାଦକରି କହିଲେ, "ଆପଣ ତ ଖାଲି ଶିକାର ଗପ କହୁଛନ୍ତି । କେବେ ସିନା ଭଲ ବନ୍ଧୁ ଶିକାରୀ ଦଳଙ୍କୁ ନେଇ ଶିକାର ନିମନ୍ତେ ଏହିରେ ବ୍ୟବସ୍ଥା କରନ୍ତେ । ଆଜି ମୋ ବନ୍ଧୁକ କଥା କଣ ହେଲା, ଦେବି ଦେବି ବୋଲି କହୁଥିଲେ ?"

ଶିବପ୍ରସାଦ ଟିକିଏ ଭାବିଲାପରି କହିଲେ, "ଭାବୁଥିଲି ରାଜାସାହେବଙ୍କୁ ଆପଣଙ୍କ ପାଇଁ ବନ୍ଧୁକଟିଏ ଯୋଗାଡ଼ କରିଦେବ । ତେବେ ସେ ବଡ଼ ଅଖାଡ଼ୁଆ ଲୋକ । ଆପଣ ନିଜେ ଯାଆନ୍ତୁ ସେ ଖୁସି ହେବ, ଆଗରୁ ବି ସେ ଅନେକଙ୍କୁ ବନ୍ଧୁକ ଦେଇଚି ।"

ପରଦିନ ବନମବାବୁ ସକାଳୁ ଚପରାସିଟିଏ ହାତରେ ଖବର ପଠାଇଦେଇ, ଉପରବେଳା ଅଫିସ୍‌ରୁ ଫେରି ସିଧା ଚାଲିଲେ ରଜା ଉଆସ ଆଡ଼କୁ । ସହର ମଝାମଝି ଉଚ୍ଚମାଟିକାନ୍ଥ ପାଚେରି ଲମ୍ବିଚି—ଉଆସ ପାଚେରି । ପାଚେରି ଉପରେଯାକ ସବୁ ଖପର ଛାଉଣୀ-ଠାଏ ଠାଏ କାନ୍ଥ ଧସିଯାଇଚି । ଆଧାଅଧି ଉଆସ ଭୂଷୁଡ଼ି ମାଟି ଗଦା ହୋଇ ରହିଚି, କେବଳ ମଝି ଉଚ୍ଚ ଦରପକ୍କା ଅଂଶଟି ଠିଆହୋଇଚି ଅଷ୍ଟାଳକ କଲାପରି । ଉଆସ ଆଗକୁ ବଡ଼ ଫାଟକ । ପାଖରେ କେହି କୁଆଡ଼େ ନାହିଁ—ଧୂଳି, ଗୋବର, ଶୁଖିଲା ପତ୍ର ।

ଖଣ୍ଡେଦୂରରୁ କ'ଣ କରିବେ ଭାବୁଚନ୍ତି, ଦରଆଉଜା ଫାଟକ ଠେଲି ଠେକାଭଡ଼ା ନାଲିଜାମା ପିନ୍ଧା ଦରବୁଢ଼ା ଲୋକଟିଏ ବାଡ଼ି ଟାଣି ଟାଣି ଆସିଲା, ନିର୍ଲିପ୍ତରେ ଦୁଆରବନ୍ଧ ଉପରେ ବସିପଡ଼ି ଧୂଆଁ ଫୁଙ୍କିଲା । ପାଖରେ ପହଞ୍ଚି ବନମବାବୁ ପଚାରିଲେ, "ରାଜାସାହେବ୍ ଅଛନ୍ତି ?"

ଲୋକଟି ବସିରହି ବଡ଼ଧୂଆଁ ଭିତରୁ ଉତ୍ତର ଦେଲା—"ଶୀକାରରେ ଯାଇଛନ୍ତି ।"

"କେଉଁଠିଆ ?"

"ରାଣୀସାହେବା ବି ଯାଇଚନ୍ତି ସାଙ୍ଗରେ ।"

ବନମବାବୁଙ୍କ ଚଢ଼ିଯାଉଥିବା ରାଗ କହିଲା ଏ ବେଖାତିରିଆ ବୁଢ଼ାଟାକୁ ଧମକାଇବେ—ଶଳା ଚିହ୍ନିନୁ କବେ ମୋତେ ? କିନ୍ତୁ ତାଙ୍କ ପ୍ରଶ୍ନ ବୁଝିଲାପରି ପରଳିଆ ଆଖି କୁଞ୍ଚାଇ ସାଦାସିଧା ସ୍ୱରରେ ଲୋକଟି କହିଲା—"ନୂଆ ଆସିଚନ୍ତି କି ଆଜ୍ଞା ? ଆପଣଙ୍କୁ ତ ଦେଖିନି ଆଗରୁ ?"

ଉତ୍ତର ନଦେଇ ଏଣେତେଣେ ଚାହିଁ ଫେରିଯିବା କଥା ଚିନ୍ତା କରୁ କରୁ ବନମବାବୁ ଓଲଟି ପଚାରିଲେ, "ଏ ଦିନବେଳଟାରେ କୁଆଡ଼େ ଯାଇଚନ୍ତି ଶିକାରରେ ? କେବେ ଫେରିବେ ?"

"ଫେରଆସିବେ ।" କହି ଲୋକଟି କ'ଣ ମନେପଡ଼ିଗଲା ପରି ଉଠି ବିଡ଼ି ଲଗାଇ କାନରେ ଖୋସିଲା । ତା'ପରେ ବଙ୍କିମବାବୁ ତା'ର ହଠାତ୍ କୁହାଟ ଓ ଧଉଡ଼ରୁ ଦେଖିଲେ ଦୂରରୁ ଗାଈଗୋଠ ଫେରୁଛନ୍ତି—ରଜାଘର ଗାଈ ବୋଧହୁଏ । ଯାଉ ଯାଉ ଲୋକଟି ଫେରିପଡ଼ି ପାଟିକଲା, "ଏଇ ଆଜ୍ଞା ରାଜାସା'ବ୍ ଆସିଗଲେ ।"

କୌଣସି ଯାନବାହନ ଉଦ୍ଦେଶ୍ୟରେ ଦୂରକୁ ଦୃଷ୍ଟି ଦେଲାବେଳେ ସେ ଦେଖିଲେ—ଗୋଧୂଳିପଟଳ ଭିତରୁ ଉଭାଇଆସିଲା ସାଇକେଲ୍‌ଟିଏ । ଦୃଶ୍ୟ ପାଖେଇ ଆସିଲାରୁ ସେ ଲମ୍ବା, ପତଳା ଆରୋହୀଙ୍କୁ ଦେଖିଲେ—କାନ୍ଧରେ ବନ୍ଧୁକ, ହାଣ୍ଡେଲ୍‌ରୁ ଝୁଲୁଚି ମଲା ହଂସଟିଏ । ପଛ କ୍ୟାରିଅର୍‌ରୁ ଜଣେ ନାରୀଙ୍କ ଶାଢ଼ୀ ଦିଶୁଚି ।

ଉଆସ ପାଖେ ସାଇକଲ୍ ବ୍ରେକ୍ ଲାଗିଲାରୁ ପଛପାଖୁ ତରୁଣୀଜଣକ ଡେଇଁପଡ଼ି ଓହ୍ଲାଇଲେ । ଆରୋହୀ ରୁମାଲ୍‌ରେ ମୁହଁ ପୋଛୁ ପାଟିକଲେ, "ଅବ୍‌ବେ ଶାଲେ ରାମୁ ! ସାଇକଲ୍ ଲେଲୋ, ଶାଲେ ।"

କେଉଁଆଡ଼ୁ ନାଲିପିନ୍ଧା ଚଗଡ଼ାଛୁଆ ଟୋକାଟିଏ—ନିଃସନ୍ଦେହରେ ରାମୁ—'ଜୀ ହଜୁର୍' କହି ଧାଇଁଆସିଲା ଓ ସାଇକେଲ୍‌ର ଦାୟିତ୍ୱ ନେଲା । ବଙ୍କିମବାବୁଙ୍କ ବିସ୍ମୟ କଟିଲା ପରେ ଆଗେଇ ଆସି ପଚାରିଲେ, "ଆପଣ ବୋଧହୁଏ ଏଠାକାର ରାଜାସାହେବ ?"

ଆଧୁନିକ ଫ୍ୟାଶନ୍‌ରେ ଜିନ୍ ଶାର୍ଟ ପିନ୍ଧା, ତିରିଶ ଆଖପାଖର ଲମ୍ବା, ଦାଢ଼ୁଆ ଯୁବକ ରାଜାସାହେବ ଆଖିରୁ କଳାଚଷମା କାଢ଼ି ବିଶୁଦ୍ଧ ଇଂରାଜୀରେ ପଚାରିଲେ, "ଆପଣ କିଏ ଜାଣିପାରେ କି ?"

ପରିଚୟ ଜାଣିଲା ପରେ ଆଉ ଟିକିଏ ବିଲାତି ଢଙ୍ଗର ଇଂରାଜୀରେ ରାଜାସାହେବ୍ ବ୍ୟକ୍ତକଲେ, ସେ ବଙ୍କିମବାବୁଙ୍କ ସହିତ ପରିଚିତ ହୋଇ ଖୁବ୍ ଆନନ୍ଦିତ ହୋଇଚନ୍ତି, ଆଉ ଭିତରକୁ ପାଛୋଟି ନେଲେ ।

ଏତେବେଳକୁ ରାଣୀସାହେବା ଅନ୍ତଃପୁରରେ ଅଦୃଶ୍ୟ ହୋଇ ସାରିଥିଲେ । ଦାମୀ ସିନ୍ଥେଟିକ୍ ଶାଢ଼ୀ ସତ୍ତ୍ୱେ ରାଣୀ ଯେ ସ୍ଥାନୀୟ ଜଣେ ଆଦିବାସୀ ତରୁଣୀ, ସେକଥା ତାଙ୍କ ଚଉଡ଼ା ଚକ୍‌କଣ ଚେହେରାରୁ, ଓଠର ଓ ନାକକଡ଼ର ଚୋପାଏ ଲେଖାଏଁ ନେଳୀ ଚିତାକୁଟା ଚିହ୍ନ ସ୍ପଷ୍ଟ ବତାଇ ଦେଉଥିଲା ।

ଉପର ଉଚ୍ଚ ଖପରଛପ୍ପର—ନୂଆଘର ଅଧାଘର ପକ୍କା, ଅଧା କଚ୍ଚା । ଆକାଶରେ ବଙ୍କୁଲୀ ଗାର ପରି କାନ୍ଥମାନଙ୍କର ଚଉଡ଼ା ଫାଟମାନ, ଚୂନ ପଲସ୍ତରା ଖସି ଯାଇଛି ଅନେକଠି । ଏଠି ସେଠି ଜଣେ ଅଧେ ନାଲି ଜାମାପିନ୍ଧା ମୂଲିଆ ଶ୍ରେଣୀର ଲୋକ ଆତଯାତ ହେଉଛନ୍ତି । ବଗିଚା ଅଗଣାର ଚାରିପାଖେ ପ୍ରଶସ୍ତ ବାରଣ୍ଡା ଓ ଘର । ପଛପାଖ କାନ୍ଥରେ ବଡ଼ ଗୋଟିଏ କବାଟ ଭିତର ଅଗଣାକୁ । ଝାଇଁଝାଇଁଆ ନାଲିକଣୁଟିଏ ଶୁଭିଲା ଓ ସେଇ ଦ୍ୱାରବନ୍ଧରେ ଆଉ ଜଣେ ଆଦିବାସୀ ନାରୀମୂର୍ତ୍ତି ଉଭାହୋଇ, ଏ ସୁଟ୍‌ପିନ୍ଧା ଆଗନ୍ତୁକଙ୍କୁ ଦେଖି ମୁହୂର୍ତ୍ତେ ରହିଗଲେ ଓ ଲେଉଟି ପଡ଼ି ଅଦୃଶ୍ୟ ହୋଇଗଲେ । ବ୍ରହ୍ମବାବୁ ଭାବିଲେ—ପଛ ଅଗଣାରେ କଣ ? ରାଜଘର ପାହାଲରେ ଆଦିବାସୀ ନାରୀ ସମ୍ଭବତ ହାରେମ ?

ଉଚ୍ଚ ବାରଣ୍ଡାର କାନ୍ଥସାକ ଧାଡ଼ି ଧାଡ଼ି ହରିଣ ଓ ମଇଁଷିମୁଣ୍ଡ ବେଶ ଲମ୍ବେଇଚନ୍ତି—ଯତ୍ନ ଅଭାବରେ ଧୂଳିବୋଳା, ଚମଡ଼ାମାନ ରେମେଡ଼ା ଫଟା ଫଟା । ବୈଠକ ଖୋଲିଗଲା । ପୁରୁଣା ବିଳାସୀ ସୋଫାସେଟ୍‌ର ଚେଲିଆ ଗଦିମାନ ଦବି ଗାତ ହୋଇଯାଇଛି । ବଡ଼ ବଡ଼ ଫ୍ରେମ୍ କରା ଫଟୋ, ଗୋଟିଏ ଅଧେ ତୈଳଚିତ୍ର । ଆହୁରି ହରିଣ, ସମ୍ବର, ଚିତା, ମହାବଳ ମୁଣ୍ଡ । ବଡ଼ ବଡ଼ କୋଠିକମ କବାଟ ।

କିଛି ସମୟ ପରେ ନିତାନ୍ତ ଆଡ଼ମ୍ବରବର୍ଜ୍ଜିତ ଭାବେ ଟ୍ରେ ଆସିଲା । ରାଜାସାହେବ୍ ଗମ୍ଭୀର ଠାଣିରେ ବସି ଟ୍ରେ ସିପ୍ କଲେ । ଗୋରା ଚେହେରା ଖରାରେ ତମ୍ବାଟିଆ ପଡ଼ିଛି । ଆଧୁନିକ ଫେଶନ୍‌ର ଲମ୍ବାବାଳ, ବେଶପୋଷାକ ଅନନ୍ୟସ୍ତ, ମଦ୍ୟପାନର ଅଭ୍ୟାସରୁ କହିବା ଆଖିଯୋଡ଼ିକ ନାଲିରଙ୍ଗର ସୁରମା ଲଗାଇଥିଲା ପରି । ରାଜାସାହେବଙ୍କ ଆଡ଼ୁ ଗପସପ ଆରମ୍ଭର କୌଣସି ଆଭାସ ନପାଇ ବ୍ରହ୍ମବାବୁ ନିଜଆଡ଼ୁ କଥା ଜମାଇବାକୁ ଚେଷ୍ଟା କଲେ—"ଚମତ୍କାର ହୋଇଛି ଏ ଶିକାରର ଟ୍ରଫିମାନ । ଏସବୁ ଶିକାର ଆପଣ କରିଛନ୍ତି ?"

ରାଜାଙ୍କ ମୁହଁରେ ଅସ୍ୱାଭାବିକ ହସ ଫୁଟିଲା, ଆତ୍ମପ୍ରସାଦର ଉଜ୍ଜ୍ୱଳ ହସଟିରେ ସେ ମୁହଁରେ ଟିକିଏ ଆଗରୁ ଖାପିଥିବା କାଠୁଆପଣ ଚଟ୍‌କିନା ଦୂରେଇଗଲା । କହିଲେ—"ନା, ଏସବୁ ମୋ ବାପାଙ୍କର ପ୍ରାପ୍ତ, କେତେଟା

ଜେଜେବାପାଙ୍କର ବି ଅଛି । ମୋ ବାପା ଖୁବ୍ ନାମୀ ଶିକାରୀ ଥିଲେ, କେବଳ ବାଘ ଶହେ ତିରିଶଟା ମାରିଛନ୍ତି ।"

"ଆପଣଙ୍କର ବି ତ ଶିକାରରେ ଆଗ୍ରହ ଅଛି ? ଆଜି ଯାଇଥିଲେ ବୋଧହୁଏ ଶିକାରରେ ।"

କହିଦେଇସାରି ବିକ୍ରମବାବୁ ନିଜର ଭୁଲ୍ ବୁଝିଲେ—ରାଜାଙ୍କ ହସ ମିଳେଇଗଲା । ସେ କପ୍‌କୁ ଅନାଇ ଭ୍ରୂ କୁଞ୍ଚାଇ କହିଲେ, "ମୁଁ ଶିକାର କରେ କଛି କଛି । ତେବେ ସେ କଛି ନୁହେଁ । ଖାଲି ସମୟ ଗଡ଼େଇବା କଥା— ଜଷ୍ଟ ଟୁ କିଲ୍ ଟାଇମ୍ । ଆଜିକାଲି ଶିକାର ବି ମନା ହୋଇଯାଇଛି ଶୁଣିଥିବେ ?"

ବିକ୍ରମବାବୁ ରାଜାଙ୍କ ମନକୁ ଟାଳିଲି ଭଳି ନୂଆ ବିଷୟ ଭାବିଲେ । ସିଧା କଣାବଙ୍କା କଥା ଆରମ୍ଭ କରିବା ଭଳି ଜାଗା ଏଇଟା ନୁହେଁ ।— "ଆପଣଙ୍କ ବାପାଙ୍କ ବିଷୟରେ ମୁଁ ଅନେକ ଶୁଣିଛି । ଆପଣଙ୍କର ସ୍କୁଲ୍ ବେଳ କଥା ତ ମନେ ନ ଥିବ"—ଇତ୍ୟାଦି ।

ରାଜା ଆଖି ଉଠେଇ ବିକ୍ରମବାବୁଙ୍କୁ ଚାହିଁଲେ ତାଲା କିଛିପରେ ଓ ତାଙ୍କ ଭ୍ରୂ ମଝିରୁ ଗାର ଉଭେଇ ମୁହଁରେ ପୁଣି ହସ ଓ ଖୋଲା ଆତ୍ମବିଶ୍ୱାସ ଫୁଟିଲା । ସେ ତା'ପରେ ନିଜେ ଉଠି ବିଭିନ୍ନ ଫଟୋରୁ ତାଙ୍କ ବଂଶର ଲୋକଙ୍କୁ ଚିହ୍ନେଇଦେଲେ, ବିଭିନ୍ନ ହରିଣ, ବାଘମୁଣ୍ଡଙ୍କର ସଂକ୍ଷିପ୍ତ ଇତିହାସ ଶୁଣେଇଲେ । ଫେରି ପୁଣି ଚଉକିରେ ବସି ପ୍ରଶସ୍ତ ଝରକାଦେଇ ବାହାରକୁ ଅନେଇଲେ— ଉଆସ ଛାତର କଡର ପୁରୁଣା ଖପରରେ ତେରଛା ନାଲିଖୋଲରେ ବସିଥିବା ପାରା କେତୋଟିଙ୍କ ଉପରେ ଦୃଷ୍ଟି ନିବଦ୍ଧ କରି ସେ କହିଲେ— "ପିଲାଦିନ ତାଙ୍କର କଟିଥିଲା ରାଏପୁର ରାଜକୁମାର କଲେଜରେ, ସେଇଠୁ ସେ ସିନିଅର୍ କେମ୍ବ୍ରିଜ୍ ପାସ୍ କରିଛନ୍ତି । ବିଶେଷତଃ ମିସ୍ କରନ୍ତି ସେ ତାଙ୍କର ସ୍କୁଲଦିନମାନ । ତାଙ୍କ ପ୍ରିନ୍ସିପାଲ୍ ଥିଲେ ଜଣେ 'ଡ୍ୟାମ୍ ଗୁଡ୍ ଚ୍ୟାପ୍,' ଆଉ ତାଙ୍କ ଟ୍ୟୁଟର୍ ତ 'ଏରିଅଲ୍ କିଙ୍ଗ୍‌ସ୍,' ନିଜେ ତାଙ୍କୁ ବନ୍ଧୁକ ଧାରରେ ମିଶ୍ରଣର ଅନୁପାତ ଶିଖାଇ ଦେଇଥିଲେ, ଶିକାରର ଟିକିନିଖି ଟେକ୍‌ନିକ୍ ସବୁ ବି । ବନ୍ଧୁତଦିଲୁ

ସେ ଆଉ ତାଙ୍କ ପୁରୁଣା ସ୍କୁଲ ଆଡ଼େ ଯାଇପାରି ନାହାନ୍ତି—ବିଦେଶୀ କାର୍ ଘୋଡ଼କ ତ ଉଠନ୍‌ପୋଜ୍ କରିଦିଆଗଲା ବାପା ଥାଉ ଥାଉ, ଯିବ ଏବେ କୋଉଥିରେ ମଣିଷ ।

ବାହାରେ ଘରର କଟିରି ଖପର ଉପରେ ଆଉ ପାରିମାନେ ନଥିଲେ, ନାଲି ଖରା ବି କେବେଠୁଁ ଉଭେଇ ଘରି ଅନ୍ଧାର ଓହ୍ଲେଇ ଆସୁଚି । ବିକ୍ରମବାବୁ ଏଥର ପୁଣି ଶିକାର ଟପିକ୍ ପକାଇଲେ; କିନ୍ତୁ ରାଜା ପଲକମାତ୍ରକେ ପୁଣି ତାଙ୍କ ବଂଶ-ଗରିମାକୁ ଫେରିଗଲେ—"ମୋ ଶ୍ୱଶୁର ସାରଙ୍ଗଧର ସାଏ ଛତ୍ରଗଡ଼ରେ ସବୁଠାରୁ ପ୍ରତାପୀ ରାଜା ଥିଲେ । ବିଖ୍ୟାତ ଶିକାରୀ—ନାଁ ନିଶ୍ଚୟ ଶୁଣିଥିବେ ଆପଣ…"

ରାଜାଙ୍କ ଶ୍ୱଶୁର କଥାରୁ ବିକ୍ରମବାବୁଙ୍କର ମନେପଡ଼ିଗଲା ଯାଇକେଲ୍‌ରୁ ଓହ୍ଲାଇଥିବା ରାଣୀଙ୍କ ଚେହେରା । ସେହିକ୍ଷଣି ତାଙ୍କର ବି ମନେପଡ଼ିଗଲା କାହାଠାରୁ ସେ ଶୁଣିଥିଲେ, କୁମାର ରାଜାସାହେବଙ୍କର ବିବାହ ଅଳ୍ପ ବୟସରେ ସମ୍ପନ୍ନ ହୋଇଯାଇଥିଲା ଛତ୍ରଗଡ଼ର ରାଜକନ୍ୟାଙ୍କ ସହିତ, ସେତେବେଳକୁ ବୁଢ଼ାରାଜା ପକ୍ଷାଘାତରେ ଆକ୍ରାନ୍ତ ହୋଇସାରିଥାନ୍ତି । ବିବାହର ଛ'ମାସ ପରେ ବୁଢ଼ାରାଜା ମରିସାରିଥାନ୍ତି—ବୋହୂରାଣୀ ବାପଘରକୁ ଚାଲିଗଲେ କୌଣସି କାରଣରୁ—ଆଉ ଫେରିନାହାନ୍ତି । ରାଜାସାହେବଙ୍କୁ ବି ଶ୍ୱଶୁରଘର ଆଡ଼େ ଯିବାର କେହି ଦେଖିନାହାନ୍ତି ।

ଏଥର ରାଜାସାହେବ ହାଇ୍ରୋସ ମାରିବା ପାଇଁ ଗପ ବନ୍ଦ କଲାକ୍ଷଣି ବିକ୍ରମବାବୁ ଦୋଟୋପାଟି ହୋଇ କହିଲେ, "ମୋର ବି ଶିକାରରେ ସଉକ୍ ଅଛି, ତେବେ ବନ୍ଧୁକ ନାହିଁ । ମୁଁ ଶୁଣିଥିଲି ଆପଣଙ୍କ ପାଖେ ଗୁଡ଼ାଏ ବନ୍ଧୁକ, ଡ଼ିସ୍‌ପୋଜ୍ ଅଫ୍ କରିଦେବାର ଇଚ୍ଛା ବୋଲି ବି ଶୁଣିଛି । ମୋ ଲାଗି ଯଦି ଗୋଟାଏ ଯୋଗାଡ଼ କରିପାରନ୍ତେ…"

ସନ୍ଧ୍ୟାର ମଳିନ ଆଲୋକ ଓ ରାଜାଙ୍କ ଗମ୍ଭୀର ରହିବାର ଚେଷ୍ଟା ସତ୍ତ୍ୱେ ତାଙ୍କ ଆଖିରେ ହଠାତ୍ ଆଗ୍ରହ ଜଳିଉଠିବା ବିକ୍ରମବାବୁ ସ୍ପଷ୍ଟ ଦେଖିଲେ । ଟିକିଏ ରହି ଗଳାଖଙ୍କାରି ରାଜା କହିଲେ, "ନିଶ୍ଚୟ, ଆପଣ ନେବାକୁ ଚାହିଁଲେ ନଦେବି କେମିତି ? ମୋ ପାଇଁ ଏଇଟା ଅତି ଖୁସିର କଥା ।"

ତା'ପରେ ସେ ନିଜେ ଉଠି ଭିତରକୁ ଗଲେ ଓ ଖୋଳ ଭିତରେ ଥିବା ବନ୍ଧୁକଟିଏ ଆଣିଲେ । ବନ୍ଧମବାବୁ ହାତକୁ ନେଇ ବନ୍ଧୁକଟି ଖୋଳରୁ କାଢ଼ିଦେଇ ବସ୍ଥସ୍ଥ ଓ ନିରାଗରେ ହତବାକ୍ ହେଲେ । ନିତାନ୍ତ ପୁରୁଣା ରଙ୍ଗଛଡ଼ା ବନ୍ଧୁକଟିଏ, କଳଙ୍କି ଧରିଆସୁଛି । ତାକୁ ବୁଲେଇବାଲେଇ ଦେଖୁ ଦେଖୁ କହିଲେ, "ଆଉ କଣ୍ଟୁ ନାହିଁ ଆପଣଙ୍କ ପାଖେ ? ଏଇଟା...ଟିକଏ ପୁରୁଣା ତ, କ୍ୟାଟ୍ରିଜ୍ ମିଳିବାରେ ଅସୁବିଧା ହେବ ।"

ରଜା ଆଦୌ ଅପ୍ରସ୍ତୁତ ନହେଇ କହିଲେ, "ଆଉ ନାହିଁ । ବୁଝିଲେ, ଲୋକ ପଛରେ ପଡ଼ି ପଡ଼ି ସବୁ ନେଇଗଲେ । ଷ୍ଟେଟ୍ ଗଲା ପରେ ତ ମୋ ବାପାଙ୍କୁ ବାଣ୍ଟିଦେବାକୁ ପଡ଼ିଲା ଗୁଡ଼ାଏ । ଆଜିକାଲି ବେଶି ହତିଆର ପାଇଁ ଲାଇସେନ୍ସ ମିଳିବାରେ ବି ଅସୁବିଧା ଆପଣ ଜାଣିଥିବେ, ତେଣୁ ମୁଁ ବି ବେଶି ରଖିନାହିଁ ।"

ବନ୍ଧମବାବୁ ଦୀର୍ଘଶ୍ୱାସ ଛାଡ଼ି ବନ୍ଧୁକଟି ଟେବୁଲରେ ରଖିଦେବାକୁ ଯାଉଥିଲେ, ତାହା ଟେବୁଲ ନଛୁଉଁଣୁ ରଜା ନିଜ ହାତକୁ ନେଇ ଅତି ଆଗ୍ରହରେ ଚକ୍ଚକ୍ କରି ଦେଖାଇଲେ । କହିଲେ—"ଏ ଅଳ୍ପ ପାଓ୍ୱାରର ଲାଇଟ୍ ଯୋଗୁଁ ଏମିତି ଦିଶୁଛି, ବାସ୍ତବରେ ଏମିତି ମଡେଲ୍‌ର ଜିନିଷ ଆପଣ ଆଉ କୋଉଠି ପାଇବେନି । କ୍ୟାଟ୍ରିଜ୍ ଆପଣ ପାଇଯିବେ କଲିକତାରେ, ମୁଁ ଏଡ୍ରେସ୍ ଦେବି ଆପଣଙ୍କୁ ।"

ରଜାଙ୍କ ଆଗ୍ରହରେ ସାହସ ପାଇ ବନ୍ଧମବାବୁ କହିଲେ—"କିଛି ଯଦି ମନେ ନକରିବେ, ଆଜି ଯେଉଁ ବନ୍ଧୁକଟି ଆପଣ ନିଜେ ନେଇଥିଲେ..."

ହଠାତ୍ ରଜାଙ୍କ ଚୁଗଲ୍‌ଭାବରେ ଭଙ୍ଗା ପଡ଼ିଲା, ଗମ୍ଭୀର ଭ୍ରୂକୁଞ୍ଚା ଭାବଟି ମୁହଁରେ ଖାପିଗଲା । ସୋଫା ପଛକୁ ଆଉଜି ଧୀର ସ୍ୱରରେ କହିଲେ— "ସେ ବନ୍ଧୁକଟି ବହୁଦିନରୁ ମୋର ବ୍ୟକ୍ତିଗତ । ତାକୁ ଦେବାର ପ୍ରଶ୍ନ ଉଠୁନାହିଁ ।"

ବନ୍ଧମବାବୁ ବୁଝିଲେ ଅଜାଣତରେ ସେ ପୁଣି ଆଘାତ ଦେଇଛନ୍ତି— କେଉଁଠି ରଜାଙ୍କର ଆତ୍ମସମ୍ମାନର ସୀମାରେଖା ଉପରେ କରିବା ମୁସ୍କିଲ୍ । କହିଲେ—"କ୍ଷମା କରିବେ, ଜାଣି ନ ଥିଲି ।"

ହାତରେ ପୁରୁଣା ବନ୍ଧୁକଟି ଧରିରଖି ଦେଖୁ ଦେଖୁ ତାଙ୍କୁ ନୂଆ ଚିନ୍ତାଟିଏ ଜୁଟିଲା—ଏମିତି ପୁରୁଣାକାଳର ଜିନିଷ କମ୍ ଲୋକଙ୍କ ପାଖେ ଥିବ । ସେ ଜାଣନ୍ତି ବିଳାସୀ ଲୋକ ବେଶି ଦାମ୍ ଦେଇ ପୁରୁଣା ଜିନିଷ କିଣି ରଖନ୍ତି ସଉକ୍‌ରେ । ଅଳ୍ପ ଦାମ୍‌ରେ ମିଳିଗଲେ, ଦ୍ୱିଗୁଣ ଦରରେ ସେମିତି ଲୋକ ଦେଖି ପାର କରି ଦେଇହେବ । କହିଲେ ସମ୍ଭ୍ରମର ସହିତ—ଠିକ୍ ଅଛି, ଏଇଟା ନେଉଛି ତେବେ । ଦାମ୍‌ଟା ବିଷୟରେ···କଥାବାର୍ତ୍ତାଟା ବର୍ତ୍ତମାନ ହୋଇଗଲେ···।

ଗୌରଚନ୍ଦ୍ରଙ୍କ ନଜର ରାଜା ପଚାରିଲେ—କେତେ ଦେବେ ଭାବୁଛନ୍ତି ? ବହ୍ନିବାବୁ ବଡ଼ ବେପାରୀ ସ୍ୱର ଶୁଣି ସିଧାସଳଖ ଉତ୍ତର ଦେଲେ—ଦେଖନ୍ତୁ, ପୁରୁଣା ଜିନିଷଟିଏ, ବେଶି ଆପଣ କୋଉଠିକି ପାଇବେନି । ପାଞ୍ଚରୁ ଅଧିକ ମୁଁ ଆଶା କରୁନାହିଁ । ପାଞ୍ଚ—।

—ଏଇଟ୍ । ଏଇଟ୍ ହୋଇପାରେ ।

ବହ୍ନିବାବୁ ଟିକିଏ ଭାବିଲେ । ଆଠଶହ ଟଙ୍କା ବିଶେଷ କିଛି ନୁହେଁ, ରଜାଚିଲ୍ଲଟା ସାଙ୍ଗରେ ଦର କଷାକଷି କରିବାକୁ ରୁଚିକୁ ବାଧୁଛି । କହିଲେ—ଠିକ୍ ଅଛି । ମୁଁ ତା' ହେଲେ ବନ୍ଧୁକଟା ନେଇପାରେ ବର୍ତ୍ତମାନ ? ସୁବିଧା ହେଲେ ସ୍ୱାର କ୍ୟାଟ୍ରିଜ୍ କେତେଟା ଦେବେ, ଟିକିଏ ପରୀକ୍ଷା କରିନେବି ବନ୍ଧୁକଟା । କାଲି ପଠେଇଦେବି ଆଠଶହ ଟଙ୍କା ।

ରାଜା ବହ୍ନିବାବୁଙ୍କ ସଙ୍ଗେ ଉଠିବାକୁ ଯାଇ ଅଧାଠିଆ ରହିଯାଇ ପଚାରିଲେ—ଆଜ୍ଞା ? ତା'ପରେ ପୁଣି ବସିପଡ଼ି ଛେପ ଢୋକି କହିଲେ—ଆଠଶହ ? କଣ କହୁଛନ୍ତି । ମୁଁ କହିଲି ଏଇଟ୍ ଗ୍ରାଣ୍ଡ—ଆଠ ହଜାର ।

ଟିକିଏ ଥକ୍କା ହୋଇ ରହି ବହ୍ନିବାବୁ ମୁହୂର୍ତ୍ତକରେ ହସି ପକାଇଲେ—ମାନେ ଆଠହଜାର କହୁଛନ୍ତି ଏଇ ପୁରୁଣା ଅବ୍‌ସଲିଟ୍ ଓ୍ୱେପନ୍‌ଟା ପାଇଁ ? ତା'ପରେ ଜାଣିଶୁଣି ଆଉ ଟିକିଏ ଜୋର୍‌ରେ ହସିଲେ—ତା ହେଲେ ଥାଉ ଆଜ୍ଞା ବନ୍ଧୁକଟା । ଶିକାର କରିବା ଇଚ୍ଛାରେ ବନ୍ଧୁକଟାଏ କିଣିବି

ଭାବୁଥିଲି—ତେବେ ଏଇ ସିପାହୀ ବିଦ୍ରୋହ ବେଳର ବନ୍ଧୁକରେ କି ଶିକାର ବା କରିବ ? ପୁରୁଣା ଜିନିଷଟାଏ ବୋଲି ଖାଲି ରଖିବାକୁ ସଉକ୍ ହେଉଥିଲି, ଆଠ ହଜାର ଦେଇ ଆଜ୍ଞା କାହିଁକି କିଣିବ ? ଥାଉ !

ରାଜା ସାହେବ ମୁହଁରେ ଲୁହାର ସାଞ୍ଚୁ ପିନ୍ଧିଛନ୍ତି ସତେକି । ଠିଆ ହୋଇପଡ଼ି ଅତି ଶାନ୍ତ ଗଳାରେ କହିଲେ—ବେଶ୍, ଭଲକଥା । ମୋର ବି ପ୍ରକୃତରେ ଜିନିଷଟା କାହାରିକୁ ଦେବାର ଇଚ୍ଛା ନ ଥିଲା । ଆପଣ ମାଗିଲେ ବୋଲି…

ପରଦିନ ଅଫିସରୁ ଫେରି ବିକ୍ରମବାବୁ ଲୁଗା ବଦଳାଉଛନ୍ତି, ଚପ୍‌ରାସୀ ଜଣାଇଲା—ରାଜା ସା'ବ୍ ଆସିଛନ୍ତି ଦେଖା କରିବାକୁ । ଚପରାସୀ ମୁହଁରେ ସ୍ଥାନୀୟ ଅନ୍ୟ ଲୋକଙ୍କ ପରି ରାଜାଙ୍କ ପାଇଁ ଅଧା ସମ୍ଭ୍ରମ ଓ କାଣିଚାଏ ଥଟ୍ଟାମିଶା ହସ ।

ବିକ୍ରମବାବୁଙ୍କୁ ଦେଖି ରାଜା କହିଲେ—ଏଇ ବାଟ ଦେଇ ଯାଉ ଯାଉ ଚାଲି ଆସିଲି, ଭାବିଲି ଦେଖାକରି ଆସେ ।

ବିକ୍ରମବାବୁ କହିଲେ—ବଡ଼ ଖୁସି ହେଲି ଆଜ୍ଞା, ବସନ୍ତୁ ବସନ୍ତୁ । ଆଉ ଭାବିଲେ—ଏ ରାଜାଟି ଯେ ନିତାନ୍ତ ସାମାଜିକ ମଣିଷଟିଏ ନୁହେଁ ନିଜ ଆଗ୍ରହରେ କାହା ଘରକୁ ଯାଇ ବନ୍ଧୁ କଲାପରି, ଏ କଥା ଏଇଠି କିଏ ନ ଜାଣେ ? ଡ୍ରାମାରେ ରଜା ପାର୍ଟ୍ କଲାପରି ବିଚରା କାଳ୍ପନିକ ରଜାଖୋଳଟିଏ ପିନ୍ଧି ଚାଲିବୁଲି କରୁଥାଏ—ତା ବିଶ୍ୱାସରେ ସେଇ ରଜାଖୋଳ ତା ହକ୍, ନିଜ ଜୀବନକାଳରେ ଦେଖିନଥାଉ ପଛକେ । ରାଜାର ବ୍ୟଙ୍ଗଚିତ୍ରଟିଏ ପରି । ମୁହଁରେ ଆତ୍ମସମ୍ମାନ, ଅହମିକାର ଘୋଡ଼ଣୀଟିଏ—ପିଲାଙ୍କ ଶସ୍ତା ଢିଲା ମୁଖାପରି ଟିକିଏ ଅସାବଧାନତାରେ ଯେଉଁଟା ଥରକୁ ଥର ଖସି ପଡ଼ୁଥାଏ ବେକଯାଏ, ପୁଣି ରଜା ହଠାତ୍ ମନେ ପଡ଼ିଗଲେ ତାକୁ ଟେକିଟାକି ମୁହଁ ଉପରେ ସଳଖାଏ ।

ଚା' ଓ ଏଣୁତେଣୁ ଗପ ତଥା ରେଡ଼ିଓ-ଖବର ଚର୍ଚ୍ଚା ପରେ ରାଜା କହିଲେ—ଏ ବାହାରଟାରେ ଥଣ୍ଡାଳିଆ ଲାଗୁଛି । ଚାଲନ୍ତୁ, ଡାକବଙ୍ଗଳାର ଡ୍ରଇଁରୁମ୍‌ରେ ବସିବା ।

ଅଳ୍ପ ଦୂରରେ ଟିପ୍‌ଟାପ୍ ହେଉଥିବା ତପସ୍ୱୀ ଦୁ'ଜଣ ରାଜାଙ୍କର ଏ ହଠାତ୍ ସ୍ଥାନ ପରିବର୍ତ୍ତନର ପ୍ରଧାନ କାରଣ ବୋଲି ବିକ୍ରମବାବୁ ଅନୁମାନ କଲେ ।

ଭିତରେ ବସୁ ବସୁ ରାଜା ଶୁଦ୍ଧ ଇଂରାଜୀରେ କହିଲେ—ଜାଣନ୍ତି, କାଲି ଆପଣଙ୍କୁ ନିରାଶ କରିବାର ଇଚ୍ଛା ମୋର ନ ଥିଲା । ଆଶା, ଆପଣ ମୋତେ ଭୁଲ୍ ବୁଝି ନାହାନ୍ତି ।

ବିକ୍ରମବାବୁ କହିଲେ—ନା, ନା, ଆଦୌ ନୁହେଁ । ଏଥିରେ ମୋର ମନେକରିବାର କଣ ଅଛି ? ହଠାତ୍ ସେ ଏ ବିନମ୍ର ଖାମ୍‌ଖିଆଲି ଅସହାୟ ରଜାଟି ପ୍ରତି ନରମ ହୋଇ ପଡ଼ିଲେ, କହିଲେ—ଆଜ୍ଞା, ଖୋଲିଖୋଲି କହିଲେ ଆପଣ ସିନା ରଜାରାଜୁଡ଼ା ଲୋକ, ଆମପାଇଁ ଆଠହଜାର ଟଙ୍କା ବହୁତ ବେଶି । ଆମେ ହେଲୁ ଚାକିରିଆ ଲୋକ—ଆଠହଜାରରେ ବନ୍ଧୁକଟାଏ କିଣିବା ସହଜ କଥା ?

ରଜା ଅ.ଗକୁ ଝୁଙ୍କି ପଡ଼ି ବ୍ୟଗ୍ର ଗଳାରେ କହିଲେ, କାହିଁକି ? ଆପଣ ତ ଜିନିଷଟା ଦେଖି ପସନ୍ଦ କରିଥିଲେ, ଆଗ୍ରହରେ ନେବାକୁ ଚାହିଁଥିଲେ । ଆପଣଙ୍କ କଥା ରହୁ, ଆପଣ ରଖନ୍ତୁ । ମୋର କଣ ବା ହେବ ସେଇଟା ? ପଡ଼ିରହିଛି, କଳଙ୍କି ଲାଗିଯିବ ।

ବିକ୍ରମବାବୁ କଣ ଉତ୍ତର ଦେବେ ବୁଝିନପାରି ଚୁପ୍ ରହିଲେ । ରଜାସାହେବ୍ ପୁଣି କହିଲେ ଆତ୍ମୀୟ ସ୍ୱରରେ—ଆପଣ ସରକାରୀ ଅଫିସର ଭାବେ ଏଇଠିକି ଆସିଛନ୍ତି, ମୁଁ ଆପଣଙ୍କ ପାଇଁ କ'ଣ କରିପାରୁଛି ? ମୋ ବାପ ଅଜାଙ୍କ ଅମଳରେ ଆପଣ ଆମ ଷ୍ଟେଟ୍‌ର ଅତିଥି ହୋଇ ରହୁଥାଆନ୍ତେ ।

ବିକ୍ରମବାବୁ ହଠାତ୍ ଏଇ ଲୋକଟିର ବାପ ବା ଅଜା—ପ୍ରତାପୀ ରଜାଟିଏ—ନିଜ ପରି ସରକାରୀ ଚାକିରିଆଟିଏ ସହିତ କଥାବାର୍ତ୍ତା କରୁଥିବାର ଦୃଶ୍ୟ ଅନୁମାନ କଲେ ।

ରଜା ସାହେବ ଏଥର ଉଠି ଉଠି କହିଲେ—ମୁଁ ଆଜି ଆପଣଙ୍କ ପାଖକୁ ପଠାଇ ଦେଉଛି ବନ୍ଧୁକଟା । କାଲି ଆପଣ ଗଲାପରେ ମୁଁ କମ୍ ଲଜ୍ଜିତ ହୋଇନାହିଁ । ଆପଣ ଜିନିଷଟାଏ ନେବାକୁ ଚାହିଁଥିଲେ ଅଥଚ ମୁଁ ଦେଇପାରିଲି ନାହିଁ ।

ବିକ୍ରମବାବୁଙ୍କର ମନ ଗୋଟାଏ ବ୍ୟଥିତ ସମ୍ବେଦନାରେ ଭରିଗଲା । କିନ୍ତୁ ରଜା ସାହେବଙ୍କ ସାଙ୍ଗେ ଉଠି ବାହାରି ଦେବାକୁ ଯାଉ ଯାଉ ସଫା ମୁହଁ ବାରି ହେଉନଥିବା ସେ ଅନ୍ଧାରରେ କୁଆଡ଼ୁ କେଜାଣି ଅଜବ ଇଚ୍ଛାଟିଏ ସୁଲୁ ସୁଲୁ ପବନପରି ବହି ଆସି ତାଙ୍କ ସମବେଦନାକୁ ଆକତା ମାକତା କରିଦେଲା, ଖାଲି କୁତୁହଳଟିକୁ ନିଦରୁ ଉଠାଇ କୁତୁ କୁତୁ କଲା । ପିଲାଦିନେ ସେ ରଜାପୁଅ ବିଷୟରେ କେତେ ଗପ ପଢ଼ିଛନ୍ତି, ଶୁଣିଛନ୍ତି । ଗରିବ ବ୍ରାହ୍ମଣଟିଏ ସାହସ କୁଳାଇ ରଜା ଉଆସକୁ ଯାଏ । ନିଜକୁ ସେ ସେତେବେଳେ ସେଇ ଗରିବ ବ୍ରାହ୍ମଣଟି ଦେହରେ ହିଁ ମିଶେଇ ଅନୁଭବ କରିପାରନ୍ତି । ଏବେ ଏ ନିରୋଳା ସନ୍ଧ୍ୟାରେ ପିଲାଦିନ ମୁହୂର୍ତ୍ତକ ପାଇଁ ଫେରି ଆସନ୍ତାକି—ରଜାପିଲାଟିଏ ଆପେ ଆସି ତାଙ୍କ ଆଗରେ ଗୋଡ଼ ଭାଙ୍ଗି ଦାନ୍ତ ନେଫେଡ଼ି ଠିଆ ହେଇଚି ।

ବିକ୍ରମବାବୁ ମାପିଚୁପି ଧୀରେ ଧୀରେ କହିଲେ—ଦେଖନ୍ତୁ, ମୁଁ ବି ଭାବୁଛି । କାଲି ହଠାତ୍ ଗୋଟାଏ ଆଗ୍ରହରେ ସିନା ମୁଁ କହିଦେଲି, ବାସ୍ତବରେ ଦରମା ଗଣ୍ଡାକରେ ମୋ ପରିବାର ସାରାଙ୍କୁ ପୋଷିବାକୁ ହୁଏ ମୋତେ । ଆଠଶହ ଟଙ୍କା ବି ବହୁତ ବେଶି ମୋ ପାଇଁ । ପାଞ୍ଚ ଶହରେ ହେଇଯାଆନ୍ତା ଯଦି ।

ଅନ୍ଧାରରେ ରଜାଙ୍କ ମୁହଁ ଦିଶୁନଥିଲା । ସେଇମିତି ନମ୍ର ଗମ୍ଭୀର ଗଳାରେ କହିଲେ—ଆପଣ ଯେତିକି ଖୁସି ଦିଅନ୍ତୁ, ସେଥିରେ କିଛି ମନେ କରିବାର ନାହିଁ । ମୁଁ ଦୁଃଖିତ ଯେ ଆପଣଙ୍କୁ ଜିନିଷଟା ଉପହାର ରୂପେ ଦେଇପାରୁ ନାହିଁ । ଗୁଡ୍ ନାଇଟ୍ ।

ରଜା ଗଲାପରେ ନାଲି ଜାମା ପଗଡ଼ିପିନ୍ଧା ଲୋକଟିଏ ବିକ୍ରମବାବୁଙ୍କୁ ପରିଚିତ ବନ୍ଧୁକଟି ଆଣି ଦେଇଗଲା, କହିଲା—ସଫାକରି ଅଏଲିଂ କରିଦେଇଛୁ । କ୍ୟାଟ୍ରିଜ୍ କିଛି ବି ପଠାଇଛନ୍ତି ରଜା ସା'ବ ।

ବିକ୍ରମବାବୁ ବାରଣ୍ଡାରେ ଭୁମ୍‌ହୋଇ ବସିବାର ଅଧଘଣ୍ଟା ଯାଇଥିବ କି ନାହିଁ ବାରଣ୍ଡା ତଳୁ ହରିଶ୍ ଗୁପ୍ତାଙ୍କର କେଁ-କେଁଇଆ ସ୍ୱର ଶୁଭିଲା—ଆଜ୍ଞା ନମସ୍କାର, ଆଜ କେମିତି କ୍ଲବ୍ ଆଡ଼େ ଯାଇନାହାନ୍ତି ?

ଅନ୍ୟଦିନ ପରି ଏକ ସ୍ଥାନୀୟ ବ୍ୟବସାୟୀ ତଥା ନେତାଟିକୁ ବନ୍ଧମବାବୁ ଶୀତଳ ସମ୍ବର୍ଦ୍ଧନା କଲେ । ପାଖ ଚଉକିରେ ବସି, ସେଯାଏଁ ଟେବୁଲ୍ ଉପରେ ରହିଥିବା ବନ୍ଧୁକଟିକୁ ଉଠାଇ ହରଣ୍ ଗୁପ୍ତା କହିଲେ—ଏଇ ବନ୍ଧୁକଟି କିଣିଲେ ଆଜ୍ଞା ରଜାସା'ବଠୁ ?

ବନ୍ଧମବାବୁ ସମ୍ମତିରେ ମୁଣ୍ଡ ହଲେଇଲେ । ଉଦ୍‌ଗ୍ରୀବ ଆତ୍ମୀୟ ଗଳାରେ ହରଣ୍ ଗୁପ୍ତା କହିଲେ—ଏଇ ଆସୁ ଆସୁ ରଜାସା'ବ ସାଙ୍ଗେ ଦେଖାହେଲା··· ଆପଣ ସତରେ ଏମିତି କେଇଗଲେ ଆଜ୍ଞା ?

ବନ୍ଧମବାବୁ ଏ ଅନଧିକାର ଚର୍ଚ୍ଚାରୁ ଆଗନ୍ତୁକଙ୍କୁ ନିବୃତ୍ତ କରିବାକୁ କହିଲେ—ମୁଁ ଏଇକ୍ଷଣି କ୍ଲବ୍ ଆଡ଼େ ଯିବାକୁ ବାହାରୁଥିଲି । ଚାଲନ୍ତୁ ଯିବା ।

ବନ୍ଧମବାବୁ ଜାଣନ୍ତି ଏ ଭଦ୍ରଲୋକଙ୍କର ରଜା ଉଆସକୁ ତଥା ରଜାର ଶିକାର ଟ୍ରିପ୍‌ମାନଙ୍କୁ ପ୍ରାୟ ଯାତାୟତ ରହିଥାଏ । ଯିବା କଥାଟା ଶୁଣି ନ ଥିବା ପରି ହରିଶ୍ ଗୁପ୍ତା ପୁଣି କହିଲେ—ଆପଣଙ୍କଠୁଁ ଅାଠହଜାର ଟଙ୍କା ମାରନେଲା ଆଜ୍ଞା ଶଳା ରଜାଟା ଏଇ ପୁରୁଣା ବନ୍ଧୁକଟା ପାଇଁ ?

ବନ୍ଧମବାବୁ ଏଥର ଆଲୋଚନାଟି ଆଗେଇବାକୁ ବାଧ୍ୟ ହେଲେ— ଆଠହଜାର ? କିଏ କହିଲା ଆପଣଙ୍କୁ ?

—କାହିଁକି, ନିଜେ କହିଲା ଯେ ରଜାର ବେଟା । ତା'ଠି ମୋର ଟଙ୍କା କିଛି ବାକି ଅଛି ତ···

ବନ୍ଧମବାବୁ କହିଲେ—ଆଶ୍ଚର୍ଯ୍ୟ, ପାଞ୍ଚଶହ ବୋଲି କଥା ପଡ଼ିଲା ଏଇଠି ଅଧଘଣ୍ଟା ତଳେ । ଲୋକଟାର ମୁଣ୍ଡମୁଣ୍ଡ ଖରାପ ନା କ'ଣ ?

ହରଣ୍ ଗୁପ୍ତା ଶେଷ ବାକ୍ୟଟି ଉପରେ ମନ୍ତବ୍ୟ ନଦେଇ ଦାମ୍ ବିଷୟରେ ପୂରା ସମ୍ମତ ହେଲେ । ଟେବୁଲରେ ମୁଠା ରଖି କହିଲେ—ଠିକ୍ ଆଜ୍ଞା, ସେଇ ପାଞ୍ଚଶହରୁ ପଇସାଟିଏ ବେଶି ଦେବେନି । ଆଜି ଆପଣ ଯିନା ସହରରେ ନେଉଛନ୍ତି, ଏ ବନ୍ଧୁକଟାର ମୂଲ୍ୟ ବା କଣ । ଆଗରୁ ତା'ର ଭଲ ବନ୍ଧୁକ ସବୁ କେତେ ଶସ୍ତାରେ ନେଇଯାଇଚନ୍ତି ଲୋକ । ସେ ଯେମିତି ତରତମ୍ ଦଶହଜାରରୁ ଆରମ୍ଭ କରେ । ବୁଝିଲେ, ଦେଶୀ ଠରବ ପିଇ ପିଇ ଯେତେବେଳେ ତା'ର

ବଲଗା ଫୋଟପ ଚିଇବାକୁ ମନ ହୁଏ, ତା ହଁଆଡୁ କସ୍ତୁ ଗୋଟାଏ ବଳପକାଏ —କଣିବାକୁ ଲୋକଟିଏ ମିଳିଲେ ହେଲ । ଆ ଥରେ ବଲଗା ଚିଇବା ଫୁଙ୍କ୍ ତା'ର ଚଟିଚ୍ଛୁ ମାନେ ଆପଣ ଯେତିକ କହିବେ ସେତିକରେ ସେ ଦେବ, ଆପଣ ନ ଟଙ୍କିଲେ ହେଲ ।

ଘରୁ ଛଅଦନ ପରେ ବହମବାବୁ ବୁଲବୁଲ କରି ସଞ୍ଜବୁଡ଼ିକୁ ଫେରୁଚନ୍ତି, ଗେଷ୍ଟ୍ ହାଉସ ବାରଣ୍ଡାରେ ରଜାସାହେବଙ୍କ ଚଉଲା ହାଡ଼ୁଆ ଚେହେରା ବାରିଲେ, ଟିକଏ ଅଧିକ ଯତ୍ନରେ ପଚ୍ଛେଇଲ ବେଶପୋଷାକ ପିନ୍ଧିଛନ୍ତି । ନମସ୍କାର ପରେ ରଜା ତାଙ୍କୁ ଅଦ୍ଭୁତ ଭାବେ ଭାବବହୀନ ଅଥଚ କାର୍ଟୁନ ପରି ଅକାରଣ ଆମୋଦଜନକ ମୁହଁରେ ମିଠିଆ ହସଟିଏ ଫୁଟାଇ କହିଲେ—ଗୋଟିଏ ଜରୁରୀ କଥା ଥିଲ ।

ବହମବାବୁଙ୍କୁ କ୍ରମଶଃ ଏ ଅଖାଡୁଆ ଲୋକଟିର ଗୁମ୍‌ସୁମ୍ ଉପସ୍ଥିତି ଆଉ ଭଲ ଲଗୁ ନଥିଲ । ହାତଘଣ୍ଟାକୁ ଅନେଇ ବ୍ୟସ୍ତ ଥିଲପରି କହିଲେ— କହନ୍ତୁ ।

ରଜା ଟିକଏ ବେଳ ଭାବ ଠିକ୍ ଭାଷା ମନେ ମନେ ଅଣ୍ଡାଳିଲ ପରି ବ୍ୟକ୍ତ କଲେ—ବନ୍ଦୁକଟି ମୁଁ ଆପଣଙ୍କୁ ଉପହାର ଦେଇପାରିଲି ନାହିଁ, ଏଇଟା ମୋ ପାଇଁ ଲଜ୍ଜାର କଥା । ତେବେ ଆପଣ, ମୋ ଭିତରେ ଖୁସିରେ କେତେ ଦିଆନିଆ ହେଲ, ସେକଥା ଯଦି ଆମ ଭିତରେ ରହିପାରନ୍ତା···

ବହମବାବୁ ବୁଝି ନ ପାରିଲ ପରି ରଜାଙ୍କ ମୁହଁକୁ ଚାହିଁଲେ, ଓଦାଳିଆ ହସଟିଏ ତାଙ୍କ ଓଠେ କେବଳ ଲଗିଥିଲ । ମୁହଁରେ ଆଉ କୋଉଠି ହସର ଛିଟିକାଏ ବି ନ ଥାଏ, ଖାଲି ହସର ଭାରାପଣରେ ଯେମିତି ଓଠ ଦୁଇକଣ ତଳକୁ ନଇଁପଡ଼ୁଥାଏ । କହିଲେ—ଆପଣ ହସ୍ତୁ ଅସ୍ୱୀକାର କରି ପାରିବେ ନାହିଁ ମୋ ବନ୍ଧୁକଟାର ଦାମ୍ ପାଞ୍ଚହଜାର ନୁହେଁ, ତାର ଅସଲ ଦାମ୍ ଅଠହଜାର । ଆପଣ କଣିଲେ ବୋଲି କହିବେ ଯଦି ସମସ୍ତଙ୍କୁ କହନ୍ତୁ; କିନ୍ତୁ ବନ୍ଧୁକଟାର ଦାମ୍ ଆଜ୍ଞା ଅଠହଜାର ।

ରାଜାଙ୍କ ଗଳାରେ ଏତେ ନମ୍ର ନିବେଦନ ଥିଲା ଯେ ତାଙ୍କୁ ଆଘାତ ଦେବା କଥା ବହ୍ନିମବାବୁ ଭାବିପାରିଲେ ନାହିଁ ।

ଗେଟ୍ ପାଖେ ବିଦାୟ ନେଲାବେଳକୁ ରାଜାସାହେବଙ୍କ ସାଙ୍ଗେ ହାତ ମିଳାଇ ପୁରୁଣା ବନ୍ଧୁ ପରି ବହ୍ନିମବାବୁ କହିଲେ—ଖାମ୍‌ଖିଆଲି ହୋଇ ମୁଁ ସତରେ କେତେବେଳେ କଣ କହି ପକାଏ । ତେବେ ଆପଣ ନିଶ୍ଚିନ୍ତ ରହନ୍ତୁ । ମୁଁ ବନ୍ଧୁକଟି ଉପହାର ପାଇଛି ବୋଲି କହିବ ।

# ପଲ୍ଲବିନୀ

ରାସ୍ତାକଡ଼ କୃଷ୍ଣଚୂଡ଼ା ମୂଳେ ଠିଆ ହୋଇ ମନୋଜ ରାସ୍ତାରେ ଚାଲୁଥିବା ନାରୀମାନଙ୍କୁ ଅନ୍ୱେଷୀ ଆଖିରେ ଚାହୁଁଥିଲା—କେଉଁ ମୁହଁ ଓ ଶାଢ଼ୀ ପିନ୍ଧି ପଲ୍ଲବିନୀ ଆସିବ ?

ରାସ୍ତାରେ ହର୍ଷୋତ୍ଫୁଲ୍ଲ ପତିଙ୍କ ସହ ସାଳଙ୍କାରା ପତ୍ନୀ, ଇସ୍ତୀକରା ନର୍ସଙ୍କ ଦଳ । ନାଲି ଧଡ଼ି ବଙ୍ଗାଳୀ ପ୍ରୌଢ଼ା କଳରବରତା ସ୍କୁଲଝିଅ ଓ ସ୍କୁଟର ପଛରେ ସ୍ୱାମୀଙ୍କୁ ଆଲିଙ୍ଗନ କରି ଦୁପଟ୍ଟା ଉଡ଼ାଇ ଯାଉଥିବା ପଞ୍ଜାବୀ ରମଣୀଙ୍କ ସମେତ ଯାବତୀୟ ନାରୀଙ୍କ ଭିଡ଼ । ଅଥଚ ପଲ୍ଲବିନୀ କାହିଁ ?

ସିଗାରେଟ୍‌ର ଶେଷାଂଶକୁ ଫିଙ୍ଗି ମନୋଜ ଆଗକୁ ଚାଲିଲା । ପଲ୍ଲବିନୀ ଆସୁନାହିଁ । ରାସ୍ତାରେ ହରରଙ୍ଗୀ ନାରୀଙ୍କୁ ଦେଖିଲେ ପଲ୍ଲବିନୀ ମନେପଡ଼େ । କଥା ମନକୁ ଆସିଲେ ହିଁ କବିତା ଆସେ । କେତେଦିନ ଆଉ ସେ ବିତାଇବ ଆଖିବୁଜି ପଲ୍ଲବିନୀକୁ କାମନା କରି କରି ?

ବସ୍‌ଷ୍ଟାଣ୍ଡ୍‌ରେ ସିମେଣ୍ଟ ବେଞ୍ଚରେ ବସି ଓ୍ୱିକ୍‌ଲି ଖଣ୍ଡେ ମେଲାଇ ମନୋଜ ଖୋଜିଲା ଆଖିରେ ଚାହିଁଲା ଅଦୂରରେ ଦୋକାନରୁ ଫଳ ବାଛୁଥିବା ଲାଲଚୂଡ଼ି ପିନ୍ଧା ହାତକୁ, ବସ୍‌ର ଅପରିଚ୍ଛନ୍ନ ପାହାଚରେ ଆସ୍ତେ ଓହ୍ଲାଇ ଆସୁଥିବା ଶାଢ଼ୀ କୁଞ୍ଚକୁ ଓ କାନି ଉହାଡ଼ରୁ ଦେଖା ଯାଉଥିବା ଖୋଲା ପିଠିକୁ । ପଲ୍ଲବିନୀ କାହିଁ !

ବୋଉ ଲେଖିଛି ଗୀତାର ବାହାଘରର ଆସନ୍ତା ଫଗୁଣରେ । ଟଙ୍କା ଦରକାର । ଗାଁରେ ଘରଟା ଭାଙ୍ଗିଯାଇଥିଲା ଗଲା ବାତ୍ୟାରେ, ତିଆରି ହୋଇ ପାରିନାହିଁ । ବୋଉ ଲେଖିଛି ଠାକୁର କଲେ ସେ ବୋହୂ ମୁହଁ ଦେଖି ଆଖି ବୁଜିବ । ଏତେ ଲୋକଙ୍କ ପାଇଁ ଭାବିବାକୁ ହେବ ତାକୁ । ବୋଉ ଥରେ ହେଲେ ଭାବୁଛି ସେ କାହିଁକି ବଞ୍ଚିଛି ? କେଉଁଥିରେ ତା'ର ଦୁଃଖର କ୍ଷୋଭର ଅବସାନ ହେବ ? କେହି ଥରେ ଭାବିଛନ୍ତି କେଉଁ ନିଷ୍ଠୁର କାରୁଣ୍ୟରେ ଦେହ ମନ ତାର ବିଚୂର୍ଣ୍ଣ ହୋଇଯାଇଛି, ମରିଯାଇଛି । କେହି ଥରେ ଭାବିଛନ୍ତି ପଲ୍ଲବିନୀ କଥା ?

ପହଞ୍ଚିଥିବା ବସ୍‌ରୁ ଆଟାଚିଟିଏ ଧରି ଓହ୍ଲାଇଲେ ଜଣେ ମହିଳା । ପଛ ପାଖରୁ ଚିହ୍ନା ଚିହ୍ନା ମନେହେଉଛି । କିଛି ନଭାବି ମନୋଜ ଉଠିପଡ଼ିଲା ।

—ସୁଲେଖା !

ସୁଲେଖା ବୁଲି ଚାହିଁଲା—ଆରେ ଆପଣ !

—ତମେ କୁଆଡ଼େ ?

—ନାନୀ ଘରକୁ ଆସିଥିଲି । ଭିଣେଇ ଏଠି ଡାକ୍ତର । ଭବାନୀ ଶଙ୍କର ପାଣିଗ୍ରାହୀ । ଚିହ୍ନିଥିବା ଭଳି ମୁଣ୍ଡ ଟୁଙ୍ଗାରି ମନୋଜ କହିଲା—ଆଚ୍ଛା, ଆଚ୍ଛା । ଆଉ ସବୁ ଖବର ଭଲ ? ଘର ଦେଖିଛ ତ ? ଅସୁବିଧା ହେବନି କିଛି ?

—ନା, ଆଗରୁ ଆସିଥିଲି ଥରେ । ଯାଏ ।

ସୁଲେଖା ମୁହଁରେ ବିଶେଷତ୍ୱ କିଛି ନାହିଁ । ସରୁ ମୁହଁ, ଟେଲି ଆଖି, ହ୍ୱାଇଟ ପିଲ୍ ପେନ୍‌ସିଲ୍‌ରେ ଗାରଟାଣି ଛେପଦେଇ ଲିଭାଇଲା ପରି ଆବୁରୁ ଜାବୁରୁ ଭ୍ରୂଲତା । ରିକ୍‌ସାରେ ଦୂରେଇ ଯାଉଥିବା ସୁଲେଖା ଯେ କୌଣସି ନାରୀପରି । ଚିହ୍ନାମୁହଁ ବୋଲି ହଠାତ୍ ଯାହା ଉଚ୍ଚାଟ ଲାଗୁଛି । ଭଲ ସ୍ୱାସ୍ଥ୍ୟ ଥିଲା ତା କଲେଜ ଦିନରେ । ପିଲାଦିନେ ସାଙ୍ଗମେଳରେ ଖେଳିଲାବେଳେ ଚଞ୍ଚଳ, ଦୁଷ୍ଟ ଥିଲା । ମନୋଜ ଏମ୍. ଏ. ପାସ୍ କଲାପରେ ନୂଆ ଚାକିରି ପାଇଥାଏ, ସୁଲେଖା ଘରୁ ବିବାହ ପ୍ରସ୍ତାବ ଆସିଥିଲା । ମନୋଜର ସାମ୍ନାରେ ସେତେବେଳେ ସ୍ୱପ୍ନ ଅନେକ—ଅନେକ ସମ୍ଭାବିତ ଚାକିରି । ଲେଖକର ସୁନାମ (ସତରେ ସେ

ଏସବୁରେ କେତେ ବିଶ୍ୱାସ କରୁଥିଲି !) । ତାଛଡ଼ା ବୋଧେ ବି ନାପସନ୍ଦ କଲି, ମନୋଜ ସାଙ୍ଗେ ତାର ବୟସ ତଫାତ୍ ବେଶି ହେବ ନାହିଁ ବୋଲି । ମନୋଜ ଶେଷ ପର୍ଯ୍ୟନ୍ତ ଅଧ୍ୟାପକ ବୃତ୍ତିରେ ରହିଲି । ପତ୍ରପତ୍ରିକାରେ ଗପ କବିତା ବି ଛପାଇଲି । ସୁଲେଖା କଥା ଆଉ ମନକୁ ଆସିନି ।

ପରିଚିତ ଅପରିଚ୍ଛନ୍ନ ହୋଟେଲ୍ । କାନ୍ଥପାଖ ଟେବୁଲ୍‌ରେ ଗଣନାଥ ବାବୁ ବସି ଖାଉଛନ୍ତି । ପଡ଼ୋଶୀ । ମୁହଁ ଉଠାଇ ଭର୍ତ୍ତି ପାଟିରେ ଡାକିଲେ— ଆରେ ମନୋଜବାବୁ, ଆସନ୍ତୁ ଆସନ୍ତୁ । ସତେ ଯେମିତି ଏଇଟା ତାଙ୍କ ଘର । ମନୋଜବାବୁ ଗଲେ ଏବଂ ତାଙ୍କ ସାମ୍ନାରେ ବସିଲେ । ଗଣନାଥବାବୁ ମାଂସର ନଳୀ ହାଡ଼ ଖଣ୍ଡେ ଧରି ସ୍କୁଲମାଷ୍ଟର୍ ରୁଲ୍‌ବାଡ଼ି ଧରି ବୁଝାଇଲା ଭଳି କହୁଥିଲେ— ବୁଝିଲେ ନା, ପିଲାପିଲି ଯାଇଛନ୍ତି ତାଙ୍କ ମାମୁଁଘରକୁ । କ'ଣ ଆଉ କରିଯାଏ । ଏଇଠି ଖାଇବାକୁ ହେଉଛି । ତା'ପରେ ପିଲାପିଲିଙ୍କ ଅଭାବବୋଧଜନିତ ଦୁଃଖର ଲେଶମାତ୍ର ଭାବ ନ ଦେଖାଇ ସେ ହାଡ଼ଟିକୁ ବୁଲାଇ ନିରୀକ୍ଷଣ କଲେ ଓ ଚୁଚି ସଫାକଲେ । ସଫାସୁତୁରା ନଳୀ ହାଡ଼ଟିର ଶେଷାଂଶରେ କେବଳ ହଳଦିଆ ପ୍ଲାଷ୍ଟିକ୍ ଭଳି ଚମଡ଼ାର ଆସ୍ତରଣଟିଏ । ଗଣନାଥବାବୁ ଗତକାଲି କେତେ ସ୍ୱପ୍ନ କେମିତି ଶେଷ ହେଲା ଭାବୁ ନାହାନ୍ତି, ଆସନ୍ତାକାଲି ସମୟ ସବୁ କେମିତି ଖର୍ଚ୍ଚ କରିବେ ଚିନ୍ତା କରୁନାହାନ୍ତି । ଚକ୍‌ଚକ୍ ଧାରଣା ଉପରେ ଚକମାନ ଗଡ଼ିଚାଲିଛି ଠିକ୍‌କଣ ଭାବେ । ଗୋଲ୍‌ଗାଲ୍ ହାତ ପାପୁଲିରେ ଭାତରୁ ଗୁଣ୍ଡା ଉଠାଇଲେ । ତରବର କରି କ'ଣ ଗୁଡ଼ାଏ କହିଲେ ଆଜିକାଲିକା ଖାଦ୍ୟରେ ଭେଜାଲ୍ ବିଷୟରେ । ଗୁଣ୍ଡା ଭର୍ତ୍ତିକରି ପ୍ଲାଷ୍ଟିକ୍‌ରୁ ଫୁଲାଏ କାମୁଡ଼ିଲେ ।

ହୋଟେଲରୁ ବାହାରିଲାବେଳେ ପ୍ରତ୍ୟେକ ଜୀବିତ ବ୍ୟକ୍ତି ପ୍ରତି ମନୋଜର ଘୃଣା ହେଲା । ଛଳ ଛଳ ନଦୀର ନିର୍ମଳ ଜଳରେ ହାତଗୋଡ଼ ଖେଳାଇ ଉଲ୍ଲାସରେ ନିମଗ୍ନ ସମସ୍ତେ । ସେ ଏକୁଟିଆ କୂଳରେ ବସିଛି, ଶୁଖିଲାଟାରେ । ସେମାନେ ଡାକୁଛନ୍ତି— କାହିଁ ଆସୁନ ଗାଧୋଇବ । ସେ କହିଜାଣୁନି ତାକୁ ପହଁରି ଆସୁନି ବୋଲି ।

ଘଣ୍ଟାଏ ପରେ । ଗ୍ଲାସ୍ ମୁହଁକୁ ନ ଉଠାଇ ବିତୃଷ୍ଣ ଗଳାରେ ମନୋଜ କହିଲା— ମନ ଭଲ ଲାଗୁନି ଆଜି । ସେଇ ଏକା ଜୀବନ କେତେ ମଣିଷ ବଞ୍ଚିବ ।

ଗୃହଆଡ଼ର ଲୋକେ ଯେମିତ ସ୍ୱଚ୍ଛ ପାଣିରେ ପହଁରୁଛନ୍ତି, ମୁଁ ଶୁଖିଲାଠାରେ ବସିଛି ପହଁରି ନ ଜାଣି ।

ସୁରେଶ, ମନୋଜର କବି ବନ୍ଧୁ, ଉତ୍ତର ଦେଲା—ଭୁଲ କହିଲୁ ! ସ୍ୱଚ୍ଛ ଜଳ ନୁହେଁ, ପଙ୍କୁଆ ଜଳରେ ବୁଡ଼ି ରହିଛନ୍ତି ସେମାନେ । ଆମେ ଶୁଖିଲାରେ ବସିଛୁ, ପହଁରି ନ ଜାଣି ନୁହେଁ, ପଙ୍କକୁ ଘୃଣା କରି ।

ସୁରେଶର ଆତ୍ମବିଶ୍ୱାସ ମନୋଜ ମନକୁ ଚହଲି ଆସିଲା । ତଥାପି ସେଇ ଗଳାରେ କହିଲା—ଲାଭ ବା କଣ ଅଧିକ !

ସୁରେଶ ଆହୁରି ଦାମ୍ଭିକ ଗଳାରେ କହିଲା—ଲାଭ କ୍ଷତିର ପ୍ରଶ୍ନ ନାହିଁ । ଯେଉଁ ଆବର୍ଜନାଗୁଡ଼ାକୁ ଥରେ ପଙ୍କ ବୋଲି ଜାଣି ଦୂରେଇ ଦେଇ ପାରିଛୁ, ତା ଭିତରେ ଜାଣି ଶୁଣି ଆଉ ପାଣିର ବାହାନା କରି ପଶିହୁଏ ନାହିଁ । ଯେଉଁ ଶୁଖିଲା ମାତ୍ର ନିୟମ ସବୁର ନିଗଡ଼ ସବୁ ଆମେ ଅସ୍ୱୀକାର କରିସାରିଛୁ, ପୁଣି ତା ଭିତରେ ପଶି ସୁଖୀ ହେବାର ହିପୋକ୍ରେସି ଆମେ କରିପାରିବା ନାହିଁ ।

ମନୋଜ ସନ୍ତୁଷ୍ଟ ହେଲା ଆପାତତଃ ଓ ଗ୍ଲାସ ଉଠାଇଲା । ବ୍ରଜ ଏପାଏକେ ଚୁପ୍ ଥିଲା, ସଶବ୍ଦେ ଗ୍ଲାସ ଥୋଇ ଦୃପ୍ତ ଭଙ୍ଗୀରେ ଗୁହାଁଲା ମନୋଜ ଆଡ଼େ । (ବ୍ରଜ ଆଜି ପ୍ରଥମ ପିଉଛି—ପିଇସାରିଛି ସଦ୍ୟ—ମୁହଁରେ ତେଣୁ ଦୁନିଆଁକୁ ବେଖାତିର କରି ଧାପେ ଉଚ୍ଚକୁ ଉଠିଯାଇଥିବାର ଦମ୍ଭ) କହିଲା ଭାଇ ଆଜି ଦିନକ ସାହିତ୍ୟ ଚର୍ଚ୍ଚା ବନ୍ଦକର । ଆଜି ମନୋଜବାବୁ ତାଙ୍କ ପ୍ରେମିକା ବିଷୟରେ କିଛି କହନ୍ତୁ । ଇମାଜିନେସନ୍ ନୁହେଁ । ଖାଣ୍ଟି ଅଭିଜ୍ଞତାରୁ କିଛି ।

ମନୋଜର ମୁହଁରେ ଏଥର ହାଲୁକା ହସ । —ଯାହା ସଙ୍ଗେ ମୋର ଶେଷଥର ବାହାଘର ପଡ଼ିଥିଲା, ତା କଥା କିଛି କହିବି ?

— ଆରେ ନାଃ । ଖୋଦ୍ ତମ ପ୍ରେମିକା କଥା କହ । ଯାହାକୁ ନେଇ ଏତେ ଲେଖା ଲେଖି କର, ସମାଜର ନାକଆଖିକୁ ଖାତିର ନ କରି । ଆଃ— ତମ ଲେଖା—ତରଳ ଲାଭା ! ସେଇ ପଲ୍ଲବିନୀ ଦେବୀଙ୍କ କଥା କହ ।

ମନୋଜ ଗ୍ଲାସ୍‌କୁ ଚାହିଁ କିଛି ସମୟ ଗମ୍ଭୀର ରହିଲା ଓ ଧୀରେ ଧୀରେ କହିଲା—ମୋର ସେକେଣ୍ଡ୍ ଇଅର୍ ବର୍ଷ—ହୋଲି ଖେଳ ଦିନ ଆମେ ରାସ୍ତାରେ ଦଳେ ପିଲା ଯାଉଥାଉ । ସାମ୍ନାରେ···ତିନିଚାରିଜଣ ଝିଅ···ସ୍କୁଲ୍ ହୁଏତ ଛୁଟି ନ ଥିବ—ଏତେ ବିଚିତ୍ର ରଙ୍ଗ ମାଖି ବି ଦିଶୁଥାନ୍ତି ହାଲ୍‌କା ପବନରେ ଦୋହଲୁଥିବା ଫୁଲଗୁଡ଼ିଏ ଭଳି । ଆମ ଭିତରେ ବାଜି ହେଲା—ମୁଁ କହିଲି ମଝିର ଡେଙ୍ଗା ଝିଅଟିକୁ ଟାଣିଆଣି ରଙ୍ଗ ଲଗାଇଦେବି । ତା ପରେ ··ଏକୁଟିଆ ଆଗେଇଲି ଓ ଟାଣିଆଣିଲି ଝିଅଟିକୁ, ଚାପିଧରିଲି ଛାତି ଉପରେ ମୁହୂର୍ତ୍ତକ ପାଇଁ·····

—ତା' ପରେ ?

ବନ୍ଧୁମାନଙ୍କ ଉଦ୍‌ଗ୍ରୀବ ଆଖିକୁ ଚାହିଁ ମନୋଜ କହିଲା—କିଛି ନୁହେଁ । ଝିଅଟିକୁ ତା'ପରେ ମୁଁ ଆଉ ଦେଖିନି ।

—ହେଃ ! ବୋର୍—

ଆଉ ଥରେ ସୁରମା ବୋଲି ଜଣେ ଗୋରା ଝିଅକୁ ପ୍ରେମପତ୍ର ଲେଖିଥିଲି । ସେ ଉତ୍ତର ଦେଲାନି । ପରଦିନ ମୋ ଆଡ଼େ ଚାହିଁଲାନି ସୁଦ୍ଧା ।

—ଧେତ୍ ! ବନ୍ଦକର ଏ ସବୁ ପାଣିଚିଆ ପିଲାଳିଆ କଥା । କିଛି ସଲିଡ୍ କଥା କହ । ପଲ୍ଲବିନୀ କଥା ।

ମନୋଜ ଉଠିଲା । ପଲ୍ଲବିନୀ ନାମଧେୟା କୌଣସି ନାରୀଜନିତ ଅଭିଜ୍ଞତା ତାର ମନେ ପଡ଼ୁ ନ ଥିଲା ।

ରାତିର ରାସ୍ତାରେ ଧୀରେ ଧୀରେ ଚାଲୁଥିଲା ସେ । ଥଣ୍ଡା ପବନରେ ମୁଣ୍ଡଟା ହାଲୁକା ଲାଗୁଥିଲା । ରାସ୍ତାରେ ଲୋକ କେହି ନାହାନ୍ତି ପ୍ରାୟ । ମଝିରେ ମଝିରେ ଗୋଟେ ଦି'ଟା ରିକ୍‌ସାବାଲା ଘଣ୍ଟି ବଜେଇ ଗୀତ ଗାଇ ଉଭାନ୍ ହୋଇ ଯାଉଛନ୍ତି । ଖୋଲା ଚାରିଆଡ଼ ଓ ଆକାଶକୁ ଚାହିଁ ମନୋଜର ମନେହେଲା—କିମ୍ବା ସେ ବାହାନା କଲା ମନେ ମନେ—ସତେକି ସେ ସବୁରକମ ଲୁହା-ଶିକୁଳିରୁ ମୁକ୍ତ । କୋଉଥିକୁ ତାର ଡର ବା ଦୁଃଖ ? କିଛିକ୍ଷଣ ଆଗରୁ ତ ତା

ବାପା ମାଙ୍କ ଧାର୍ମିକ ସମାଜର ଜୀବନସୂତ୍ରକୁ ବେଖାତିର କରିଚ, ମନ ଚିଳିଚ। ଘରକୁ ଯାଇ ବି ଆଜି କେମିତି ଲାଗିବ ଯାହାଚାତା କବିତା ପଲ୍ଲବୀଙ୍କୁ ନେଇ। ମୋଟାଲେନ୍‌ସ ଚଷମାଗଳା ପ୍ରୌଢ଼ମାନେ ଓ ବିଗ୍ରହ ବାଧ ସନ୍ତାନ ଯୁବକ ଯୁବତୀ ଯେତେକ ଶିହରି ଉଠିବେ ତା କବିତା ପଢ଼ି।

ଗଞ୍ଜର ମନତଳୁ ହାଲୁକା ବୁଦ୍ ବୁଦ୍‌ଟିଏ ଭଳି ଉବୁକି ଆସିଲା କଥାଟିଏ —ହେଲେ ପଲ୍ଲବୀ କାହିଁ ? କାହିଁକି ଏ ଶୃଙ୍ଖଳାଭଙ୍ଗର ଆଡ଼ମ୍ବର ? କେଉଁ ଶୃଙ୍ଖଳାଟା ବା ଭାଙ୍ଗିଚ ସେ ? କେଉଁଥିପାଇଁ ? କଷ୍ଟ ନ ପାଇବାର ହାହାକାର ଆଜି ମୁକ୍ତ କଣ ସମାନ କଥା ? ଏ ଶୂନ୍ୟତା ଭିତରେ ପଲ୍ଲବୀଙ୍କୁ ଖୋଜିବାର ସୁଯୋଗ ଭଲ ସେ ପାଇଚ ?

କ୍ଲାନ୍ତ ପାଦ ଘୋଷାରି ମନୋଜ ବୁଝୁଥିଲା—ପାଦରେ ବନ୍ଧା ଭାରୀ ଶିକୁଳି ସେ ଘୋଷାରି ଚାଲିଛି। ଶିକୁଳି କଥା ସେ କ୍ରମାଗତ ଭାବୁଚ, ତେଣୁ ବେଶି କଷ୍ଟ ହେଉଚ। ହେଲେ ଏହାକୁ ସେ ଭାଙ୍ଗି ପାରିବ ନାହିଁ ଜୀବନ ସାରା। ଏମିତି ଟାଣିବାକୁ ହେବ ପାଦ ସାଙ୍ଗେ, ଦୁଇ ଗୋଇଠି ଯୋଡ଼ି ପ୍ଲେଟ ପାନ୍ଥଶାଳା ପକେଇବାକୁ ହେବ। କେଉଁ ଓଜନ ସବୁ ଲଦି ହେଇ ତା କାନ୍ଧ ଦୀର୍ଘଟା ଲଇଁ ଯାଇଚ, ତାକୁ ଅଣନିଃଶ୍ୱାସୀ କରିଦେଉଚ ସେ ଜାଣେ। ତେଣୁ ସେ ଭାବୁଚ ସଳଖି ଠିଆହେବାକୁ ସେ ହକ୍‌ଦାର୍, ଯେହେତୁ ଏ ଓଜନ ସେ ଜନ୍ମରୁ ପାଇ ନ ଥିଲା। ଏବେ ସେ ବୁଝୁଚ, ଏତକ ବି କାନ୍ଧରେ ବୋହି ଚାଲିବାକୁ ହେବ ସବୁଦିନ। ଓଜନ ନଥିବାର କଳ୍ପନା ସୁଖମୟ ଯିନା, ଏ ଭାର ହଟେଇ ଦେବାର ଶକ୍ତି, ସାମର୍ଥ୍ୟ ତାର କାହିଁ ? ସହି ନ ପାରିବାର ଦୁର୍ବଳତା, କାତରତାକୁ ସେ ବିଦ୍ରୋହର ଆଖ୍ୟା ଦେଉଚ।

ବ୍ୟର୍ଥ ଆକାଂକ୍ଷାରେ ସବୁରି ଅଜଣାତରେ ନିଜ ମନକୁ ଗୁବୁକ୍ ମାରି ଯାବତ୍ ଅନ୍ଧାର ଗଳି କନ୍ଦରରେ ବୋହି ହିଣ୍ଟାଇ ଆତ୍ମପ୍ରସାଦ ଲଭୁଚ ସେ ସବୁ ଶୃଙ୍ଖଳା ଭାଙ୍ଗି ମୁକ୍ତ ହେଇଚ ବୋଲି। ଏ ମୁକ୍ତିର ଆନନ୍ଦ ନୁହେଁ। କବାଟ ଦୁଆର ବନ୍ଦକରି ନିଜକୁ ଠକିବା ପାଇଁ ଏ ସାମୟିକ ନିଶା।

ଲମ୍ବା ଦୀର୍ଘଶ୍ୱାସ ଛାଡ଼ି ମନୋଜ ଭାବିଲା ହେଉ। ଯାଏ ଆସେ ନାହିଁ। ମୁକ୍ତିର ଗୋଟାଏ ପ୍ରତିଛବି ତ ମିଳୁଚ କିଛିକ୍ଷଣ। ବାହାନା ତ କରି ହେଉଛି ଛଇନିଶାରେ।

ଆଗରେ ବସ୍‌ଷ୍ଟାଣ୍ଡ । ସୁଚଲେଖା ଆସିଥିଲା ଆଜ । କିଛି ସମୟ ପୁଣି ସେ ସିମେଣ୍ଟ ବେଞ୍ଚରେ ବସାଯାଇପାରେ ।

ଅଳ୍ପଦୂରରେ ରିକ୍‌ସାପାଖେ ନାରୀ ମୂର୍ତ୍ତିଟିଏ ଦେଖି ଆଶ୍ଚର୍ଯ୍ୟ ହେଲା ସେ । ଏତ ସୁଚଲେଖା—ଏତେ ରାତିରେ !

—ସୁଚଲେଖା—ତମେ ପୁଣି ଏଠି ଯେ ?

ରିକ୍‌ସାରେ ସୁଚଲେଖାର ସୁଟ୍‌କେଶ । ବଂଧୁତାରେ କାକୁସ୍ଥ ମୁହଁ, ଥରିଲା ଗଳାରେ ସୁଚଲେଖା ଅନୁଯୋଗ କଲାଭଳି କହିଲା—କ'ଣ କରିବ କହନ୍ତୁ ନା ! ନାନୀକୁ ଚିଠି ଲେଖି ଆସିଥିଲି, ଆମି ଦେଖେ ତା' ଘରେ ତାଲାବନ୍ଦ । କେତେବେଳପରେ ପଡ଼ଶା ଘରକୁ ପଚାରି ବୁଝିଲାବେଳକୁ ସେ ତା ଶାଶୁ ଘରକୁ ଯାଇଛି—ମାନେ ତା ଘର ସମସ୍ତେ । ତା ପରେ ସେଠୁ ଫେରିବାକୁ ଆସି ବସ୍‌ଷ୍ଟାଣ୍ଡରେ ବସିଛି । ବସ୍ ତ ମିଳିଲାନି, ଟାକ୍‌ସି ଗାଡ଼ି ବି ନାହିଁ ।

ସେତେବେଳକୁ ସୁଚଲେଖା ପୁରା କାନ୍ଦକାନ୍ଦ ହୋଇ ଯାଇଥିଲା । ଅଚ୍ଛା ମୁଷ୍କିଲ୍‌କଥା ! ପଡ଼ଶାଘର କାହାକୁ ବି ସେ ଅନୁରୋଧ କରି ପାରିଲାନି ରାତିଟା ରହିଯିବାପାଇଁ ! ଏକୁଟିଆ ସେ ତ ହୋଟେଲ୍‌କୁ ଯିବା କଥା ନୁହେଁ । ଦୁଇହାତ ପକେଟରେ ପୂରାଇ ଭ୍ରୂକୁଞ୍ଚେଇ କୋଉଆଡ଼କୁ ଅନାଇ ମନୋଜ କହିଲା—ମୋର ଜଣେ ଭଲ ସାଙ୍ଗ ଏଠି ଫେମିଲି ନେଇ ରହୁଛି । କହିବ ତ ଆଜ ରାତିଟା ତାଙ୍କ ଘରେ ରହିଯାଇପାର ।

ଆଶ୍ୱା ପାଇଲା ପରି ସୁଚଲେଖା କହିଲା—ସେମାନେ କିଛି ମନେ କରିବେନି ତ !

ରିକ୍‌ସାରେ ସାମ୍ନାକୋଣରେ ମନୋଜ ପାଖେ ସୁଚଲେଖା ବସିଥିଲା । ମନୋଜ କଥାବାର୍ତ୍ତା ଆରମ୍ଭ କରିବାପାଇଁ କହିଲା—ତମକୁ ଶେଷ ଦେଖିଥିଲି ତମେ ଓମେନ୍‌ସ କଲେଜରେ ପଢ଼ୁଥିଲାବେଳେ ।

ଦୁହିଁଙ୍କର ମନେଥିଲା ଶେଷ ଦେଖା । ତା'ପରେ ପରେ ବୋଧହୁଏ ବାହାଘର ପ୍ରସଙ୍ଗ ଉଠିଲା । ସୁଚଲେଖା ଧୀର ଗଳାରେ ଉତ୍ତର ଦେଲା—ଯେଉଁଠି ତ କାମ କରୁଛନ୍ତି ନବ । କେବେବାରେଟିଏ ମନ୍ଦୁରେଷ୍ଟ ଅଛି ।

ମନୋଜ ଶୁଣିଥିଲା ଏଭିତରେ ସୁଲେଖାର ବାପାଙ୍କର ହୃଦ୍‌ରୋଗରେ ମୃତ୍ୟୁ ହୋଇଛି । ସୁଲେଖା ଚାକିରି କରି ଘରର ଦାୟିତ୍ୱ ତୁଲାଉଛି ।

ଦୁହେଁ ଓହ୍ଲାଇଲେ । ଝାପ୍‌ସା ଆଲୋକରେ ସୁଲେଖା ନେମ୍‌ପ୍ଲେଟ ପଢ଼ିବାକୁ ଚେଷ୍ଟା କରୁଥିଲା । ମନୋଜ ପକେଟରୁ ଚାବି କାଢ଼ି ତାଲା ଖୋଲିଲା ।

—ଆପଣଙ୍କ ପାଖେ ଚାବି ଯେ ?

—ମୁଁ ତ ଏଠି ରହେ ଗୋଟିଏ ରୁମ୍ ନେଇ, ସନ୍ଦେହ କଲ ନା କଣ ?

ନାଃ, ଅପ୍ରସ୍ତୁତ ହସ ହସି ସୁଲେଖା ପୁଣି କହିଲା—ପିଲାଦିନୁ ଜାଣେ ଆପଣଙ୍କୁ ।

ମନୋଜ ହସିଲା ମନେ ମନେ । ପିଲାଦିନୁ କଣ ଏଇ ମନଟିକୁ ଚିହ୍ନି ପାରିଚି ସୁଲେଖା ? ରୁମ୍‌ରେ ଆଲୁଅ ଜଳାଇ ସୁଲେଖାକୁ ବସିବା ପାଇଁ ଚେଆର୍ ଦେଉ ଦେଉ ମନୋଜ କହିଲା—ତମର ମନେଅଛି ସୁଲେଖା, ତମ ଘର ପଛପଟ ଇଟାଗଦା—ଅଧାତିଆରି ଘର ପାଖେ ଆମେ ଲୁଚକାଳି ଖେଳୁ···

ସୁଲେଖା ମୁଣ୍ଡ ଟୁଙ୍ଗାରି ଏଥର ଆତ୍ମୀୟ ହସ ହସି କହିଲା—ତମେ ଥରେ ପଡ଼ିଯାଇଥିଲ ସେ କୁଣ୍ଡଟା ଭିତରେ—ବାହାଦୁରୀ ଦେଖେଇବାକୁ ଯାଇ ଡେଇଁଥିଲ ଏପାଖରୁ ସେପାଖ—ମନେ ଅଛି ?

ଦୁହେଁ ହସିଲେ । ଆପଣରୁ ପୁରୁଣା ତୁମେକୁ ଫେରିଆସିଥିବା ସୁଲେଖା ପାଖେ ସହଜ ହୋଇ ମନୋଜ ନିଜ ବିଛଣା ଓ ଟେବୁଲ ସଜାଡ଼ୁ ସଜାଡ଼ୁ ଆହୁରି ସ୍ମୃତି ଚାରଣ କଲା ।

ସୁଲେଖା ଭିଡ଼ମୋଡ଼ ହେଲା । ହାତ ଘଣ୍ଟାକୁ ଚାହିଁ ପଚାରିଲା—କେତେବେଳେ ଆସିବେ ତମ ବନ୍ଧୁଙ୍କ ପରିବାର ?

—ସେକେଣ୍ଡ୍ ସୋ' ତ ସରି ନ ଥିବ ଏ ଯାଏଁ ।

—ଓ !

ଅପ୍ରତିଭ ମୀରବତା । ସୁଲେଖା କାନ୍ଥର ଛବିମାନଙ୍କୁ ଚାହିଁ ମନର ଉଦ୍‌ବେଗକୁ ଲଗାମ ଲଗାଉଥିଲା । ମନୋଜ ଶାନ୍ତ ଆଖିରେ ସୁଲେଖାକୁ ନିରେଖୁଥିଲା ।

—ସୁଲେଖା ! ତମ ଆଖିତଳ କଳା ପଡ଼ି ଯାଇଛି । ତମେ ବହୁତ ଝିଉଡ଼ିଯାଇଚ ।

ସୁଲେଖା ଅପ୍ରାସଙ୍ଗିକ କଥାରେ ବିସ୍ମିତ ହେଲା, ବିବ୍ରତ ବା ଲଜ୍ଜିତ ହେଲାନାହିଁ । ଦୀର୍ଘଶ୍ୱାସ ଛାଡ଼ି ଚଟାଣକୁ ଚାହିଁଲା । ସୁଲେଖା ଲାଜ କରୁନାହିଁ ବିଶେଷ । ଆଖିତଳେ ଗାଢ଼ ବୃତ୍ତାର୍ଦ୍ଧ—ଭଗ୍ନ ସ୍ୱାସ୍ଥ୍ୟର, ବର୍ଦ୍ଧିଷ୍ଣୁ ବୟସର ଦାୟିତ୍ୱର, ହୋଇ ପାରିଥାଏ ବି ହତାଶାର । ସୁଲେଖା ବିବାହ କରିନାହିଁ ଏଯାକେ । କରିପାରିଥାନ୍ତା ମନୋଜକୁ ହୁଏତ । ପ୍ରେମ କରିଚି କେବେ ? ନା ବୋଧହୁଏ । କାରଣ ସେ ପିଲାଟିଦିନୁ ଶାନ୍ତ ଶିଷ୍ଟ ବାଧ୍ୟ ଝିଅ : ତା ବାପା ମରିଯାଇଚନ୍ତି ଓ ସେ ବାହା ହୋଇ ପାରିନି । କାହିଁକି ସେ ବାରମ୍ବାର ହାତ-ଘଣ୍ଟାକୁ ଚାହୁଁଚି ? ଶୀଘ୍ର ନିରିପତ୍ତା ଓ ନିଦ୍ରା ଦରକାର : ତା' ତ ମିଳୁଚି ସବୁଦିନେ । କଣ ଛତ ଆଜି ଦିନକ ବ୍ୟତିକ୍ରମ ହେଲେ । ବ୍ୟତିକ୍ରମ କାହିଁକି ଚାହୁଁନାହିଁ ସୁଲେଖା । କାଲି ସକାଳ ବସ୍‌ରେ ସେ ଘରକୁ ଫେରିଯିବ । କଲେଜ ଯିବ । ଲେବୋରେଟେରୀ ଏକ୍ସିପେରିମେଣ୍ଟ୍ । ଘରକୁ ଫେରିବ କଲେଜରୁ । ଅଖଣ୍ଡ ନିରାପତ୍ତା । ଶାନ୍ତଶିଷ୍ଟ ଝିଅ । ଆଉ କଣ୍ଟା ଲୋଡ଼ାନାହିଁ : ତମ ମନରେ ଆଶା ଆକାଂକ୍ଷା ହୁଏ କି ସୁଲେଖା— ସ୍ୱାମୀ, ଘର ସଂସାରର ? ପ୍ରେମର ? ଅନ୍ତତଃ କ୍ଷଣିକ ରୋମାଞ୍ଚର ?

ସୁଲେଖା ପଚାରିଲା--କେତେବେଳେ ଆସିବେ ସେମାନେ ?

— ହୁଏତ ଆସିବେ ନାହିଁ ।

—କଣ କହୁଚନ୍ତି ?

ମନୋଜ ନିର୍ଲିପ୍ତ କଣ୍ଠରେ ମିଛ କହିଲା—ଠିକ୍ ବୁଝି ପାରୁନି । କୋଉଠି ରହିଗଲେ ହୁଏତ । ଏମିତି କେତେ ଦିନେ ସେମାନେ ରହିଯାଆନ୍ତି ।

—ତାହେଲେ ?

—ତାହେଲେ ଆଉ କଣ ? ତମେ ଏମିତି ବ୍ୟସ୍ତ ହେଇ ପଡ଼ୁଚ କାହିଁକି ସୁଲେଖା ?

ସୁଲେଖା କିଂକର୍ତ୍ତବ୍ୟବିମୂଢ଼ ।

—ଆଚ୍ଛା, ସୁଲେଖା । ତମର ବ୍ୟତିକ୍ରମ କଥା କେବେ ମନକୁ ଆସେ ନାଇଁ ?

ସୁଲେଖାର ବ୍ୟଥିତ ଆଖି । ଯେତିକି ସ୍ୱପ୍ନ ସେ ଦେଖିଥିଲା, ଆଦ୍ୟ ଯୌବନରେ—ନିଜ ଆବଦ୍ଧାଓ୍ୱା ପରିବେଶ ନେଇ ପ୍ରତ୍ୟେକ ସାଧାରଣ ସୁସ୍ଥ ଜୀବନଟିଏ ପାଇଁ ଯେତିକି ସ୍ୱପ୍ନ ଦେଖନ୍ତି । ଯାଉଁ ଯାଉଁ ପ୍ରାପ୍ତ ଆସି ଜୁଟେ ପ୍ରତ୍ୟେକଙ୍କ ଜୀବନରେ—ଆଉ ଯେତେ ଆବହମାନ କାଳରୁ ଘଟି ଆସୁଥିବା ଘଟଣା ହେଲେ ବି ଜୀବନରେ ରଙ୍ଗ ଓ ନୂତନତା ଆଣେ—ସେତିକି ବି ସେ ପାଇନାହିଁ । ପାଇବାର ଆଶା ବି ଆଉ ରଖିନାହିଁ ପ୍ରାପ୍ତ । ଆଜକାଲି ନିନ୍ଦ ଆସୁନଥିବା ଆଖିପତା ତଳେ ସେ କେତେଥର କାମନା କରିଛି କିଛି ବ୍ୟତିକ୍ରମ ଭଲ ହଠାତ୍ ବାହରେ ଆସି ଯାଆନ୍ତା । ସ୍ୱେଚ୍ଛାକୃତ ଭାବେ ଅବାଟରେ ପାଦେ ଦ'ପାଦ ଆଗେଇ ଯିବାପାଇଁ ତାର ତ ବଳ ନାହିଁ; କିନ୍ତୁ ଆଜିର ଏ ବ୍ୟତିକ୍ରମ ବିବ୍ରତ ଲାଗୁଚି, ଭୟ ଲାଗୁଚି । ଏ ଧରଣର ବ୍ୟତିକ୍ରମ ପାଇଁ ତାର ସାହସ ନାହିଁ ।

ସୁଲେଖା ଉଠି ଠିଆହେଲା—ମୁଁ ବରଂ ଚାଲିଯାଏ । ଲୋକେ ଜାଣିଲେ···

—କୁଆଡ଼େ ଯିବ ଏତେ ରାତିରେ ? ମୁଁ ଭିତର ବାରଣ୍ଡାରେ ଶୋଉଚି, ତମେ ଏଇଠି ଶୋଇଯାଅ ।

—ନା ନା, ମୁଁ ତା ହେଲେ ବରଂ—ବରଂ କିଚେନ୍‌ରେ ଶୋଇଯିବି—

— ତା କେମିତି ହେବ······

ଦେଖ ସୁଲେଖା, କାନ୍ଦ ନାଇଁ, ଶୁଣ । ଗୋଟାଏ ଘରେ ରହି ନିଜକୁ ଭୁଲେଇବା ପାଇଁ ମୁଁ ବାରଣ୍ଡାରେ ବା ତୁମେ କିଚେନ୍‌ରେ ଶୋଇବାର କିଛି ମାନେ ନାହିଁ । ଏଇଠି ଶୋଇବା । ମତେ ସନ୍ଦେହ କରନାଇଁ । ଭଗବାନଙ୍କ ନାମ ନେଇ କହୁଚି······

ଯୋ'ର୍ ।

ମନୋଜ ଆଖି ଖୋଲିଲା । ତାର ବାହୁ ବନ୍ଧନରେ ଶୋଇଚି ନିଶ୍ଚିନ୍ତ ସୁଲେଖା । ଗତ ରାତିର ଅନ୍ଧାରସବୁ ଏବେ ବି ଅନ୍ଧସନ୍ଧିରେ ପଶିଛନ୍ତି, ଆଖି ବୁଜିଲେ ଧସେଇ ଆସୁଛନ୍ତି । ସକାଳ ଆସୁଛି ।

ହଠାତ୍ ମନୋଜ ଉଠିବସିଲା । ସକାଳ ଆସୁଛି ପୁଣି । ସକାଳ । ଗତକାଲିର ଓ ଆସନ୍ତା କାଲିର ସକାଳ । ଦାନ୍ତଘଷା, ଖବରକାଗଜ ପଢ଼ା, କଲେଜ କ୍ଲାସ, ଜଗନ୍ନାଥ ବାବୁ—ସମସ୍ତଙ୍କୁ ସାମ୍ନା କରିବାକୁ ହେବ । ପାଖରେ ସୁଲେଖା !

ଗତରାତିର ବିଛଣାରେ ପୁଣି ଥରେ ମନୋଜ ଶୋଇପଡ଼ିଲା । ସୁଲେଖାର କୋମଳ ଦେହରେ ମୁହଁ ଚାପି ଆଉ କିଛି ଦେଖିଲାନାହିଁ । ଆଉ ଡାକିଲା—ପଲ୍ଲବନୀ ! ପଲ୍ଲବନୀ !

ସୁଲେଖା ଆଖି ଖୋଲିଲା । —କାହାକୁ ଡାକୁଚ ? କିଏ ପଲ୍ଲବନୀ ? —ତମେ । ତମେ ମୋର ପଲ୍ଲବନୀ । ସବୁଦିନେ ତମକୁ ମୁଁ ଏଇ ନାଆଁରେ ଡାକିଆସୁଚି । ମନେ ମନେ । ପିଲାଦିନୁ ।

ସୁଲେଖା ଆଉଥରେ ଆଖିଖୋଲି ମନୋଜଆଡ଼େ ଚାହିଁଲା । ପୁଣି ଆଖି ବୁଜିଲା ଓଠରେ ଅଳ୍ପ ହସ ନେଇ । ଦରକାର ନାହିଁ ମନୋଜର ମୁହଁ ଦେଖିବା । ନ ଦିଶୁ । ଅଧା ନିଦ ଭିତରେ ପୁଣିଥରେ ହଜି ଯାଉଁ ଯାଉଁ ହଠାତ୍ ପିଲାଦିନ ଗଣିତ ମାଷ୍ଟରଙ୍କ ଧମକରେ ସୁଲେଖା ଚମକି ଉଠିଲା । କିଛି ନୁହେଁ—ରାସ୍ତାରେ କାହାର ପାଟି ଶୁଭୁଚି । ଦିନ ବଢ଼ି ଆସୁଛି । ବନ୍ଦ ଆଖିପତା ଭିତରକୁ ବି ଆଲୁଅ ଠେଲି ପଶୁଛି । ଗତ ରାତି ଅନ୍ଧାରରେ ତରଳି ଯାଇଥିବା ଟେବୁଲ ଚେୟାର୍ କାନ୍ଥ ଏବେ ପୁଣି ଜନ୍ଦା ହୋଇ ମାଡ଼ି ମାଡ଼ି ପଡ଼ୁଛନ୍ତି । ପାଖକୁ ଲାଗିଆସି ସୁଲେଖା ପଚାରିଲା—କେବେ ଆମ ବାହାଘର ହେବ ମନୋଜ ।

ବହୁବାର ପଢ଼ିଥିବା ବାକ୍ୟଟି ପୁରୁଣା ସୁର ଭଳି ଦୋହରାଇଲା ମନୋଜ—

—ବାହାଘର କ'ଣ ବାକି ଅଛି ପଲ୍ଲବନୀ !

—ତଥାପି । ସାମାଜିକ ସ୍ୱୀକୃତି ତ ଦରକାର ।

— ତମେ ଯେବେ କହିବ ।

ଚିତ୍‌ହୋଇ ଶୋଇ ସୁଲେଖା ଘରର ଆଡ଼କୁ ଚାହିଁଲା । ଏ ଛାତ, ଏ ଘର କୋଣ, ବାହା ଥାକ—ସମସ୍ତ ଅପରିଚିତ । ଘର ବାହାରକୁ ଜହ୍ନଆଲୁଅ ଆସିଯିବଣି । ସୁଲେଖାର ମନେପଡ଼ିଲା ତାକୁ ବସ୍ ଧରିବାକୁ ହେବ । ଫେରି-ଯିବାକୁ ଭୟ ହେଉଛି । ମନେ ହେଉଚି କବାଟ ଖୋଲିଲା ଛଣି ଆଲୁଅରେ ସେ ଜଳକା ହୋଇଯିବ, ଆଜି କାଲି ଅନ୍ଧାରର ସବୁ କିଛି ଭୟାନକ ଭୂତ ପାଲଟିବ । ଆଖିବୁଜି ମନୋଜ ଶୋଇଚି । ତାକୁ ହଲାଇଦେଇ ବ୍ୟଗ୍ର ଗଳାରେ ସୁଲେଖା କହିଲା—ମନୋଜ, ସତକହ, ମୋତେ ଭଲପାଅ ?

ଗାଢ଼ତର ଆଲିଙ୍ଗନ ।

—ନା, କହ ମୋତେ ଭଲପାଅ ବୋଲି ।

—କହିଲେ କ'ଣ ଅଧିକ ହେବ ?

—ହଁ ହେବ । କହ । କହ – ମୁଁ ତୁମକୁ ଭଲପାଏ—

କୋମଳତାର ଆହୁରି ମୁହଁ ଲୁଚାଇ ମନୋଜ ଅସ୍ପଷ୍ଟ ଆବେଗମୟ ଗଳାରେ ଘଗୁରିଲା—ପଲ୍ଲବୀ, ମୁଁ ତମକୁ ଭଲପାଏ !

# ବିଶ୍ୱର

ଶ୍ୟାମବନ୍ଧୁ ଓ ତାଙ୍କ ବାପା ସାମ୍ନା ସାମ୍ନି ଦୁଇଟି ଚଉକିରେ ବସିଥିଲେ । ଶ୍ୟାମବନ୍ଧୁ ଚନ୍ତ୍ରତ ବୟସ୍କ ପ୍ରୌଢ଼ । ତାଙ୍କ ବାପା ପୃଥୁଳକାୟ ଖୁସ୍‌ମିଜାଜୀ ବୃଦ୍ଧ । ବୃଦ୍ଧଙ୍କ ପାଖେ ହଳଆଟିଏ ବିଶ୍ୱସ୍ତ ଭଙ୍ଗୀରେ ଠିଆ ହୋଇଥାଏ ଓ ସନ୍ଧ୍ୟାର ତେରଚ୍ଛା ଖରାକୁ ଆଖି ମିଞ୍ଜି ମିଞ୍ଜି କରି ସେ ତାକୁ ବୁଝାଉଥାନ୍ତି, ସେ ମଗେଇଥିବା ଫଳଗଛ ଗୁଡ଼ା କେତୋଟି ଘର ସାମ୍ନାରେ କେଉଁଠି କେମିତି ଲଗାଯିବ । ଶ୍ୟାମବନ୍ଧୁ ଭ୍ରୂକୁଞ୍ଚଇ କିଛି ନ ଦେଖୁଥିବା ଫାଙ୍କା ଆଖିରେ ସିଧା କରି ଅନେଇଥାନ୍ତି । ତାକୁ ବୁଝାଇସାରି ବିଦା ଦେଇ ବାପା ଏଥର ପୁଅଙ୍କ ଆଡ଼କୁ ଚାହିଁ କହିଲେ—ହଁ, କଣ କହୁଥିଲୁଟି ଶ୍ୟାମ । ଶ୍ୟାମବନ୍ଧୁ ତାଙ୍କ ନିବସ୍ଥ ଭାବରୁ ବାହାରି ବାପାଙ୍କ ଉପରେ ଆଖି ନିବଦ୍ଧ କରି କହିବାକୁ ଆରମ୍ଭ କରିବା ପୂର୍ବରୁ ତାଙ୍କ ବାପା ହଳଆଟି ପଛରେ ପୁଣି ଡାଟିକଲେ—ଆରେ ଭିତର ଆଡ଼େ କହିଦେଇ ଯିବୁ ଆଉ ଟିକେ ଚା’ ପଠେଇବେ ।

ଶ୍ୟାମବନ୍ଧୁ କିଛିକ୍ଷଣ ଦୋ ଦୋ ପାଞ୍ଚ ହେଲା ଭଳି ରହିଗଲେ ଓ ତା ପରେ ହଠାତ୍ ମନ ଖୋଲି ପକାଇଲା ଭଳି କହିଗଲେ—ମୋ ପ୍ରତି ଆଜିଯାକେ ଅନେକ ଅନ୍ୟାୟ, ଅବିଚାର ହୋଇଛି ବାପା, ଆଉ ସହି ହେଉ ନାହିଁ । ଏଇ ଦେଖ—ମୁଁ ଓଡ଼ିଶା ବାହାରେ ଚାକିରି କଲି, ବାବୁଲି ଓଡ଼ିଶା ବାହାରେ ପବ୍ଲିକ୍ ସ୍କୁଲରେ ପାଠ ପଢ଼ିଲା ବୋଲି ତାକୁ ଅଣଓଡ଼ିଆ କହି ମେଡ଼ିକାଲ କଲେଜରେ ସିଟ୍ ଦେଲେ ନାହିଁ । ଅଥଚ ଯାବନ୍ତ ବଙ୍ଗାଳୀ ତେଲୁଗୁ ପିଲା ଓଡ଼ିଶାରେ ପାଠ କେବଳ ପଢ଼ିଛନ୍ତି ବୋଲି ସିଟ୍ ପାଇଲେ, ଯଦି ଓଡ଼ିଆ ପଦୁକେ କହିପାରୁ ନ ଥାନ୍ତି । ମୋର ସବୁ ସାଙ୍ଗସାଥୀ ସରକାରୀ ଠିକା ଖାଇଲେ, କାହାର

କିଛି ହେଲା ନାହିଁ । ବ୍ରଜ ତ୍ରିପାଠୀ, ରାମ ମିଶ୍ର, ଗୋପାଳ ମହାନ୍ତି—ସମସ୍ତେ ମୋର ସାଙ୍ଗ ଥିଲେ, ତୁମର ମନେଥିବ । ଯାଙ୍କ ଭିତରୁ କିଏ ଟଙ୍କା ମାରିନାହିଁ, କୋଠା ବାଡ଼େଇ ନାହିଁ ? ସସ୍‌ପେଣ୍ଡ୍ ହେଲି ମୁଁ ଏଡ଼ିକ ଟିକିଏ କଥା ପାଇଁ, ଏ ବୁଢ଼ାବେଳକୁ ?

ନିଶ୍ଚିନ୍ତ ବୃଦ୍ଧ କହିଲେ—ହେଲା, କାହିଁକି ଆଉ ଏତେ ଅଶାନ୍ତ ହେଉଛୁ ? ଆଜି ଆସିଛୁ ସହରର ଜାଗାରୁ, ମନଭରି ଟିକେ ବିଶ୍ରାମ କର, ଦେଖିବୁ ପୁଣି ଫୁର୍ତ୍ତି ଲାଗିବ । କି ବୁଢ଼ା ତୁ, ନିଜକୁ ବୁଢ଼ା ବୋଲୁଉଛୁ ? ଚାକିରି ତ ତେର୍‌ଦିନ କଲୁ, ଏଣିକି ଗୃହ ବାସରେ ମନ ଦେ । ସରକାର ଚାକିରି ଦେଇଥିଲା, ତା ମନହେଲା ଏବେ ନେଇଗଲା । ନେଉ !

କଥାଟାର ଗୋଟାଏ ଫଇସଲା କରିଦେଇଥିବା ଭଙ୍ଗୀରେ ବୃଦ୍ଧ ଚଉକିରେ ଆଉଜିଯାଇ କାହାକୁ ଖୋଜିଲାଭଳି ଏଣେ ତେଣେ ଅନେଇଲେ । ଶ୍ୟାମବନ୍ଧୁ ଆଗକୁ ଝୁଙ୍କିପଡ଼ି କହିଲେ—ସେମିତି ସହଜରେ ନେଇହେବା କଥା ନୁହେଁ ବାପା ! ତୁମେ ବୁଝୁନାହଁ । ମୋ ପ୍ରତି ସନ୍ଦେହ କରି ମତେ ସସ୍‌ପେଣ୍ଡ କରାଯାଇଛି । ମୋ ବିଷୟରେ ଇନ୍‌କ୍ୱାରି ଚାଲିଛି । ଏହା ମୋ ପାଇଁ ବହୁତ ଅପମାନ । ଘୋର ଅନ୍ୟାୟ ବି । କେଉଁ ଦୋଷ ପାଇଁ ଏ ଦେଶରେ ମୁଁ ଗୋଟିକ ପରେ ଗୋଟିଏ ଅନ୍ୟାୟ ସହୁଥିବି ?

ପାଖେ ଆଖେ କାହାକୁ ନ ଦେଖି ପୁଣି ପୁଅ ମୁହଁକୁ ଅନେଇ ବାପା କହିଲେ— ଆରେ ସବୁବେଳେ କଣ ନ୍ୟାୟରେ ଲୋକ ଦଣ୍ଡ ପାଆନ୍ତି ? ମୋ ବାପା, କେଡ଼େ ଧାର୍ମିକ ଲୋକ ଥିଲେ ! ଦୁଃଖୀ ଲୋକଟିଏ ଦେଖିଲେ ତାଙ୍କ ଆଖିରୁ ଲୁହ ବୋହିଯାଏ । ମୁଁ ସିନା ବାଡ଼େଇ କୁଡ଼େଇ ସମ୍ପତ୍ତି ଏତେ କଲି, ନ ହେଲେ ସେ ରଖିଯାଇଥିଲେ କ'ଣ ? ଦାନ ଧର୍ମରେ ପୈତ୍ରିକ ସମ୍ପତ୍ତିତକ ବି ପରା ନଷ୍ଟ କରି ପକାଇଥିଲେ । ସେ ଭଳି ଧାର୍ମିକ ଲୋକେ ତ ପୁଣି ଆଠ ବର୍ଷକାଳ ବିଛଣାରେ ସଡ଼ି ମଲେ । କେଉଁ ଦୋଷରୁ ଏତେ ଦଣ୍ଡ ଭୋଗକଲେ ସିଏ ? ତଥାପି କଣ ଜନେ ସେ ଠାକୁରଙ୍କୁ ଦୋଷ ଦେଇଛନ୍ତି ?

ଶ୍ୟାମବନ୍ଧୁ ମୁଣ୍ଡ ନାଡ଼ି କହିଲେ—ସିଏ ତ ଭାଗ୍ୟର କଥା ବାପା ! ସେଥିକି କାହାରି ହାତ ନାହିଁ । ତେବେ ଆମ ଦେଶ ଭିତରେ ଏତେ କୋର୍ଟ, କଚେରୀ ଥାଇ ଯେଉଁ ଅନ୍ୟାୟ ଅବିଚାରମାନ ଜାଣିଶୁଣି କରାଯାଉଛି, ସେଇ କଥା ମୁଁ କହୁଛି ।

ଆଉ ବିଷୟଟି ନ ସୂଚାଇଲା ଭଳି ବୁଢ଼ା କହିଲେ—ସରକାର ପାଖେ ତ ଗୁହାରି କଲୁ ବାବୁ । ଭଲ ମନ୍ଦ କଥା ସେ ବସ୍ତର କଲେକ୍ଟରଙ୍କୁ ତୋର ଯଦି ବିଶ୍ୱାସ ନ ଥିବ, ତୁ ଆଉ କଣଟା କରିପାରିବୁ କହିଲୁ ?

ଶ୍ୟାମବନ୍ଧୁ ନିରୁପାୟ ହୋଇ ଗୁମ୍ ରହିଲେ । ଏତିକିବେଳେ ସଫା ଧୋତି ପିନ୍ଧା ତିନି ଯୁବକଜଣ ହାତରେ ବ୍ୟାଗ୍ କାଗଜପତ୍ର ନେଇ ପହଞ୍ଚିଲେ । ତାଙ୍କୁ ଦେଖି ବୃଦ୍ଧଙ୍କ ମୁହଁ ଆହୁରି ପ୍ରସନ୍ନ ହେଲା, ପ୍ରୌଢ଼ଙ୍କ ମୁହଁ ଆହୁରି କଠୋର । ବୃଦ୍ଧ ଆହ୍ଲାଦରେ ଉଠିପଡ଼ି ଚଉକୀ ପାଇଁ ଡାକ ଦେଲେ । ବିନମ୍ର ଭାବେ କହିଲେ—ବସନ୍ତୁ, ବସନ୍ତୁ ! ଏମାନେ କିଏ ଜାଣିଛୁ ତ ଶ୍ୟାମ ?

ଶ୍ୟାମବନ୍ଧୁ ନିର୍ଲିପ୍ତ ଭାବେ କହିଲେ—ଜାଣିଚି । ମହାଭାରତ ସଙ୍ଘର ଉଦ୍ୟୋକ୍ତାମାନେ । ସକାଳେ ଭେଟ ହୋଇଥିଲା ।

ବୃଦ୍ଧ ଆହୁରି ଆନନ୍ଦିତ ହେଲାପରି କହିଲେ—ମହତ୍ କାମଟିଏ କରୁଛନ୍ତି ଯା' ହେଉ ଏତେଦିନକେ, ଏ ଘୋର କଳିକାଳରେ ।

—ମହତ୍ କାମ ! ଶ୍ଳେଷୋକ୍ତି ପରେ ପରେ ଶ୍ୟାମବନ୍ଧୁ ଲଗଲା ପ୍ରଶ୍ନ କଲେ— ତମେ କେତେ ଟଙ୍କା ଚାନ୍ଦା ଦେଉଛ ବାପା ?

ବାପା ଉତ୍ତର ଦେଲେ—ଅଢ଼େଇ ହଜାର ଦେବି ଭାବୁଥିଲି, ହେଲେ ଏମାନଙ୍କ ଅଳି ଭାଙ୍ଗି ପାରୁନି, ତିନିହଜାର ଦେବି ।

—ତିନି ହଜାର ! “ଅବିଶ୍ୱାସ କଲାଭଳି ପ୍ରତି ଅକ୍ଷର ଉପରେ ଜୋର୍‌ଦେଇ ଶ୍ୟାମବନ୍ଧୁ ପୁଣି ଥରେ କହିଲେ—ତିନି ହଜାର ! କ'ଣ କହୁଛ ବାପା ?

—ଆରେ ବାବୁ ଧର୍ମକର୍ମ ଆଡ଼କୁ ତ ପୁଣି ଟିକେ ନଜର ଦେଇଥିବା ଦରକାର । ଉପସ୍ଥିତ ଧାର୍ମିକ ଯୁବକମାନଙ୍କ ଆଡ଼େ ଥରେ ଅନେଇ ସାମାନ୍ୟ ଲଜ୍ଜିତ ସ୍ୱରରେ ବାପା ବୁଝାଇଲେ—ନା ଖାଲି ଖାଇପିଇ ମଉଜରେ ଜୀବନଟା ସାରିଦେବା ?

ଶ୍ୟାମବନ୍ଧୁ ସ୍ୱରକୁ ଶାନ୍ତ ରଖିବାକୁ ଚେଷ୍ଟାକରି କହିଲେ—କାହିଁକି, ସେଇ ଡନେହକାରରେ ଗରିବ ଲୋକଙ୍କ ପାଇଁ କିଛି କରୁନ । ଆମ ଗାଁ ପିଲାଏ ପାଠ ପଢ଼ି ପାରୁନାହାନ୍ତି ଅଭାବ ଯୋଗୁଁ, ପୁଣ୍ୟ କରିବ ଯଦି ସାହାଯ୍ୟ କରୁନ ସେମାନଙ୍କୁ । ଶୀତ ଦିନେ ଗୃହହୀନ ଖଣ୍ଡିଏ ଲେଖାଏ ଦେଉନ ।

ବାପା ସବୁ ବୁଝୁଥିବା ପରି ପ୍ରସନ୍ନ ହସ ହସିଲେ—ଭଗବାନ ତ ତାଙ୍କୁ ଗରିବ ଦୁଃଖୀ କରି ରଖିବାକୁ ଚାହିଁଲେ ବାବୁ ! ସ୍ୱୟଂ ନାରାୟଣ ଯେତେବେଳେ ସଂସାରର ଲୋକଙ୍କୁ ଉଦ୍ଧାରିବା ପାଇଁ ମର୍ତ୍ତ୍ୟରେ ଅବତରୁଥିଲେ, ସେତେବେଳେ କ'ଣ ଦୁଃଖୀ ରଙ୍କି ନ ଥିଲେ ? ଆମେ ଚାହିଁଲେ କ'ଣ ତାଙ୍କ ଦୁଃଖ ଘୁଞ୍ଚାଇ ଦେବା ? ନା ଆମ କାମ ଆମେ କରିବା ?

ଶ୍ୟାମବନ୍ଧୁ ହଠାତ୍ ଉତ୍କ୍ଷିପ୍ତ ସ୍ୱରରେ କହିଲେ—ତମ କାମ କର । ଯଜ୍ଞ କର, ଭୋଜଭାତ କର ।

ବୃଦ୍ଧ ହସିଲେ । ଟୋକାବେଳେ ଏ ପୁଅ ତାଙ୍କର ଯେମିତି କଥା କହୁଥିଲା, କଥା କଥାକେ ଗରିବମାନଙ୍କ ପାଇଁ ଦରଦ ଦେଖାଇ ରାଗିମାଗି ତାତି ଯାଉଥିଲା, ଏବେ ବି ଠିକ୍ ସେମିତି, ମୁଣ୍ଡବାଳ ଅଧେ ପାଚି ଗାଲଚମ ଓହଳି ଓହଳି ଆସିଲା ପରେ ବି !

କହିଲେ—ବୁଝିଲୁ ଶ୍ୟାମ ! "ବିଶ୍ୱାସେ ମିଳଇ ହରି ତର୍କ ବହୁଦୂରେ ।" ତୋର ତ କେଉଁଥିକୁ ବିଶ୍ୱାସ ନାହିଁ । ତୁ ନ୍ୟାୟ ଧର୍ମ କହିଲେ କ'ଣ ବୁଝିବୁ ?

ଦୀର୍ଘଶ୍ୱାସ ସହିତ ଶ୍ୟାମବନ୍ଧୁ ଚଉକି ଛାଡ଼ିଲେ । ଅଧା ଶୁଭିଲା, ଅଧା ମନକୁ ମନ ଭୋଟିଲା ସ୍ୱରରେ କହିଲେ—ସବୁ ଧାର୍ମିକତା ଅଜ୍ଞତାରୁ, ଅନ୍ଧବିଶ୍ୱାସରୁ ଜାତ ବୋଲି ମୁଁ ଭାବୁଥିଲି; କିନ୍ତୁ ଅଜ୍ଞତା ମାନେଇ ଯେ ବିଶ୍ୱାସ, ତେଣୁ ହରି—ଏ କଥା ଜାଣି ନଥିଲି ।

ଧୀର ପାଦରେ ସେ ଗାଁ ମୁଣ୍ଡ ଟପିଲେ । ସତେ କି ଗାଁ ଭିତରର ଆବହାଓ୍ୱା ତାଙ୍କୁ ଅନନ୍ୟାନ୍ୟୋସୀ କରି ଦେଉଥିଲା । ଗାଁରୁ ବାହାରି ନାଲି ଧୂଳିଆ ସଡ଼କଟି ଯେଉଁଠି ବଙ୍କେଇ ଯାଇଛି, ସେଇଠି ଠିଆହୋଇ ସେ ସାମ୍ନାକୁ ଚାହିଁଲେ । ଅଦୂରରେ ଆକାଶ ଛୁଆଁ ପାହାଡମାଳା । ପିଲାଦିନେ ସେ

ସାଙ୍ଗମେଳରେ ପାହାଡ଼ ଚଢ଼ିଛନ୍ତି, ହଳିଆଙ୍କ ସଙ୍ଗେ ଥରେ ଅଧେ ଗୃଲି, କାଖ ହୋଇ, ପୋଡ଼ ପିଠିରେ ବସି ଏ ପାହାଡ଼ମାଳ ପାରହୋଇ କନ୍ଧ ଗାଁ ମାନଙ୍କୁ ଯାଇଛନ୍ତି, କାନ୍ଦୁଲ, ମକା, ଘିଅ ଆଣିବା ପାଇଁ । ଜଙ୍ଗଲ ଭିତରେ ଯାଉ ଯାଉ ହଳିଆଙ୍କଠୁ ସେ ଗପ ଶୁଣନ୍ତି—ଗୋବନ୍ଧର ବାପା କାଠ ହାଣୁ ହାଣୁ କେମିତି ତାଙ୍କୁ ପଛଆଡୁ ଆସି ବାଘ ଝାଣିନେଲା, ତା ସାଙ୍ଗମାନେ ସୁଦ୍ଧା ଜାଣି ପାରିଲେ ନାହିଁ । ଦିନେ ସନ୍ଧ୍ୟାରେ ଚଟୋଉ ଗାଁରୁ କଏ ଫେରୁ ଫେରୁ ଗାଁ ମୁଣ୍ଡ ମଶାଣୀ ପାଖ ଜୋର କୂଳରେ ଧଳାଲୁଗା ପିନ୍ଧି ସ୍ତ୍ରୀ ଲୋକଟିଏ ବାଟ ଓଗାଳି ଠିଆ ହୋଇଥାଏ, ତା ଆଖୁ ତଳକୁ ଅନ୍ଧାରେ କିଛି ଦିଶୁ ନଥାଏ । ତାଙ୍କ ଗପକୁ ଝଟି ଶ୍ୟାମବନ୍ଧୁଙ୍କ କଳ୍ପନା ଆହୁରି ଆହୁରି ବିସ୍ତୃତ ହୋଇ ଚରିଯାଏ ବଣ ଜଙ୍ଗଲର କୋଣ କୋଣକୁ—ଜଙ୍ଗଲର ଭୂତପ୍ରେତ ଗଛ ଡେଙ୍ଗିଇ କଳ୍ପନାରେ ଆହୁରି ନିକଟ ହୋଇ ଆସନ୍ତି, ବୋଲି ମାନନ୍ତି ।

ଶ୍ୟାମବନ୍ଧୁ ସହରର ହାଇସ୍କୁଲରେ ପଢ଼ିଲାବେଳକୁ ରଜା ଗୋରା ଶିକାରୀ ମଗାଇ ଜଙ୍ଗଲର ବାଘଯାକ ମରାଇଦେଲା । ସ୍କୁଲ ଛାଡ଼ି କଲେଜରେ ପାଦ ଦେଲାବେଳକୁ ସେ ତାଙ୍କ ଗାଁ ମଶାଣିର ଯାବତ୍ ଭୂତ ଡ଼ାହାଙ୍କୁ ବି ନିପାତ କରିଦେଲେ । ପାହାଡ଼ର ଜଙ୍ଗଲମାନ ସଫା ହୋଇ ଆସୁଥାଏ । ସେ ଆହୁରି ଦୂର ସହରକୁ ପଢ଼ିବାକୁ ଗଲେ ରେଲଗାଡ଼ିରେ ବସି । ରେଳରୁ ଦୁଇଆଡ଼ର ଧାନବିଲ, ପଡ଼ିଆ, ବଣ, ସହର ଆଡ଼େ ଗୃହିଁ ଗୃହିଁ ସେ ଭାବୁଥାନ୍ତି—ଆହା, କେଡ଼େ ଫଳିକି ଦୁନିଆଁ ଅଛି ଆମ ଗାଁ ବାହାରେ । ତାଙ୍କର ମନେ ଅଛି, ହଷ୍ଟେଲରେ ପହଞ୍ଚିଲାପରେ ଗାଧୁଆ ଘରେ ନଳପାଣିରେ ସାବୁନ ଲଗେଇ ଗାଧୋଇପଡ଼ି ସେ ବାକ୍ସରୁ ନୂଆ ଜାମା ପେଣ୍ଟ୍ କାଢ଼ି ପିନ୍ଧି ପକେଇଥିଲେ । ମନେ ହେଉଥାଏ ଦେହରୁ ଏଥର ଗାଁ ଦାଣ୍ଡର ଧୂଳି ମଳି ରାସ୍ତାର ଟ୍ରେନ୍ ଧୂଆଁ ସବୁ ଧୋଇ ସଫା ହୋଇଗଲା ।

ପିଲାଟିଏ କାହା ଆଖୁ ବାଡ଼ରୁ ଆଖୁ ଭାଙ୍ଗୁଥିଲା, ଶ୍ୟାମବନ୍ଧୁଙ୍କୁ ଦେଖିଦେଇ ଅତଙ୍କରେ ବାଡ଼ ଡେଇଁ ଦୌଡ଼ି ଗୃଲିଗଲା । ଦୁଇ ଜଣ କନ୍ଧ ହେବେ ବୋଧହୁଏ; ଅଣ୍ଟା ତଳେ ନାମକୁମାତ୍ର ଲୁଗା ଖଣ୍ଡେ ଗୋଞ୍ଜି, କାନ୍ଧରେ ହାଟ ଫେରନ୍ତା ଭାର, ଦୂରରେ ନଇଁ ଆସୁଥିବା ସୂର୍ଯ୍ୟ ଆଡ଼େ ଗୋଡ଼ାଇଁ ବଡ଼ ବଡ଼ ପାହୁଣ୍ଡ ପକାଉଛନ୍ତି ।

ଆଗ ଭଳି ଗାଁର ସବୁ କିଛି ଆଉ ରୂପ କଥାର ଅଂଶ ନୁହେଁ । ଦୂରେଇ ଠିଆହେଇ ଶ୍ୟାମବନ୍ଧୁ ଘରତର ନିରନ୍ତର ଦରିଦ୍ର ଅଧିବାସୀଙ୍କୁ ନିରେଖୁଛନ୍ତି ।

ଶ୍ୟାମବନ୍ଧୁ ଫେରି ଗୁହିଁଲେ । ସନ୍ଧ୍ୟାରେ ଗାଁ କୁହୁଡ଼ିଆ ଦିଶୁଛି । କେବଳ ତାଙ୍କରି ଘର ଛାତ ଉପରେ ଏଯାଏଁ ନାରଙ୍ଗୀ ଖରା ଟିକିଏ ଲାଗି ରହିଛି । ସାମ୍ନାରେ ସଡ଼କ—ସହରକୁ—ଆହୁରି ଦୂର ଦୂରାନ୍ତ ସହରକୁ । ଗ୍ଲଲି ଗ୍ଲଲି ଫେରି ଯିବେ କି ସେ ସେଠିକି ଯେଉଁଠିକାର ପାଣିପବନ ତାଙ୍କୁ ବେଶି ସୁହାଏ, ଯେଉଁଠିକାର ଘଟଣାମାନ ଭେଳିକି ନୁହେଁ, ବାସ୍ତବତାକୁ ନେଇ ଘଟେ । ହଠାତ୍ କିନ୍ତୁ ତାଙ୍କ ମନ ଅଭିମାନରେ ଭରିଗଲା । ଏତେ ଆଶା ନେଇ ଏଇ ସଡ଼କ ଆଡ଼େ ମୁହାଁଇଥିଲେ ସେ ଅନେକ ବର୍ଷ ତଳେ, ପାଇଲେ କ'ଣ ? ମନେ ପଡ଼ିଲା ହରିବନ୍ଧୁର କଥା । ହରିବନ୍ଧୁ ତାଙ୍କ ଅପଦାର୍ଥ ସାନଭାଇ, ଯାହାକୁ ସେ ଶତଚେଷ୍ଟା କରି ମ୍ୟାଟ୍ରିକ୍ ଫାର୍ଷ୍ଟ ଡିଆଁଇ ପାରିଲେନି । ସେ ଏବେ ପେଟ ବଢ଼େଇ, ସୁନା ବୋତାମ କୁରୁତା ପିନ୍ଧି, ମୋଟର ସାଇକଲ ଚଢ଼ି, ବଡ଼ ଭାଇର ଅନୁପସ୍ଥିତିରେ କହି ବୋଲେଇ ଗାଁର ଗୌନ୍ତିଆ ବନିଛି । ବାପାଙ୍କୁ କହୁଥିଲା—ଭାଇ ପାଠପଢ଼ି କଣଟା କରିପକେଇଲେ ? ନା ଧନସମ୍ପତ୍ତିଗୁଡ଼ାଏ ଅର୍ଜିଲେ, ନା ଖବର କାଗଜରେ ଫଟୋଗୁଡ଼ାଏ ବାହାରିଲା—କାହିଁ କିଛି ତ ଆମେ ଦେଖିଲୁନି । କୋଉ ବିଦେଶରେ ଚାକିରି ଖଣ୍ଡେ କରି ତାଙ୍କ କୁଟୁମ୍ବ ପୋଷିଲେ । ମୋତେ ପୁଣି ସେଇ ଆଡ଼କୁ ଟଣା ହେଉଥିଲା । ଆମେ ଏବେ କୋଉ ଖରାପରେ ଚଳୁଛୁ ?

ସାନ ଭାଇର କଥାକୁ ସେ ହସି ଉଡ଼ାଇ ଦେଇଥାନ୍ତେ, ତାର ପିଠି ଥାପୁଡ଼ାଇ ଦେଇଥାନ୍ତେ ଯଦି ସେ ନିଜେ ଗ୍ଲହିଁଥିବା ଫର୍ଚ୍ଚା ଆଲୁଅ, ସୁସ୍ଥ ବାସ୍ତବ ଜୀବନ ପାଇଥାନ୍ତେ ।

ଜୋର କୂଳରେ ଗ୍ଲଲୁ ଗ୍ଲଲୁ ଥକ୍କା ହୋଇ ସେ ଖଣ୍ଡିଏ ପଥର ଉପରେ ବସି ପଡ଼ିଲେ । ପାଣି ଭିତରେ ଚଙ୍ଗ୍ ଚଙ୍ଗ୍ ହେଉଥିବା ଟିକି ମାଛମାନଙ୍କ ଉପରେ ତାଙ୍କ ନଜର ପଡ଼ିଲା । ଶ୍ୟାମବନ୍ଧୁ ସେଇ ଟିକି ଜୀବନୋଚ୍ଛଳ ମାଛମାନଙ୍କ ଆଡ଼େ ଗ୍ଲହିଁ ଗ୍ଲହିଁ ପୁଣି ତାଙ୍କ ଚିଲିଦିନକୁ ଫେରିଗଲେ । କେତେ-ବେଳେ ପାହାଡ଼ର କଳାଛାଇ ପାଣି ଉପରକୁ ଲମ୍ବି ଆସିଲା ପୁଣି ପାଣିରେ ଆକାଶର ତାରା ଗୋଟି ଗୋଟି ହୋଇ ଫୁଟିବାକୁ ଆରମ୍ଭ କଲେ ତାଙ୍କର ଖିଆଲ

ନାହିଁ । କାହାର ଡାକଶୁଣି ସେ ଚମକିଲା ପରି ହାତ ପାପୁଲିରୁ ମୁହଁ ଟେକି ସଳଖି ବସିଲେ । ଘୁଇ ଅନ୍ଧାରରେ ଖଣ୍ଡେ ଦୂରରୁ ପୁଣିଥରେ କାହାର ଶଙ୍କା ମିଶା ଡାକ ଶୁଭିଲା—କିଏ କିଏ ବସିଚ ? ଶ୍ୟାମବନ୍ଧୁ ଉଠି ହସିଲା ଉତ୍ତର ଦେଲେ—ମୁଁ ଭାଇ । କିଏ, ବିପିନ୍ ଭାଇନା ?

—ଆରେ ଶ୍ୟାମ ! ଏ ଅନ୍ଧାରଟାରେ ଏ ଜୋର ଖଣ୍ଡିରେ ବସିଚନା ପଦାଟାରେ ?

ସଫେଇ ଦେଉ ଦେଉ ଶ୍ୟାମବନ୍ଧୁ ତାଙ୍କର ସଙ୍ଗେ ପାଦ ପକାଇଲେ । ତାର ଆଲୁଅରେ ଗାଁ ମୁଣ୍ଡ କୁଡ଼ିଆମାନ ଗେଞ୍ଜାଗେଞ୍ଜି ହୋଇ ଲେସି ହୋଇଗଲାପରି ଦିଶୁଚନ୍ତି । ଗାଁ ମଝାମଝି ତାଙ୍କ ଚକ୍‌କାଦର । ତାଙ୍କ ଘର ପାରି ହୋଇ ବିପିନ୍ ଘର । ଘର ଖଣ୍ଡେ ବାହାରୁ ଶ୍ୟାମବନ୍ଧୁ ଦଳେ ଲୋକଙ୍କ ଭିଡ଼ ବାରିଲେ । ବିପିନ୍ କହିଲେ—ଆଜ ବଂଶୀଲ୍ ଡମ୍ ଓ ଗୋବର୍ଦ୍ଧନର ସ୍ତ୍ରୀ ସୁନାଙ୍କର ନ୍ୟାୟ ବସିବାର ଥିଲା । ବସ୍ତୁର ଆରମ୍ଭ ହୋଇ ଯିବଣି ବୋଧେ । କହୁ କହୁ ତାଙ୍କ ଗଳାରେ ଛୋଟ ହସ୍ଟି ହୋଇ ଉଠିଲା ଓ ପାଦ ଶୀଘ୍ର ପଡ଼ିଲା । ଭିଡ଼ ପାଖେଇ ଆସିଲା ବେଳକୁ ବିପିନ୍ ଟିକେ ଅପ୍ରସ୍ତୁତ ହୋଇଲାଭଳି କହିଲେ—ମୁଁ ନ୍ୟାୟ କଥା ଟିକିଏ ଶୁଣିଯିବି । ତମେ ବୋଧହୁଏ ସିଧା ଘରକୁ ଯିବ ?

ଦ୍ୱିପ୍ରହରେ ଜଣେ ଅଧେ କିଏ ପଚାରିବାକୁ ଆସିଥିଲେ ଶ୍ୟାମବନ୍ଧୁ ନ୍ୟାୟରେ ବସିବେକି ବୋଲି । ସେ କେବଳ ମନାକରି ନ ଥିଲେ, ବିରକ୍ତ ହୋଇଥିଲେ । ଏ ସବୁ ନ୍ୟାୟ ହାସ୍ୟାସ୍ପଦ, ଲଜ୍ଜାଜନକ ବୋଲି ମତ ଦେଇଥିଲେ । ହୁଏତ ସେଇ କଥା ଶୁଣି କମ୍ବା ସେ ପଢ଼ୁଆ ସହରୀ ବାବୁ ବୋଲି ବିପିନ୍ ତାଙ୍କ ସଙ୍ଗେ ଏକାଠି ନ୍ୟାୟ ଶୁଣିବାକୁ ଯାଉ ନାହାଁନ୍ତି । ଭିଡ଼ର ବେଶ ପୋଷାକରୁ ବାରି ହେଉଛି ଡମ, ଗଉଡ଼ ପଡ଼ାରୁ ସମସ୍ତେ ଉଠି ଆସିଛନ୍ତି—ସ୍ତ୍ରୀ, ପିଲାଛୁଆ ସମେତ । ଶ୍ୟାମବନ୍ଧୁ ଓ ବିପିନଙ୍କ ପୋଷାକ ବାରି କେତେଜଣ ସମ୍ଭ୍ରମରେ ଆଡ଼େଇ ହୋଇଗଲେ । କମ୍ ପେଟ୍ରୋଲ୍ ଥାଇ ଫକ୍ ଫକ୍ ହୋଇ ଜଳୁଥିବା ପେଟ୍ରୋମାକ୍ସର ଆଲୁଅରେ ଶ୍ୟାମବନ୍ଧୁ ଲକ୍ଷ୍ୟ କଲେ ତାଙ୍କୁ ଦେଖି ଆଡ଼େଇ ହୋଇ ଯାଉଥିବା ଶୁଖିଲା ମୁହଁଗୁଡ଼ିକ କେତେ ଗମ୍ଭୀର । ଭିଡ଼ର ଆରପାଖେ ଧୋବ ଧାଉଳିଆ ପୋଷାକ ପିନ୍ଧା ଆକାର କେତୋଟି ଏ ମଳମୁଣ୍ଡି ଆଙ୍କଠୁ ବାରିହୋଇ ଯାଉଛନ୍ତି ।

ମୁଖିଆମାନେ ତୋଟେ ପାଖକୁ ବସିଛନ୍ତି, ତିନିଜଣ ଚଉକିରେ, ଦୁଇଜଣ ଗୋଟିଏ କାଠଗଣ୍ଡି ଉପରେ । ମଝିରେ ଦୋପି ଦୁହେଁ—ସୁନା ଆଉ ବଂଶୀଲାଲ୍ । ସୁନା ଗୋଟେ ଖୁଣ୍ଟକୁ ଆଉଜି ତଳକୁ ମୁହଁ ପୋତି ଠିଆହୋଇଥାଏ, ସାନ ଶାଢ଼ୀ ଖଣ୍ଡି ଏମିତି ଘୋର ପୋର ପିନ୍ଧିଥାଏ ଯେ ତାର ସୁନା ରଙ୍ଗର ପାଦ ଦିଓଟି ବ୍ୟତୀତ ଆଉ କିଛି ଦିଶୁ ନ ଥାଏ । ତା ସ୍ୱାମୀ ଗୋବର୍ଦ୍ଧନ ଭିଡ଼ ପାଖକୁ ତଳେ ମୁଣ୍ଡରେ ହାତ ଦେଇ ବସିଥାଏ । ସୁନାର ଛଅ ସାତ ବର୍ଷର ଲଙ୍ଗଳା ପୁଅଟି ବାପ ପାଖେ ବସି ଢୁଳଉଥାଏ । ବଂଶୀଲାଲ୍ ଡମ୍, ବତେଇ କାମ କରେ, ଭଲ ହାତ ବୋଲି ନାଁ ଅଛି । ସୁନାକୁ ନେଇ ବୁଲିପାଇଥିଲି ସ୍ୱରବନ କାଳ । ଧୋବ ଫଟେଇ ଖଣ୍ଡେ ପିନ୍ଧି ସେ ଛାତି ଉପରେ ଦୁଇ ହାତ ବନ୍ଧ କରି ନ ଘଟିଲାଭଳି ଖଣ୍ଡେ ଦୂରରେ ଠିଆ ହୋଇଥାଏ । ତାର ଚତୁର୍ଥ ସ୍ତ୍ରୀ ଉର୍ବଶୀ—ସତର ଅଠର ବର୍ଷର ଝିଅଟିଏ, କୋଳରେ ଅତି ସାନ ପିଲାଟିକୁ ଜାକି ଧରି ଗୁହଆଁ ମୁହଁରେ ତରଙ୍ଗ ତରଙ୍ଗ ହୋଇ କାନ୍ଦୁଥାଏ ।

ଶ୍ୟାମବନ୍ଧୁ ଚଉକିରେ ବସିଥିବା ତାଙ୍କ ସାନଭାଇକୁ ସାମ୍ନାସାମ୍ନି ଦେଖି ପାରୁଥିଲେ । ଥନ୍ତଲ ପେଟଟି ଯୋଗୁଁ ସେ ବଣିଷ୍ଠ ବୋଲି ବାରି ହୋଇ ପଡ଼ୁଥାଏ । ସୋଳଶ ବର୍ଷ ବୟସରେ ନାତି ନାତୁଣୀ ଦେଖିଲଣି । ବଡ଼ ଟାଣି ଚମ୍ପତ ଦିଶିବାର ଚେଷ୍ଟାରେ ଥାଏ । ଗାଁକୁ ବାବୁ ଭାୟା ଆସିଲେ କମ୍ବା ଗାଁ ବାହାରକୁ ଗଲେ ସେ ସିଗାରେଟ୍ ପିଏ, ନଚେତ୍ ବିଡ଼ି । ବିକ୍ରମ ଗଉଡ଼, ହରିବନ୍ଧୁର ମୁଖ୍ୟ ହଳିଆ ଓ ହାତ ବାରସି—ହୃଷ୍ଟପୁଷ୍ଟ, ଧୋତି, ଜାମା ପିନ୍ଧେ, ଚପଲ ମାଡ଼େ—ଠିଆହୋଇ ନାଟକୀୟ ଭଙ୍ଗୀରେ ବଖାଣୁ ଥାଏ—ଶୁଣ୍ ବଂଶୀଲାଲ୍ ଡମ୍ । ଏଇ ଯେ ତୋ ଆଗରେ ବସିଛନ୍ତି ମାହାପ୍ରଭୁମାନେ—ଏମାନେ ମଣିଷ ନୁହଁନ୍ତି, ଦେବତା, ସାକ୍ଷାତ୍ ବ୍ରହ୍ମା ବିଷ୍ଣୁଙ୍କ ଅବତାର । ଯାଙ୍କ ସାମ୍ନାରେ ଯଦି ମିଛ କହିବୁ, ତୋ ଜିଭ ଛିଣ୍ଡି ପଡ଼ିବ...

ଶ୍ୟାମବନ୍ଧୁ ଭିତରୁ ବାହାରି ଆସିଲେ, ସିଗାରେଟ୍ ଖଣ୍ଡେ ଧରାଇ ଗାଁର ରାସ୍ତାରେ ପାଦ ପକାଇଲେ । ବୁଲି ବୁଲି କେତେବେଳେ ନିଜ ଘର ଟପି, ମୁହଁ ଟେକିଲାବେଳକୁ ବେଶ୍ କିଛି ଦୂର ନଗୁଡ଼ିଆ ରାସ୍ତାରେ ସେ ଆଗେଇ ଆସିଲେଣି । ଫେରି ପଡ଼ି ପୁଣି ଧୀରେ ଧୀରେ ଚାଲିଲେ ସେ, ଏଥର ଜାଣିଶୁଣି ନିଜ ଘର ଅତିକ୍ରମ କରି ଭିଡ଼ ପାଖେ ପହଞ୍ଚିଲେ । ବିପିନ୍ ତଥା ଭିଡ଼ ତାଙ୍କୁ ଭୁଲିଗଲଣି ।

ସମସ୍ତ ଗୋବର୍ଦ୍ଧନର ଗୁହାରି ଶୁଣିବାରେ ମଗ୍ନ । ଏ ଭିତରେ ସେମାନମାନଙ୍କ ଅଟି ଲଭିଯାଇଥିଲା । ଖୋଦ୍‌ସା ଜନ୍ମ ଆଲୁଅରେ ନ୍ୟାୟ ଚୂନିଛି । କାହା କାହା ମୁହଁରେ ବାଡ଼ ନଆଁ ଝଲସୁଛ । ସେ ଧୀରେ ଅଲକ୍ଷ୍ୟରେ ଯାଇ ଖଣ୍ଡେ ଦୂର ବରକୋଳି ଗଛ ମୂଳ ପଥରଟି ଉପରେ ବସି ପଡ଼ିଲେ । କଥାମାନ ଶୁଭୁଥାଏ ଖଣ୍ଡେ ଦୂରରୁ ।

ଥଣ୍ଡା ପବନରେ ଆଖିପତା ମାଡ଼ ମାଡ଼ ଆସିଲା, ମୁଣ୍ଡ ରହି ରହି ଝାଙ୍କି ଦେଉଥାଏ । ଛୁଇ ଛୁଇ ନିଦରେ କେତେବେଳେ ବର୍ତ୍ତମାନରେ, କେତେବେଳେ ଚିଲ୍‌ଦିନକୁ ଫେରି ଯାଇ ସେ ନ୍ୟାୟ ଶୁଣିଲେ । ଗୋବର୍ଦ୍ଧନର କାନ୍ଦୁଣି ମାନ୍ଦୁଣି ଗଳାର ଗୁହାରି—କେମିତି ପ୍ରଥମେ ସେ କ୍ଷେତରୁ ଫେରି ତା ସ୍ତ୍ରୀକୁ ଘରେ ନ ଦେଖି ନ ଖାଇ ଶୋଇଲା, ତା' ପରଦିନ ତା ବାପଘରକୁ ଖୋଜିବାକୁ ଗଲା, ତିନିଦିନ ପରେ ଚେଳପଟେ ବନ୍ଧାରଖି ପୁଲିସ୍ ବାବୁଙ୍କୁ ନେହୁରା ହୋଇ ଠଙ୍କା ଯାଚିଲା ଇତ୍ୟାଦି । ଶେଷ ଆଡ଼କୁ ସେ ଆଉ କହିପାରୁ ନଥାଏ, ତା ସ୍ୱର ଭଙ୍ଗା ଶୁଭି ତୋଟି ବସି ଲାଗି ଯାଉଥାଏ । ମଝିରେ ଶ୍ୟାମବନ୍ଧୁଙ୍କୁ ଛୁଇନିଦରୁ ଚମକାଇ ସୁନାର ତୀକ୍ଷ୍ଣ ସ୍ୱରରେ ଗୋବର୍ଦ୍ଧନ ଉଦ୍ଦେଶ୍ୟରେ ମାଳେ ଅଶ୍ରାବ୍ୟ ଗାଳି ଭାସି ଆସିଲା, ଭିଡ଼ର ସବୁ ଗୁଞ୍ଜରଣ ବନ୍ଦ ହୋଇଯାଇ କିଛିକ୍ଷଣ ପୂରା ଆଡ଼ ସ୍ତବ୍ଧ ହୋଇଗଲା । ଶ୍ୟାମବନ୍ଧୁ ଉଠିପଡ଼ି ଭିଡ଼ମୋଡ଼ି ହୋଇ ଯିବାକୁ ବାହାରିଲେ, ପରେ ପରେ କିନ୍ତୁ ଭିଡ଼ରୁ ହସର ରୋଳ ଉଠିଲା ଓ ସୁନା ବଂଶୀଲାଲ୍ ଉଦ୍ଦେଶ୍ୟରେ ଟିପ୍‌ପଣୀ ମାନ ଆସିଲା । ତାପରେ ବଂଶୀଲାଲ୍ ଗମ୍ଭୀର ସ୍ୱରରେ ପଚାରିଲେ ଆରମ୍ଭ କଲା । ଶ୍ୟାମବନ୍ଧୁ ପୁଣି ବସି ପଡ଼ିଲେ ଓ କିଛି ସମୟ ଭିତରେ ଛୁଇନିଦକୁ ଫେରିଗଲେ ।

କେତେ ସମୟ ପରେ ତାଙ୍କ କାନ ପାଖରେ କିଏ ଜଣେ ଡାକୁଥିଲା—ଆଜ୍ଞା । ସାହେବ ଆଜ୍ଞା, ଉଠନ୍ତୁ ଘରକୁ ଯିବେ ।

ଧଡ଼ପଡ଼ ହୋଇ ଉଠି ବସି ଶ୍ୟାମବନ୍ଧୁ ଦେଖିଲେ ଭିଡ଼ରୁ ଅଧେ ଭାଙ୍ଗିଗଲାଣି । ମୁଖିଆମାନେ ଗଲେଣି । ଶ୍ୟାମବନ୍ଧୁ ପଚାରିଲେ—କ'ଣ ଫଇସଲା ହେଲା ? ମୁଁ ଶୋଇ ପଡ଼ିଲି ।

ଲୋକଟି ମୁଣ୍ଡ ଆଉଁସି କହିଲା—କଣ ଆଉ ହୁଅନ୍ତା ଆଜ୍ଞା ! ବଂଶୀଲାଲର ସ୍ୱଭାବ ଖରାପ । ଆଗରୁ ଦୁଇ ତିନି ଜଣଙ୍କର ମାଇକିନି ନେଇ ପଳେଇଛି, ତିନି ତିନିଟା ସ୍ତ୍ରୀ ଛାଡ଼ିଛି, ଚତୁର୍ଥପକ୍ଷ ଉଏଁଶୀକୁ ଆଣିଛି । ତାକୁ କୁହାଗଲା ସେ ସୁନାକୁ ରଖୁ, ତା ସ୍ତ୍ରୀକୁ ଗୋବର୍ଦ୍ଧନ ନେବ ।

ଶ୍ୟାମବନ୍ଧୁ ଆଶ୍ଚର୍ଯ୍ୟ ହୋଇ ପଚ୍ଚାରିଲେ—କାହିଁକି ? ଉଏଁଶୀ କ ଦୋଷ କରିଥିଲା ? ଗୋବର୍ଦ୍ଧନ ବି ରାଜି ହେଲା ?

ଲୋକଟି ଉତ୍ତର ଦେଲା— ମହାପ୍ରଭୁମାନେ କହିଲେ ଆଜ୍ଞା, ଗୋବର୍ଦ୍ଧନ ଗରିବ ଲୋକ ବୋଲି ବଂଶୀଲାଲ୍ ତା ସ୍ତ୍ରୀକୁ ନେଇ ପଳେଇଲା, ଏବେ ତା ଧାଙ୍ଗ୍ରୀ ସ୍ତ୍ରୀକୁ ଗୋବର୍ଦ୍ଧନ ନେଉ ।

ଗୋବର୍ଦ୍ଧନ ଆଗଭଳି ତଳେ ବସିଥିଲା ମୁଣ୍ଡରେ ହାତ ଦେଇ । ପାଖ ଲୋକେ ହସିଲା ସ୍ୱରରେ କହିଉ ଥିଲେ—ଆରେ ଉଠ୍ ଉଠ୍ । ଦଶ ବର୍ଷର ଘର କଲା ମାଇଟି ଥିଲା, ଭାଗ୍ୟବଳରୁ ଧାଙ୍ଗ୍ରୀଟିଏ ପାଇଲୁ ।

ଗୋବର୍ଦ୍ଧନ ଉଠିଲା, ଝାଡ଼ ଝୁଡ଼ ହେଲା । ଉଏଁଶୀ ପାଖକୁ ଯାଇ କଣ କହିଲା । ଉଏଁଶୀ ମୁହଁ ଟେକି ଗୋବର୍ଦ୍ଧନର ମୁହଁକୁ ଚାହିଁଲା । କୋଳର ଛୁଆକୁ ଆଉ ଟିକେ ଭଲ କରି ଲୁଗାରେ ଘୋରି ଦେଲା, ଲୁଗାକାନରେ ନିଜ ଆଖି ନାକ ଭଲ କରି ପୋଛିନେଲା । ଜହ୍ନ ଆଲୁଅରେ ତୋରା ମୁହଁ— ପ୍ରଶ୍ନ ନାହିଁ, କ୍ଷୋଭ ନାହିଁ । ଦୁହେଁ ଅବଶିଷ୍ଟାଂଶ ଭଡ଼ ଗୁଡ଼ ଗାଁ ଦାଣ୍ଡରେ ପାଦ ପକାଇଲେ ।

# ଘଟଣା

ଦୂରରୁ ଆସୁଥିବା ଲୋକଟିକୁ ଦେଖି ଦେଇ ଦେବ ଡାହାଣ ହାତ ରାସ୍ତାରେ ସାଇକଲ୍ ବୁଲାଇ ଖସିଯିବାକୁ ବସୁ ବସୁ ପୁଣି ଦେଖି ଚିହ୍ନିଲା— ଆସୁଥିବା ଲୋକଟି ରବି ନୁହେଁ, ଆଉ କିଏ। ସେଇଠୁ ବ୍ରେକ୍ ଛାଡ଼ି ଦେଇ ବର୍ଷା ଧୂଆ ପିଚ୍ ରାସ୍ତାରେ ପୁଣି ସ୍ୱଚ୍ଛନ୍ଦରେ ସାଇକଲ୍ ଗଡ଼ାଇନେଲା, ଆପଣାକୁ ପତେଇ ଦେଲା ଥଣ୍ଡା ପବନକୁ। ଆଉ ଭାବୁ ଭାବୁ ଅଜାଣତରେ ତା ମୁହଁରେ ଟିକିଏ ହସ ଫୁଟିଲା—ସେ ସେ ରବିକୁ ଦେଖି ବା ଏମିତି ଅତର୍କରେ ବାଟଭାଙ୍ଗି ଖସିଯିବାକୁ ବସିଥିଲା କାହିଁକି ?

ରବି ତାର ଶତ୍ରୁ ନୁହେଁ କି ମାଷ୍ଟର ନୁହେଁ, ସାଙ୍ଗ ପିଲାଟିଏ। ତା'ଠୁ ଧାର ଉଧାର ବି କିଛି ନେଇ କରିନି। ବରଂ ପରୀକ୍ଷା ସରିବା ପରଠୁ ଆଜିଯାଏ ସେ ଖାଲି ସମସ୍ତ ଯାକ ରବି ତଥା ତା'ପରି କେତେଜଣ ସାଙ୍ଗପିଲଙ୍କ ସଙ୍ଗେ କଟାଇଆସିଛି। ସେମାନେ ସମସ୍ତେ ଭଲ ଘରର ପିଲା, ଭଦ୍ର ଟୋକା, ସେମାନଙ୍କ ସାଙ୍ଗେ ଦେଖାକଲେ ବାପା, ଭାଇ କି ଭାଉଜ କେହି ଅପ୍ରସ୍ତୁତ ହେବେ ନାହିଁ। ତେବେ ଗତ ତିନି ଚାରିଦିନ ହେଲା ସେ ରବି, ନରେଶ, ପ୍ରଫୁଲ୍ଲ ଇତ୍ୟାଦି କାହାରିକୁ ଦେଖା ନକରି, ତଥା ସେମାନେ ଏକାଠି ହେଉଥିବା ପରିଚିତ ଜାଗାମାନ ଏଡ଼େଇ କରି, ଏକୁଟିଆ ନିଜ ସାଇକଲ୍ଟିରେ ସହର ପରିକ୍ରମା କରୁଛି। ଏପରିକି ଅପରଦିନ କୌଣସି କାରଣରୁ ସାଇକେଲ୍ ଘରେ ନଥିବାରୁ ଭାଉଜଙ୍କୁ ଆଶ୍ଚର୍ଯ୍ୟ କରିଦେଇ ବାରିପାଖ ପରିବା କିଆରିରୁ ଘାସ ବାଛିଲା ପଛକେ।

ନିଜକୁ ନିଜେ ତାକୁ ଆଶ୍ଚର୍ଯ୍ୟ ଲାଗୁଥିଲା, ଆଉ ହସ ବି ମାଡ଼ୁଥିଲା, କିନ୍ତୁ ତା'ର ଏ ହଠାତ୍ ଏଲର୍ଜିର କାରଣ ଖୋଜିବା ଛାଡ଼ି ସେ ନିଜ ଆମୋଦିତ

ମନକୁ ଆତୁର ଉସ୍‌କାଉଥିଲା—ରବ ! ସତରେ ଆଜ ରବ ହୋଇଥାନ୍ତା କି, ତାର ବାଟ ଭର୍ତ୍ତିବା ଦେଖି ପାଇଥାଆନ୍ତା ଟେଙ୍କେ ! (ତାସ୍ ଫେଣ୍ଡ ଫେଣ୍ଡ ପିଲାଦିନୁ ଭଲ ପାଠ ପଢି ଆସିଥିବା ରବ ହଠାତ୍ ଉତ୍ଫୁଲ୍ଲ ଗଳାରେ କହୁଉଠେ—ଆମେ ଆମ କ୍ଲାସର ଅନ୍ୟ ପିଲାଙ୍କ ପରି ନୋହୁଁ । ଦେଖିବ ଆମ ଫ୍ରେଣ୍ଡସିପ୍ ସବୁଦିନେ ରହିବ ।)

ପରୀକ୍ଷା ବେଳ । ଫ୍ୟାନ୍‌ର ଗରମ ପବନ ତଳେ ଅଣନିଃଶ୍ୱାସୀ ହୋଇ ପାଠଯାକ ଗିଳାଗଲାବେଳେ ଡ୍ରଇଂରୁମ୍‌ରୁ ଭାଉଜଙ୍କ ପଡ଼ୋଶିନୀ ମାନଙ୍କ ସଙ୍ଗେ ହସ ଖୁସି ଶୁଣିଲେ, କମ୍ପା ସାମ୍ନା ରାସ୍ତାରେ ଗୋଡ଼ଆ ଗୋଡ଼ ଖେଳୁଥିବା ଗ୍ଲେଟ ପିଲାଙ୍କୁ ଦେଖିଲେ ଥରେ ଥରେ ଯେମିତି ହଠାତ୍ କ୍ଲାନ୍ତ ଲାଗିଯାଇ ବେକାରଆ ଲାଗେ, ଗତ ଅନେକ ଦିନ ଧରି ସାଙ୍ଗ ମେଳରେ ଗୁଲଗପ, ତାସ୍ ଆଡ୍ଡା ସାରି ଫେରିଲାବେଳେ ସେ ଦେଖିଛି ଆଉ ଗୋଟିଏ ରକମ ଅକର୍ମଣ୍ୟ ଭାବ ତା ଦେହ ମନସାରା ଘୋଟିଆସେ । ଏଇ ତିନିଦିନ ହେଲା ସେ ଗୋଟିଏ ନୂଆ ପରୀକ୍ଷା ଚଳାଇଚି ନିଜ ଉପରେ । ଏମିତି ସାଇକଲ୍ ପେଡ଼ାଲ୍ ଉପରେ ଗୋଡ଼ର ମାଂସପେଶୀ ଟାଣକେଇ ଉଠିଲେ ସେ ଫେରେ ଘରକୁ । ଝାଳଧାରରେ କୁଣ୍ଡାଇ ହୋଉଥିବା ଗାଲ ଓ ସାର୍ଟ ଲାଗିଯାଇଥିବା ପିଠିରେ ଥଣ୍ଡା ପବନ ବାରୁ ବାରୁ ଯେ ବାରଣ୍ଡା ଉପରକୁ ସାଇକଲ୍ ଉଠାଏ ଯେତେବେଳେ, ସେଇ ଚିନ୍ତା 'ଏ ସମୟ କଟିଯାଉ—କଟିଯାଉ' ଭାବନା ନଥାଏ ତା'ଠି । ନୂଆ ବର୍ଷାରେ ଆଶ୍ୱାସ ପାଇଥିବା ସହର ରାସ୍ତାମାନଙ୍କରୁ କେଉଁ ଗୋଟାଏ ଆଶ୍ୱାସନା ତା ଦେହକୁ ଚରି ଆସିଥାଏ ।

ତିନିଦିନ ତଳେ, ବାପା ଯେଉଦିନ ଗାଁରୁ ଫେରିଥାନ୍ତି—ସାରା ଦି'ପ୍ରହର ମାଗାଜିନ, ଉପନ୍ୟାସ ନେଇଥିବା ବିଛଣାରେ ନିଘୋଡ଼ ଶୋଇ ସନ୍ଧ୍ୟାବେଳକୁ ଭାଉଜଙ୍କର ଦଣ୍ଡାଳ ଡାକରେ ଦେବ ଉଠିଲା । ତା'ପରେ ଏକାଠି ବସି ଚା' ପିଉ ପିଉ ବାପା ପଚାରିଲେ—ତୋ ରେଜଲ୍‌ଟ କେବେ ବାହାରୁଚି ଜଣାଗଲା ? ଫାଷ୍ଟକ୍ଲାସ୍‌ଟାଏ ହେବ ତ ?

ପଢୁଥିବା ଓ୍ୱିକ୍‌ଲିଟାରୁ ଟିକିଏ ମୁହଁ ଉଠାଇ ସେ କହିଲା—ହୋଇଯାଇପାରେ । ଚା' ଘୁଞ୍ଚେଇ ବାପା କହିଲେ—କେଇ ଯାଇପାରେ ଗୋଟାଏ କଅଣ ? ତୋ ଭଳି ଇଣ୍ଟେଲିଜେଣ୍ଟ୍ ପିଲା, ଯେମିତି ପଢିଥିଲୋ, ଆତ୍ମବିଶ୍ୱାସ ଥିଲେ କହନ୍ତୁ—ନିଶ୍ଚୟ ହେବ ।

ଉତ୍ତର ଦେବା ନିଷ୍ପ୍ରୟୋଜନ ହେଲେ ବି ବାପା କଥା କହୁଥିଲାବେଳେ ମାଗାଜିନ୍ ପଢିବା ଅଭଦ୍ରାମି ବୋଲି ସେ ବହି ଥୋଇ ଚୁପ୍‌ଚାପ୍ ଚା' ପିଇଲା । ବାପା ପଚାରିଲେ—ବି. ଏସ୍. ସି. ପରେ କ'ଣ କରିବୁ ସ୍ଥିର କଲୁ ? ହଉ, ଏମ୍. ଏସ୍. ସି. ଯଦି ପଢୁ, ତା ପରେ କରିବୁ କ'ଣ ଭବିଷ୍ୟତରେ ?

ଦେବ ଜାଣେ ତଥାପି ଉତ୍ତର ନ ଦେଲେ ଚଳିବ । ସେ ମୁହଁରେ ବ୍ୟଗ୍ର ଭାବଟିଏ ଯତ୍ନେ ଫୁଟାଇ ଶୁଣିଗଲା । ଏଥରକ ଭାଇ ବାପା ଛାଡ଼ିଥିବା କଥାର ଖିଅ ଧରିଲେ—ଖାଲି କୋର୍ସ ବହି ପଢ଼ି ଫାଷ୍ଟକ୍ଲାସ୍ ବହୁତ ପାଉଛନ୍ତି ଆଜିକାଲି, ପାଇ ବେକାର୍ ବୁଲୁଛନ୍ତି । ଖାଲି ଫାଷ୍ଟକ୍ଲାସ୍‌ଟାଏ କିଛି ନୁହେଁ । ଭବିଷ୍ୟତକୁ ଦୃଷ୍ଟି ରଖି ନିଜକୁ ପ୍ରସ୍ତୁତ ହେବାକୁ ପଡ଼ିବ । ନିଜକୁ ଗଢ଼ିବାକୁ ହୁଏ ନିଜେ । ଆଜିକାଲି କେତେ କମ୍ପିଟିଟିଭ୍ ପରୀକ୍ଷା···

ଦେବ ଜାଣିଥିଲା ଏ ଉପଦେଶମାଳା କମ୍ପିଟିଟିଭ୍ ପରୀକ୍ଷାଠି ଆସି କେନ୍ଦ୍ରିତ ହେବ । କହିଲା—ତା' ତ ମୋର ବି ଲକ୍ଷ୍ୟ । ଚେଷ୍ଟା ତ କରୁଛି···

ଦେବ ଶୀଘ୍ର ଚା' ଶେଷ କରି କପ୍ ଥୋଇଲା । ବାପା ତା ହଠାତ୍ ତରବର ଦେଖି ଅଧୈର୍ଯ୍ୟ ଗଳାରେ କହିଲେ—ସେଇ କଥା ଆମେ କହୁଚୁ । ସମୟ ନଷ୍ଟ ନ କରି, ମନ ଦୃଢ଼କରି ଆଜଠୁ ଲାଗିପଡ଼ । ମଣିଷର ଅସାଧ୍ୟ କଣ !

ଦେବ ଉଠି ଠିଆ ହେଲା ଆଉ ଭାବିଲା—ହଉ ରଖ ତମ ଫିଲୋସଫି । ମୋ ସାଧ୍ୟମତେ ମୁଁ ପଢ଼ିଛି । ବର୍ଷସାରା ପରିଶ୍ରମର ଅର୍ଜିତ ଏ ଝରୁଛୁଟୀ । ତମେ ମୋତେ ବଳଦ ପରି ଖଟେଇ ପାରିବ ନାହିଁ । ସେତିକିବେଳେ ଦେବକୁ ଚଟ୍‌କିନା ଦିଶିଗଲା—ଗୁଲିଆଡ଼ ଶୂନ୍‌ଶାନ୍ ହୋଇ ପଡ଼ିଥିବା ଅଧ ରାତିରେ ଟେବୁଲ ଉପରେ ମୁହଁ ମାଡ଼ିଲା ଛଣି ନିଦଯାକ କାହିଁ ଝିଙ୍କିପରି ହୁ ହୁ ମାଡ଼ି ଆସି ମନକୁ ହଟ୍‌ବଢଗ୍ ଶୂନ୍ୟ କରି ପକାଏ । ଆଃ—କିଛି କାମ ଦିଏନି, ବାଥରୁମ୍‌ରେ ଲୁଚେଇ ସିଗ୍ରେଟ୍‌ଟିଏ ଟାଣି ଆସିଲେ ନୁହେଁ କି ଆଖିରେ ଥଣ୍ଡା ପାଣି ଛାଟିଲେ ନୁହେଁ । କେଉଁ ଝିଡ଼ରାତିରେ ଗାଡ଼ିର ସାନ୍ନାକାଚରେ ଧୂଆଁ ପରିକି ପରି ବର୍ଷା ଲୁହୁଥିବାବେଳେ ଅବିଶ୍ରାନ୍ତ ଚାଲିଥିବା ଓ୍ୱାଇପର୍ ଟିକିଏ ବି ସ୍ୱଚ୍ଛତା ଯେମିତି ଆଣି ପାରୁ ନ ଥାଏ ।

ଦୋଷୀ ସ୍ୱରରେ ଦେବ କହିଲା—ମୁଁ ଟିକିଏ ଆସୁଛି ବାପା, ଜଣେ ସାଙ୍ଗଠୁ ବହିଟିଏ ଆଣିବାର ଥିଲା ।

ସାର୍ଟ ବଦଳାଇ ମୁଣ୍ଡରେ ପାନିଆଟା ଚଲେଇ ଆଣିଲାବେଳେ ତା'ର ଆହୁରି ମନେ ପଡ଼ିଲା, ପରୀକ୍ଷା ଆଗରୁ ସନ୍ଧ୍ୟାବେଳେ କେମିତି ହାତଗୋଡ଼ ବନ୍ଧା କଏଦୀ ପରି ଲାଗେ । ଚରିବା ବ୍ୟାଗ୍ ଧରି ଗୁଣୁଗୁଣୁ ଗୀତ ଗାଇ ଫାଟକ ଖୋଲି ରାସ୍ତା ଉପରକୁ ଚାଲି ଯାଉଥିବା ଚାକର ଟୋକାକୁ ଦେଖିଲେ ହିଂସାହୁଏ । ମନବୋଧ ଚଉତିଶା ଗାଇଲା ପରି ଆପଣାକୁ କୁହାଯାଏ—ସବୁର୍ କରଯା, ଆଉ ଦିନ କେଇଟା ।

ଘରୁ ବାହାରି ଆସିଲାବେଳେ ଦରକାରଠୁ ବେଶି ଉଚ୍ଚଗଳାରେ ଭାଇ ବାପାଙ୍କୁ କହୁଥିଲେ—ଦେବ ଭଲ ପଢ଼େ, ସେଥିପାଇଁ ମୁଁ ତା ରେଜଲ୍ଟ୍ ନେଇ ଚିନ୍ତା କରୁନାହିଁ ; କିନ୍ତୁ ତାର ଦାୟିତ୍ୱ ଜ୍ଞାନ ନିହାତି କମ୍, ଆଉ ଉଚ୍ଚାକାଂକ୍ଷା ତ ଜଣା ପଡ଼ୁନି କିଛି ଥିଲାପରି ।

ରାସ୍ତା ଉପରେ ନ ପହଞ୍ଚୁଣୁ ଦେବ ସିନେମା ଗୀତ ଟ୍ୟୁନ୍‌ରେ ହ୍ୱିସିଲ୍ ବଜାଇଥିଲା ।

ସାଇକଲ୍ ସିଟ୍ ଉପରେ କେତେ କଥାରୁ ଚେନାଏ ଅଧେ ଆସି ମନରେ ଚମକ ଭରେଇ ଯାଉଥାଉ ଦେବ ଓଠରୁ ଏବେ ବି ହ୍ୱିସିଲ୍‌ଟିଏ ଫିଟିପଡ଼ିଲା ଆଉ ତା ସଙ୍ଗେ ସଙ୍ଗେ କୁଆଡୁ କେଜାଣି ସୀତା ମନକୁ ଆସିଲା । ଓଠର ହ୍ୱିସିଲ୍ ଆପେ ମିଳାଇଗଲା କେତେବେଳେ ।

ଗତ ବର୍ଷ ଏମିତି ଖରାଦିନେ ପଡ଼ିଶା ଘର ଝିଅ ସୀତା ତାଙ୍କ ଲନ୍‌ରେ ନୂଆ ପିନ୍ଧି ଶିଖିଥିବା ଶାଢ଼ୀ କାନି ଥରକୁ ଥର ଢଙ୍ଗରେ ସଜାଡ଼ି ପାଇପ୍ ନେଇ ପାଣି ଦେଉଥାଏ ଫୁଲଗଛମାନଙ୍କରେ । ଉଚ୍ଚ ହେଜ୍ ଆଉ ନିର୍ଜନ ରାସ୍ତା ଲାଗି ତା ବ୍ୟବହାରରେ ସେ ବୋଧହୁଏ ସମ୍ପୂର୍ଣ୍ଣ ଏକୁଟିଆ ଆଉ ସ୍ୱାଧୀନ ଥିଲା, ସେ କେମିତି ଜାଣନ୍ତା ପଡ଼ିଶା ଘର ଝରକାରୁ ଉତ୍ସୁକ ଆଖିରେ ଲକ୍ଷ୍ୟ କରୁଚି ଦେବ ।

ସେଇଦିନ ରାତିରେ ଅନେକ ବେଳଯାଏଁ ବସିରହି ତିନି ଚାରି ଫର୍ଦ୍ଦ କାଗଜ ଚିରି ସୀତାକୁ ଚିଠିର ଫାଇନାଲ ଡ୍ରାଫ୍ଟ୍ କଲାବେଳକୁ ଚେଆର୍ ପଛରୁ ଭାଉଜଙ୍କ ଥଟ୍ଟାଳିଆ ମିଠାସ୍ୱର ଶୁଭିଲା—ଭାରି ସୁନ୍ଦର ଭାଷା ତ ! କୋଉ ବହିରୁ ଉତାରିଲ ମ ?

ଚମକ ପଡ଼ି ବେତାଳିଆ ହୋଇ ଯାଇଥିବା ଛାତିର ଦୁକ୍ ଦୁକ୍ ସମ୍ଭାଳୁ ସମ୍ଭାଳୁ ଦେବ ଚିଠିଟାକୁ ଲୁଚାଇବାକୁ ଚେଷ୍ଟାକଲା । ଭାବିନେଲା— ରକ୍ଷା, ଭାଉଜଙ୍କ ଜାଣିବାରେ ସେମିତି କିଛି ବିପଦ ନାହିଁ । ତେବେ ଭାଉଜ ଯେତେବେଳେ କହିଲେ—"ବାଃ ! ତମେ ପୁଣି କେବେଠୁ ଆରମ୍ଭ କଲଣି ମ ଏସବୁ ?" ଦେବ ଜାଣିଲା ଏ କଥା ହସିଲା ଓଠରୁ ବାହାରୁଛି ସିନା, ଏଥିରେ ଥଟ୍ଟା ନାହିଁ । ଚିଠିଟା ଭାଉଜଙ୍କ ହାତରୁ ଝାମ୍ପି ନେଇ ନେଇ ସେ ଚିରିପକାଇ କହିଲା—"ପ୍ଲିଜ୍ ଭାଉଜ । ଭାଇଙ୍କୁ କହିବନି । ଏମିତି ମଜାରେ ଲେଖୁଥିଲି ନା, ସତରେ କ'ଣ ଦେଇଥାନ୍ତି କାହାକୁ ?"

ସେଦିନ ସେ ଶୋଇପାରି ନ ଥିଲା ବହୁତ ବେଳଯାଏ । ଅନ୍ଧାରରେ ବି ଜଳି ଯାଉଥିବା ମୁହଁକୁ ତକିଆ ଉପରେ ମାଡ଼ି କାହାକୁ ଲୁଚାଉଥିଲା ସେ କେଜାଣି—ଭାଉଜଙ୍କଠୁ କି ଗୀତାଠୁ ?

ଦି'ମାସ ପରେ ଗୀତା ବାପାଙ୍କର ବଦଳି ହୋଇଯାଇଥିଲା । ଏବେ ସେ ଘରେ ପ୍ରୌଢ଼ ଦମ୍ପତିଟିଏ ରହୁଛନ୍ତି । ବଗିଚାର ଆଦୌ ଯତ୍ନ ନେଉନାହାନ୍ତି । ଦେବ ଆଜି କାଲି ସେ ପାଖ ଝରକା ବି ଖୋଲେନାହିଁ । ଦୂରରୁ ଦେଖି ବା ଏକୁଟିଆ ରାତି ଚେଇଁବାରେ ଫାଇଦା କ'ଣ । ବରଂ ସାଙ୍ଗ ଦଳଙ୍କ ସାଙ୍ଗେ କଲେଜ ସାମ୍ନା ରାସ୍ତା କି ବଜାର ପାଖେ ଝିଅଙ୍କୁ ଦେଖିଲେ ହ୍ୱିସିଲ୍ ଟିଏ କି ପଦେ ସିନେମାଗୀତ ବୋଲିଯାଇପାରେ । ନଚେତ୍ ନିଜର ସାହସ ନଥିଲେ ଦଳଙ୍କ ସାଙ୍ଗେ ଖଣ୍ଡେଦୂରରେ ରହିଯାଇ ସାଙ୍ଗ ହିରୋଟିକୁ ଦେଖ— ତାଁର ଏକୁଟିଆ ଝିଅଟି ସାମ୍ନାରେ ଗୋଡ଼ଆପି ସାଇକଲ୍ ଅଟକାଇବାର ଓ ଫିଲ୍ମ ଡାଏଲଗ୍‌ଟିଏ ଛାଡ଼ିବାର ଦେଖି ହସି କୁରୁଳି ଉଠ, ଉତ୍ସାହ ଦିଅ । କିଛି ନାହିଁ ସେଥିରେ— ନା ଆଉ କାହାକୁ କୈଫିୟତ ଦେବାକୁ ପଡ଼ିବ, ନା ନିଜକୁ ।

ମେନ୍‌ରାସ୍ତା ଛାଡ଼ି ସେକ୍ଟର ଭିତର ଏ ରାସ୍ତାରୁ ସେ ରାସ୍ତା ଦେବ ଘୂରି-ବୁଲୁଥିଲା, ସତେ କି କିଏ ପିଛା ଧରିଥିବାର ତାର ସନ୍ଦେହ ହେଉଛି, ତେଣୁ ତାକୁ ଭୁଆଁ ବୁଲେଇବା ଦେବର ମତଲବ୍ ।

ତିନିଦିନ ତଳେ ବାପା ଓ ଭାଇଙ୍କ ଉପଦେଶ ସେସନ୍ ପରେ ଘରୁ ବାହାରି ସେ ସିଧା ଯାଇ ପହଞ୍ଚିଥିଲା ତାର ପ୍ରଫୁଲ୍ଲ, ରବିପ୍ରମୁଖ ସାଙ୍ଗଙ୍କ ପାଖରେ । ଜଣେ ପ୍ରସ୍ତାବ ଦେଲା, ଚାଲ ବାଜିଏ ତାସ୍ ହୋଇଯାଉ । କାହାରି ଦ୍ୱିମତ

କଥିଲ, ନ ଥାଏ ପ୍ରାପ୍ତ କେବେ ବ । ଖେଳ ଆରମ୍ଭ ନ ହେଉଣୁ ଦେବ କହିଲା—"ମୋର ମନେଅଛି ମୋ ଅଜା ମରିବା କେତେ ବର୍ଷ ଆଗରୁ ଦାଣ୍ଡପିଣ୍ଡାରେ ବସି ଖାଲି ତାସ୍ ଆଉ ଗପରେ ସମସ୍ତ କଟାନ୍ତି ।"

ଖେଳ ଲହସରେ ତା କଥା କେହି ଶୁଣିଲେ କି ନାହିଁ ଜଣାପଡ଼ିଲାନି । ଦେବ ହାତରେ ପଞ୍ଝା ପରି ସଜା ତାସ୍‌ଗୁଡ଼ିକରେ ଦୃଷ୍ଟି ରଖି ପୁଣି କହିଲା—"ପିଲାଦିନେ ମୁଁ ସ୍କୁଲ୍‌ରେ ଫୁଟ୍‌ବଲ୍ ଖେଳୁଥିଲି । ଭଲ ଖେଳୁ ନ ଥିଲି ଅବଶ୍ୟ । ତେବେ ମଜା ଥାଏ ଖେଳିବାରେ ।"

ଉତ୍ତର ମିଳିଲା—"ମଜା ତ ଥାଏ ବହୁତ କଥାରେ । ତେବେ ଯିଏ ଖେଳକୁ କ୍ୟାରିୟର କରିଦ ସିଏ ଆଜିକାଲି ଖେଳିବା କଥା, ମଜାପାଇଁ ଆଉ ଆମେ ଖେଳରେ ମାତିପାରିବା ବର୍ଷସାରା ? ଏଇ ତାସ୍‌ଖେଳ କ'ଣ ଖରାପ ।"

ପୁଣି ଜଣେ ଦେବ ସଙ୍ଗେ ସହମତ ହେଲା—"ସତକଥା, ତାସ୍ ଖେଳଟା ଆଉ ଜମୁନି । କାଲି ଗୋଟାଏ ସିନେମା ଦେଖାଯାଉ, ଯେ ଯାହାର ପେମେଣ୍ଟ । ଆଉ ଦିନ କେତୋଟା ପରେ ତ ମ୍ୟାଚ୍ ଆରମ୍ଭ ହୋଇଯିବ, ଆଉ ବୋର୍ ହେବାର ପ୍ରଶ୍ନ ନାହିଁ ।"

ଦେବ ତାର ପାଳି ସତ୍ତ୍ୱେ ଖେଳକୁ ଭୁଲିଯାଇଥିବା ଭଳି ଚିନ୍ତିତ ସ୍ୱରରେ କହିଲା—"ସିନେମା ହେଉ କି ମ୍ୟାଚ୍ ହେଉ ତମର କଣ କରିବାର ଅଛି ସେଠି ? ଖାଲି ବସି ଜୁଲୁ ଜୁଲୁ ଦେଖୁଥାଅ । ଅତି ହେଲେ ତାଳି ମାରିପକାଅ, କି ଖୁସିରେ ଚଳେଇ ଉଠି ହାତଗୋଡ଼ ବାଡ଼େଇ ପକାଅ ।"

ଅନ୍ୟମାନଙ୍କ "ହଉ-ହଉ-ଖେଳ ଆଗ !" ସେ ତାସ ପକେଇଲା ଓ ନରେଶ୍ ଗୋଟେଇ ନେଉ ନେଉ କହିଲା—"ତାହେଲେ କ'ଣ କରିବା କହୁଚୁ ? ମୁଣ୍ଡ ଖର୍ଚ୍ଚ କରି ସ୍ପିଚ୍ ଦେବା ନା ସୋସିଆଲ୍ ଓ୍ୱାର୍କ୍ କରିବା—ହରିଜନ ବସ୍ତି ସଫେଇ ଇତ୍ୟାଦି !"

ସମସ୍ତଙ୍କ ହସରେ ଆଦୌ ଯୋଗ ନ ଦେଇ ଦେବ ଧୀରସ୍ଥିର ଭାବେ କହିଲା—"ଅନ୍ୟପାଇଁ କିଛି କରି ନପାରୁ । ନିଜ ଖୁସିପାଇଁ କିଛି କରିବାର ଉପାୟ ନାହିଁ ? ଏମିତି ଦେଖୁ ଦେଖୁ ଛୁଟି ସରିଯିବ, ତା' ପରେ ବହି ଘୋଷା, ଲୁକଲାର

ପ୍ରସ୍ତୁତ, ଆଉ ଭାଗ୍ୟରେ ଥିଲେ ସ୍ଥିର ନିଷ୍ଠୁର ଚାକଣା ବାଜଣା ଯେଉଁଠୁ । ତମ ନିଜ ମୁଣ୍ଡ, ହାତ ଗୋଡ଼ ଘୁଣ ଧରିଯିବଣି ସେତେବେଳକୁ ।"

ଗମ୍ଭୀର ବାତାବରଣକୁ ହଠାତ୍ ଭାଙ୍ଗି ଜଣେ କହିଲା—"ତୁ ନିୟମିତ ଦଣ୍ଡ ବୈଠକ୍ କର, ଏକ୍ଟିଭ୍ ରହିବାକୁ ଚାହୁଁଛୁ ଯଦି ।"

ଦେବ ତଥାପି ନିରୁତ୍ତର । ଗାମ୍ଭୀର୍ଯ୍ୟରେ ମୁଣ୍ଡ ହଲାଇ କହିଲା—"ନା । ଜବରଦସ୍ତି ବ୍ୟାୟାମ କଥା ମୁଁ କହୁନି । ଯିଏ ବି ତ ହସାଖୁସି ଜୀବନ—ବଡ଼ ମଜା ।"

ଖେଳ ଭାଙ୍ଗିଲାବେଳେ ଆସିଲା ବେଳକୁ ରବି ଅଧା ଥଟ୍ଟା ଅଧା ଗମ୍ଭୀର ସ୍ୱରରେ କହିଲା—"ଶୁଣ ଦେବ ! ମୁଁ ଭାବୁଛି, ତୁ ପଲିଟିକ୍ସ୍ କର ଯା, ଫ୍ରି ଏକ୍ଟିଭ୍ ଜୀବନ ଚାହୁଁଛୁ ଯଦି । ଆମେ ବାବୁ ନିରୀହ ଲୋକ, ବହି ପଢ଼ିବୁ, ପରୀକ୍ଷା ଦେବୁ, ଅତି ହେଲେ ତାସ୍ ଖେଳିବୁ, ମ୍ୟାଚ୍ ଦେଖିବୁ । ଆମଦେଇ ନା ହେବ ହିରୋଗିରି, ନା ହେବ ଗୁଣ୍ଡାଗିରି ।

ସେଇଦିନ ରାତିରେ ଖାଇବାବେଳେ ସେ ଲକ୍ଷ୍ୟ କରିଥିଲା ବାପା ତା ଉପରେ ବିରକ୍ତ ଅଛନ୍ତି । ଭାଇ କିଛି ନ ହେଲାଭଳି ମୁହଁକରି କହିଲେ—"ମୁଁ ଯେତେବେଳେ ଷ୍ଟେଟ୍ସରେ ଥିଲି, ସେଠିକା ପିଲାମାନଙ୍କର ଗୋଟାଏ କଥା ମୋତେ ସବୁଠୁ ଭଲ ଲାଗିଲା—ସମୟକୁ ସେମାନେ ଯେଉଁ ମୂଲ୍ୟ ଦିଅନ୍ତି । ଆଉ ପରିଶ୍ରମର ମର୍ଯ୍ୟାଦା—ଯେ କୌଣସି ରକମ ପରିଶ୍ରମ ହେଉ, ସେଠି ପିଲାଏ ଛୁଟି ଦିନରେ ହୋଟେଲ କି ଦୋକାନରେ କାମକରି ପକେଟ୍ ମନି ରୋଜଗାର କରନ୍ତି ।"

ଦେବ ଥାଳିକୁ ଅନେଇ ଏକ ଧ୍ୟାନରେ ଖାଉଥିଲା ଚୁପ୍‌ଚାପ୍ । "ଜାଣିଛି ମୁଁ, ସେ ଦେଶ କଥା ଜାଣିବା ଲାଗି ଷ୍ଟେଟସ୍ ଯିବା ଦରକାର ନାହିଁ । ଯେମାନେ ଛୁଟି ଦିନ ନଷ୍ଟ ନ କରି ଟଙ୍କା ଅର୍ଜନ୍ତି ନିଜ ପାଇଁ, ନିଜର ଫୂର୍ତ୍ତି ପାଇଁ । କୁଆଡ଼େ ଗଲେ, କୁଆଡ଼େ ଆସିଲେ, ସେଥିପାଇଁ ଉଠୁଣୁ ବସୁଣୁ ତାଙ୍କୁ ଶାସନ ଶୁଣିବାକୁ ପଡ଼େ, ନା ପଡ଼ିଶା ଝିଅଟିକୁ ଅନେଇ ଦେଉଣୁ ତାଗିଦ୍ ମିଳେ ?"

ତା ପରଦିନଠୁ ସେ ତା ସାଙ୍ଗମାନଙ୍କୁ ଦେଖା କରନ୍ତି, ଯଦିଓ ତା ପରବର୍ତ୍ତି କାର୍ଯ୍ୟକ୍ରମରେ ଯେ ବାପା କ ଭଲ କଥା ଖବର ପାଇଛନ୍ତି ବା ପାଇଲେ ତା ଉପରେ ଅଧିକ ଖୁସି ହେବେ ତା ନୁହେଁ ।

ହଠାତ୍ ଗୋଟାଏ କଥାଠି ଘୂରେଇ ହେଉଥିବା ମନକୁ ଦେବ ଜବର୍ଦ୍ଦସ୍ତ ଉଠେଇ ଆଣି ଉପସ୍ଥିତରେ ଲଗେଇଲା । ରାସ୍ତାର ଦୃଶ୍ୟ ଯେହେତୁ ଚିତ୍ତାକର୍ଷକ, ସାଇକଲ୍ ଚଲାଇ ବେଲ୍‌ବଟମ୍ ପିନ୍ଧା ତରୁଣୀ ଦଳେ ଇଂରେଜୀ ଗୀତ ଗାଇ ଗାଇ ଯାଉଛନ୍ତି । ଏମାନଙ୍କୁ ଦେଖିଲେ ତାକୁ ଉଦ୍ଭଟ ଲାଗେ, ବମ୍ବେରୁ କି ସିନେମା ପର୍ଦ୍ଦାରୁ ଓହ୍ଲେଇ ଆସିଥିବା ପରି ଦିଶନ୍ତି । ସେଇମାନଙ୍କ ପରି ସୁନ୍ଦର ବି ।

ଝଲକାଏ ପବନ ପରି ସେମାନେ ଚାଲିଗଲେ । ତା ପରେ ଯେଉଁ ନିଛାଟିଆ ରାସ୍ତାକୁ ସେଇ ରାସ୍ତା । ଗୁଲଗୁଲିଆ ପାଗ ଆଉ ପବନକୁ ଖାପ୍ ଖାଇଲା ଭଳି କେଉଁଠୁ ଗୋଟିଏ ଚଢ଼େଇର ସରୁ ସ୍ୱର ଶୁଭୁଛି । ଦେବର ଖିଆଲ୍ ହେଲା ଆଜିକାଲି ଆଉ କେଉଁ କଥା ନିଚ୍ଛିତା ହୋଇ ମନରେ ପଶୁନି । ଆକାଶରେ ମେଘ ଦେଖିଲେ ଗତ ସିନେମାର ହିରୋଇନ୍ ଗାଇଥିବା ବିରହ ଗୀତ ମନେପଡ଼ୁଚି ତ କୋଇଲିର କୁହୁ ଶୁଣିଲେ ସାହିତ୍ୟ କ୍ଲାସ୍‌ରେ ସାର୍‌ଙ୍କ କଡ଼ା ସ୍ୱର ଶୁଭୁଚି— ଏଇ କବିତାଟି ଭଲକରି ପଢ଼ିଥାଅ, ନିଶ୍ଚୟ ଆସିବ ପରୀକ୍ଷାରେ ।"

ଆଗ ଡାହାଣହାତ ରାସ୍ତାରେ ଗଲେ ମେନ୍‌ରୋଡ୍ । ଏଥର ଘରକୁ ଫେରିଯାଉ । ହଳଦିଆ ଝଡ଼ାଫୁଲ ଉଡ଼ୁଥିବା ରାସ୍ତାରେ ସେ ପିଁ ପିଁ ପେଡାଲ୍ ମାରିଲା; କିନ୍ତୁ ଛକରେ ପହଞ୍ଚିବାର ଖଣ୍ଡେ ଆଗରୁ ତାକୁ ଯେମିତି ଧାଏଁ କିନା ବ୍ରେକ୍ କଷିବାକୁ ହେଲା ।

ମେନ୍ ରୋଡ଼ଠି ରାସ୍ତାଟା ଠିକ୍ ମିଶିଥିବା ଜାଗାରେ ସନ୍ଦ୍ୟ ଭିଡ଼ଟାଏ । ଗାଡ଼ି ଦୁଇଟି ପାଖାପାଖି ଦିଶୁଚି । ସାଇକଲ୍‌ରୁ ଓହ୍ଲାଇ ବ୍ୟସ୍ତ ଭିଡ଼ ଭିତରକୁ ଉଦ୍ବେଗ ପଶି ଯାଉ ଯାଉ ଦେବ ଆଉ କେତେକଙ୍କ ପରି ପଚାରୁଥାଏ— "କଣ ହେଲା, କଣ ହେଲା ? ଏକ୍‌ସିଡେଣ୍ଟ୍ ?"

ସେତେବେଳକୁ ଡ୍ରାଇଭର୍ ସିଟ୍‌ରେ ଷ୍ଟିଅରିଂ ଉପରେ ଢଳି ପଡ଼ିଥିବା ରକ୍ତ ସରସର ଲୋକଟିକୁ ଫୁଟ୍‌ବଲ୍ ଖେଳାଳୀ ଅମର ମହାନ୍ତି ବୋଲି ଲୋକେ ଚିହ୍ନଟ କରିସାରିଥିଲେ । କାର୍ ଭିତରେ ମୃତାହତଙ୍କ ସଂଖ୍ୟା ଆହୁରି ତିନି । ସାମ୍ନା କାଚ, ଲାଇଟ୍ ଭଙ୍ଗା ଟ୍ରକ୍ ନିଶ୍ଚଳ ହୋଇ ଠିଆ ହୋଇଥାଏ, ଦାନ୍ତ ଖଞ୍ଜି-ଯାଇଥିବା କି ଆଖିଟାଏ ଫୁଟି ଯାଇଥିବା ଅସାମୀ ବେଶି ଭୟଙ୍କର ଦିଶୁଥିବା ପରି । ଆଉ ଲୋକେ ବି ହାତକଡ଼ା ପିନ୍ଧା ଆସାମୀ ପରି ଟ୍ରକ୍ ଓ ତା ଚମ୍ପଟ ମାରିଥିବା ଡ୍ରାଇଭରକୁ ଗାଳି ଦେଉଥାନ୍ତି, ଛି ଛି କରୁଥାନ୍ତି ।

ଉପସ୍ଥିତ କ୍ଷେତ୍ରରେ ହଠାତ୍ ନେତା ପାଲଟି ଯାଇଥିବା ଜଣେ ଲୋକର ହାତ ଧରି ଦେବ ପଚାରୁଥାଏ—“ଆଜ୍ଞା ଟିକିଏ ଶୁଣନ୍ତୁ ! ଆପଣ ଠିକ୍‌କରି ଜାଣନ୍ତି ଏଇ ଅମର ମହାନ୍ତି ? ଷ୍ଟେଟ୍ ଫୁଟ୍‌ବଲ୍ ପ୍ଲେଆର୍ ଅମର ମହାନ୍ତି ଏଇ ? ସତ କହି କୁହନ୍ତୁ, ମୁଁ ତାଙ୍କର ଜଣେ ବହୁତ ବଡ଼ ଫ୍ୟାନ୍...”

ବ୍ୟସ୍ତ ଲୋକଟି ପ୍ରଥମେ ଚିଡ଼ିଯାଇ, ତା’ପରେ ଦେବର କାକୁତି ଦେଖି ତା ଗୋଡ଼ରୁ ମୁଣ୍ଡଯାଏ ଚାହିଁ ନିଜକୁ ଆଉ ଟିକିଏ ବିଶିଷ୍ଟ ବୋଧକଲା ପରି କହିଲା “ହଁ ଆଜ୍ଞା, ସିଏ ଅମର ମହାନ୍ତି । ତେବେ ସିଏ ଗଲଣି ସିଏ ଗଲଣି । ବାକି ବଞ୍ଚିଥିବା ଲୋକଙ୍କୁ ଶୀଘ୍ର ଡାକ୍ତରଖାନା ନିଆଯିବା ଦରକାର ।”

ତଥାପି ଫୁଟ୍‌ବଲ୍ ଖେଳାଳୀ ଅମର ମହାନ୍ତି ଏ ଜଗତରୁ ଗଲଣି ବୋଲି ଦେବର ବିଶ୍ୱାସ ହେଉ ନ ଥାଏ । ପଅରିଦିନ ତା ମ୍ୟାଚ୍ ଥିଲା ଷ୍ଟାଡ଼ିୟମ୍‌ରେ । କାର୍ ଭିତରର ଅନ୍ୟ ଆହତଙ୍କ ସଙ୍ଗେ ଅମର ମହାନ୍ତିର ଦେହ ସେଠୁ ନିଆଯିବାଯାଏ ଦେବ ଅପେକ୍ଷା କଲା । ତା’ପରେ ମୁଣ୍ଡପୋତି ସାଇକଲ୍ ଧରି ପାଦେ ପାଦେ ଚାଲିଲା । ଖଣ୍ଡେଦୂର ଯାଇ ପଛକୁ ଫେରି ଚାହିଁଲାବେଳକୁ ଭିଡ଼ ଭାଙ୍ଗି ଗଲଣି ।

ନିଶ୍ୱାସଟିଏ ମାରି ସେଇଠୁ ଦେବ ସାଇକଲ୍ ଉପରେ ଆରୂଢ଼ ହେଲା । ରାସ୍ତାରେ ଯାଉଥିବା ଦଳେ ଦି’ ଦଳ ଲୋକଙ୍କ ଭିତରେ ଏକ୍‌ସିଡେଣ୍ଟର ଚର୍ଚ୍ଚା । ଇଣ୍ଟ୍ରାଭେନସ୍ ଇଞ୍ଜେକ୍‌ସନ୍‌ଟିଏ ପରି ଖବରଟିଏ ଏବେ ଏ ଲୋକଙ୍କ ମାଧ୍ୟମରେ

ସହରର ଦେହସାରା ଖେଳିଯିବ । ଦେବ ଏଥର ଜୋର୍‌ରେ ସାଇକଲ୍ ଛୁଟାଇଲା ।
କାଁ ଭାଁ ଗୋଟିଏ ଅଧେ ଗାଡ଼ି, ସ୍କୁଟର, ରିକ୍‌ସା । ତତୋଽଧିକ ପଦଯାତ୍ରୀ ।
ଯେମିତିକୁ ସେମିତି ଓଦାସ୍ତା । ଥଣ୍ଡା ପବନ ।

ଦେବ ନଜରର ଶୀତଳ ପଡ଼ି ଆସୁଥିବା ଦେହ, ମନକୁ ଛକର ଦୃଶ୍ୟଟି ସ୍ମୃତିପଟକୁ ଆଣିବାପୂର୍ବକ ସଳଖେଇ ନେଲା । ଏତେ ଶୀଘ୍ର ଯେମିତିକୁ ସେମିତି ? କିଏ କହିଲା । ମୋ ଠାକୁରା ଲୋମମାନେ ଏଯାଏଁ ଶୋଇନାହାନ୍ତି ଦେଖୁନ । ମୋ ଗୁଡ ଭିତରେ ସଦ୍ୟ ଦୁର୍ଘଟଣାର ବିଷ—ତାର ଦୁଃଖ, ଭୟାବହତା ଏମିତି ପୂରିଯାଇଛି ଯେ ଲଗୁଚ ପଞ୍ଜରା ଠେଲି ବାହାର ଆସିବ କି । ଆଉ କେତେକଙ୍କୁ ବାଣ୍ଟି ମନକୁ ପତଳା, ହାଲୁକା କରି ନ ଦେଲେ ଖୋଲା ନିଃଶ୍ୱାସ ମାରି ହେବନାହିଁ ।

ତେଣୁ ତିନିଦିନ ପରେ ଦେବ ପୁଣି ବୁଲିଲା ତା ସାଙ୍ଗମାନେ ଏକାଠି ହେଉଥିବା ପରିଚିତ ଜାଗାମାନଙ୍କୁ···କଲେଜ ଗେଟ୍, ସିନେମାହଲ୍ ସାମ୍ନା, ବଜାର ପାଖ ପୋଲ ଇତ୍ୟାଦି; କିନ୍ତୁ କୌଣସି ଗୋଟିଏ ହେଲେ ସାଙ୍ଗକୁ ସେ ଭେଟିଲା ନାହିଁ । ଭାଗ୍ୟ ଏମିତି ଯେ କେବେ ସେ ସାଙ୍ଗ ହେଉ ନ ଥିବା ଯଦୁନାଥର ଘର-ପାଖେ ତା ସାନଭାଇକୁ ପଚାରି ବୁଝିଲାବେଳକୁ ଯଦୁ ଘରେ ନାହିଁ, କୁଆଡ଼େ ଯାଇଛି । ଯଦୁନାଥ ଫୁଟ୍‌ବଲ୍ ମ୍ୟାଚ୍ ଦେଖେ ।

ସିନେମାହଲ ସାମ୍ନା ପାନ ଦୋକାନଟି ଅଟକି ଦେବ ସିଗ୍ରେଟ୍ ମାଗିଲା ଓ ପକେଟ୍‌ରୁ ପଇସା କାଢ଼ୁ କାଢ଼ୁ ଅତି ସହଜ ଶୁଭିଲା ପରି ସ୍ୱରକରି କହିଲା—"ଅମର ମହାନ୍ତି ମରିଗଲା ଏକ୍‌ସିଡେଣ୍ଟରେ ଶୁଣିଲ ନା, ଷ୍ଟେଟ୍ ଫୁଟ୍‌ବଲ୍ ପ୍ଲେୟାର୍ ।"

ଚୂନ ଖଇର ବୋଳା ଚରଚର ପାନ ଭାଙ୍ଗୁଥିବା ହାତକୁ ମୁହୂର୍ତ୍ତକ ପାଇଁ ପଇସା ରଖିବାରେ ଲଗାଇ ଦୋକାନୀ କହିଲା···"ହେଇଥିବ ଆଜ୍ଞା ! କଣ ଆଜିର କଥା ନା ?" ପୁଣି ତା ମୋଟା ଖଇରବୋଳା ଆଙ୍ଗୁଠିମାନ ବିଭିନ୍ନ ପାନ ମସଲା ଡବାମାନଙ୍କରେ ଚରଚର ବୁଡ଼ ମାରିଲେ ଓ ଦେବକୁ ବର୍ଣ୍ଣନା କରିବାର ସୁଯୋଗ ନ ଦେଇ ସେ ଉଚ୍ଚସ୍ୱରରେ ଦର୍ଶନ ବାଢ଼ିଲା—"ଗାଡ଼ିଉରକେଲା ପରି ସହରରେ ଆଜ୍ଞା, ମଣିଷ ଜୀବନର କୋଉ ଠିକଣା ଅଛି ? ଏଇ ଅଛି, ଏଇ ନାହିଁ ।

—ଆରେ ହେ ଜଗନ୍ନା । ତୋ ପୁତୁର ମୋଠୁ ପଇସା ନେଇଥିଲ, କେବେ ଫେରେଇବ ?"

ଦୋକାନୀର ନିର୍ବୋଧ ନିଶୁଆ ମୁହଁରୁ ଆଖି ଫେରେଇ ଦେବ ଦୁଇଓଠ ସିଗ୍ରେଟ୍‌ଟି ଉପରେ ଚିପିନେଲା ।

ଘରେ ପହଞ୍ଚିଲାବେଳକୁ ଭଉଜ ସଜବାଜ ହୋଇ ବାହାରିଛନ୍ତି କୁଆଡ଼େ, କହିଲେ—"ଦି'ପହରରୁ ଯାଇ କୁଆଡ଼େ ବୁଲୁଚ କହିଲ ? ଛି, ଜଳଖିଆ ଥଣ୍ଡା ହୋଇ ରହିଛି ।" ଦେବ ଗମ୍ଭୀର ହୋଇ ସାଇକଲ୍ ଭିତରକୁ ନେଲା— "ତମେ କଣ ପାଇବ ସେଥିରୁ ? ମୁଁ କୁଆଡ଼େ ଯାଇଥିଲି, କଣ ଦେଖିଲି ? ଅମର ମହାନ୍ତିର ନାଁ ଶୁଣିଚ ? ତମ ପାଇଁ ତ କେବଳ ବର୍ଷାଳିଆ ମାନ୍ଦା ଦି'ପ୍ରହରଟାଏ ଗଲା ।"

ସେଦିନ ସନ୍ଧ୍ୟାପରେ ଦେବ ଆଉ କୁଆଡ଼େ ବୁଲିବାକୁ ଯାଇନି । ଅନ୍ୟମନସ୍କ ଭାବେ ରେଡ଼ିଓର ନବ୍ ଘୂରାଇଲାବେଳେ ତାକୁ ଗୋଟାଏ ରକମର ଆଶ୍ୱସ୍ତି, ଛଟପଟ ଲାଗୁଥାଏ—ଯେମିତି କଥାଟାଏ ଖଣ୍ଡିଆ ରହିଗଲା, ଗୋଟାଏ ସୁନ୍ଦର ଗଢ଼ା ଶିଳ୍ପ ଦେହରେ ବଡ଼ ଗୋଟିଏ ଫାଟ । ସେଇ ଟିକକ ଯୋଡ଼ ଯାଉଥିଲେ ସମ୍ପୂର୍ଣ୍ଣ ଅପୂର୍ବ କଥାଟିଏ ହୋଇଥାଆନ୍ତା ।

ରାତିରେ ବିଛଣାରେ ପଡ଼ି ପୁତୁରା ଟୁକୁକୁ ଗପବହିଟିଏ ପଢ଼ି ଦେବ ଶୁଣାଉଥାଏ । ଗରିବ ବ୍ରାହ୍ମଣଟିଏ ସେଦିନ କିଛି ନ ପାଇ ପୋଖରୀ କୂଳରେ ଆଞ୍ଜୁଳିରେ ପାଣି ପିଉ ପିଉ କହୁଥାଏ—ଅମୁକ ଖାଇଲି, ସମୁକ ଖାଇଲି । ତା' ଉପରେ ଲକ୍ଷ୍ମୀ ଦୟା ପରବଶ ହୋଇ ଅସରନ୍ତି ହାଣ୍ଡିଟିଏ ଦେଲେ ଯେ ବ୍ରାହ୍ମଣଟି ଯେତେ ଦୁର୍ଲ୍ଲଭ ଖାଦ୍ୟମାନ ସେଥିରୁ ଖାଇଲେ, ବାଣ୍ଟିଲେ ବି ସେ ସରୁନଥାଏ । ଗପ ସାରି ବହି ବନ୍ଦକରି ଟୁକୁକୁ ଚିଡ଼ାଇବାପାଇଁ ଦେବ କହିଲା—"ଯାହା କହ ଟୁକୁ, ଏସବୁ ବହିରେ ଯେତିକ ବାଜେ ଗପ ଥାଏ । ଏମିତି ନିଷ୍କର୍ମା ଲୋକଟିଏ ଉପରେ ଦେବୀ ଯା ଦୟାକଲେ କାହିଁକି ?" ତା'ପରେ ଟୁକୁର ବଲବଲ ମୁହଁକୁ ଚାହିଁ ତାକୁ ବୁଝେଇଦେବାକୁ ଚେଷ୍ଟାକଲା—"ବ୍ରାହ୍ମଣଟିର ପରିଶ୍ରମ କରି ଖାଇବା କଥା, କ'ଣ କହୁଛୁ ? ଖାଲି କଳ୍ପନା କରିଦେଲାକ୍ଷଣି ତମ ଇଚ୍ଛା ସବୁ ଫଳିଯିବ, କଥାମାନ ଘଟିଯିବ, ଏ କ'ଣ ହୁଏ ? ନା ଏସବୁ ଭଲକଥା ?"

ଶୋଇଲାପରେ ସେ ସ୍ୱପ୍ନଟିଏ ଦେଖିଲା । ଶୂନ୍‌ଶାନ୍‌ ରାସ୍ତାରେ ସେ ସାଇକେଲ ଚଳାଇ ଯାଉଛି—ସବୁ ଘରଗୁଡ଼ିକର ଝରକା ଦୁଆର ବନ୍ଦ, ସବୁ ଗଛମାନ ଠୁଣ୍ଠା, ନୁଖୁରା, ରାସ୍ତାରେ ଗୋଟିଏ ବି ଝଡ଼ା ହଳଦିଆ ଫୁଲ ନାହିଁ । ଆଉ ସାଇକେଲ ଗଡ଼ୁଛି ଧୀରେ ଧୀରେ ଅଥଚ ତା ହାତଗୋଡ଼ ସବୁ ଝିମ୍‌ ଝିମି ଖାଇ ଶୂନ୍‌ ପଡ଼ିଯାଇଛି । ହଠାତ୍‌ ଦେଖିଲାବେଳକୁ ରାସ୍ତାଟିରେ ଅମୂଲ୍ୟ ରତ୍ନଗୁଡ଼ିଏ ପଡ଼ି ଝଟକୁଛି । ତା'ପରେ ସେ ଗୋଟାଇ ଲାଗିଛି ଓ ରତ୍ନମାନଙ୍କ ସଂଖ୍ୟା ବଢ଼ି-ଯାଉଛି, ଯେତେ ଗୋଟାଇଲେ ସରୁନାହିଁ । ମୁହଁ ଟେକି ଚାହିଁଲାବେଳକୁ ସେ ଗୋଟିଏ ଭିଡ଼ ମଝିରେ, ବହୁତ ମୁହଁ ତାକୁ ଉତ୍ସୁକ ହୋଇ ଚାହିଁଛନ୍ତି, ଆଉ ଚାରିଆଡ଼େ ହାତ ପାତିଥିବା ଲୋକଙ୍କୁ ସେ ତା ହାତର ଜିନିଷ ବାଣ୍ଟୁଛି ।

ସକାଳୁ ନିଦ ଭାଙ୍ଗିଲାକ୍ଷଣି ପ୍ରଥମେ ତାର ଛକର ଦୃଶ୍ୟ ମନେପଡ଼ିଲା, ତା'ପରେ ଗତ ରାତିର ସ୍ୱପ୍ନ । ତା' ଖିଆଲ୍‌ ହେଲା ଯେ ଆଜିର ଖବର କାଗଜରେ କାଲିର ଦୁର୍ଘଟଣାର ଫଟୋ ସହ ବିଶଦ୍‌ ବିବରଣୀ ବାହାରିବ ନିଶ୍ଚୟ—ମୁହଁମାନଙ୍କରେ ବିସ୍ମୟ ଓ ସମବେଦନାର ଭାବମାନ ଉକୁଟାଇବ ନୂଆକରି । ପ୍ରତି ଖବର କାଗଜ କପିର ଯଦି ଚେତନା ଥାଆନ୍ତା, ତାକୁ ପ୍ରତି-ମୁହଁର ଭଙ୍ଗୀରେ ଝଲକାଏ ଲେଖାଏଁ ଛକ—ଅନୁଭୂତି ଆସନ୍ତା, ଆଉ ଲାଗନ୍ତା ସତେକି ସେଇ ଏ ଘଟଣାର ବାର୍ତ୍ତା ଆଣିଦେଇଛି ଯେହେତୁ, ସେ ନ ଥିଲେ ଘଟଣାଟି ଘଟି ନ ଥାନ୍ତା ।

ଖବର କାଗଜରେ ଅବଶ୍ୟ ଦେବ ଘଟଣାସ୍ଥଳରେ ଥିବା କଥା ବାହାରିବ ନାହିଁ । ଫଟୋରେ ବି ସମ୍ଭବତଃ ନ ଥିବ ସେ । ତେବେ ଏ କଥା ସତ ଯେ ଘଟଣାଟି ଯେତେବେଳେ ଘଟିଲା – ସେ ସୁଘଟଣା ହେଉ କି ଦୁର୍ଘଟଣା ହେଉ—ତା ପରିସୀମାକୁ ଦେବ ଛୁଇଁଛି ନିଶ୍ଚୟ ଓ ନିଜ ଦୃଷ୍ଟିରେଖା ବଢ଼େଇ ଅମର ମହାନ୍ତିର ଦେହକୁ ଛୁଇଁ ସ୍ୱତନ୍ତ୍ର କୋଣ ତିଆରିଛି । ବାସ୍ତବରେ ସେ ପହଞ୍ଚି ନଥିଲେ ଘଟଣାଟି ଘଟିଥାଆନ୍ତା କି ନାହିଁ ବା ଟିକିଏ ଆଗରୁ ପହଞ୍ଚିଥିଲେ ଘଟଣାଟି କେଉଁ ଆକାର ଧରିଥାନ୍ତା କିଏ କହିବ ? ଘଟଣା ଅବଶ୍ୟ ଆପେ ଆପେ ଘଟେ ନାହିଁ, ତେବେ ପାରିପାର୍ଶ୍ୱିକ ପରିସ୍ଥିତି ନ ଥିଲେ କେଉଁ ଗୋଟିଏ ଲୋକ ସମ୍ମୁଖରେ ଘଟଣା ଘଟେଇଦେବ ଭଲା !

ସେଦିନ ଅପରିଚିତ ତା କଲେଜ—ସାମ୍ନାସାଙ୍ଗ ଭିଡ଼ପାଖେ ନ ପହଞ୍ଚୁଣୁ ଜଣେ ତାକୁ ପାଟିକରି ପଚାରିଲା—"ଦେବ ଶୁଣିଲୁଣି ?"

ଦେବ ବିଷୟବସ୍ତୁ ଶୁଣିବା ପୂର୍ବରୁ ସେ ବ୍ୟଗ୍ର ମୂର୍ତ୍ତିମାନଙ୍କର ଅନ୍ତରଞ୍ଜିତ ବିଷାଦରୁ ବୁଝିଗଲା କୋଉ କଥା, କହିଲା ଗତ କାଲି ଅମର ମହାନ୍ତିର ଏକ୍‌ସିଡ଼େଣ୍ଟ କଥା ତ ? ଆରେ ଭାଇ, ମୋ ଆଖି ଆଗରେ ପରା ଘଟିଲା କଥାଟା ।

ସମସ୍ତଙ୍କ ଦୃଷ୍ଟି ତା ଉପରେ କେନ୍ଦ୍ରିତ ହୋଇଥିଲାବେଳେ ଦର୍ଶନାତ୍ମକ ଭଙ୍ଗୀରେ ଫାଳେ ପାଟି ବଙ୍କାଇ—ଯାହା ହସ କି ଦୁଃଖ ସମ୍ପର୍କରେ ବୁଝାପଡ଼ିବ ନାହିଁ—ସେ ସାଇକଲରୁ ଓହ୍ଲାଇଲା ।—"କହୁଚି, କହୁଚି ସବୁକଥା । କାଲି ମୁଁ ହିଁ ତ ଅମର ମହାନ୍ତିକୁ ସେ କାରଚକରୁ କାଢ଼ିଚି ।"

ସ୍ୱରଆଡ଼ୁ ପାଖେଇ ଆସୁଥିବା ଭିଡ଼ର ଉତ୍ସୁକତା ମଝିରେ ଠିଆହୋଇ ଦେବ ବଖାଣିଲା—"ମୁଁ ଏଣୁ ଆସୁଥାଏ ଛକ ପାଖାପାଖି କାରଟା ମୋ ପଛପାଖ ଆସିଲା । ଠିକ୍ ମେନ୍‌ରୋଡ୍ ପାଖେ —ତେଣୁ ଟ୍ରକ୍‌ଟା ବି ଆସୁଥାଏ, ମେନ୍-ରୋଡ୍‌ରେ । ଶଳା ମଦୁଆ ଡ୍ରାଇଭର ଜମା କିଛି ସିଗ୍‌ନାଲ୍ କି ହର୍ଣ୍ଣ୍ ନ ଦେଇ ଧାଏଁକିନା ମୋଡ଼ିଦେଲା ଡାହାଣ ହାତ—କାରଟା କଡ଼କୁ କାଟୁ କାଟୁ ତ କଚ ହୋଇଗଲା ଟ୍ରକ୍‌ଟା—ମୁଁ ଏଣେ ସେତିକିବେଳେ ସମ୍ଭାଳୁ ସମ୍ଭାଳୁ ଯାଇ ନାଳ ଭିତରେ ··"

ଅନ୍ତ ପାଖରେ ଠିଆ ହୋଇଥିବା ସାଙ୍ଗଟିଏ ହଠାତ୍ କଥାଟାଏ ଆବିଷ୍କାର କରିଥିବା ପରି ନାଟକୀୟ ଭାବେ ବଣିଆଙ୍ଗୁଠି ଦେଖାଇ ଦେବକୁ ଅଧା କଥାରେ ରୋକିଦେଲା, ଉଦ୍‌ବେଗ ଗଳାରେ କହିଲା···"ଅଚ୍ଛା, ଏଇଆ ବି ହୋଇପାରିଥାଏ ଯେ ତୁ ଏତ ବେଳୁ ଅମର ମହାନ୍ତି ଗୋଡରେ ହିଁ ବଜେଇବାକୁ ଯାଇ···?"

# ପ୍ରତିବିମ୍ବ

ଦିନେ ଦିନେ ଏମିତି ସକାଳୁ ରେଡ଼ିଓଟା ଅନ୍ କରିଦେଲାବେଳେ କୋଉ ପୁରୁଣା ଗୀତଟିଏ କାନରେ ପଡ଼ିଲେ, ଅକସ୍ମାତ୍ ସବୁ କିଛି ବଦଳିଯାଏ । ସଙ୍ଗୀତା ଆଶ୍ଚର୍ଯ୍ୟ ହେଇ ଭାବେ ଯେ ଏତେ ନିଜସ୍ୱ ଧାର୍ମି ସ୍ମୃତିମାନ ଏମିତି ଶସ୍ତା ଖୁଚୁରା ଜିନିଷଗୁଡ଼ାକ ସାଙ୍ଗେ ବି କେମିତି ଲେସି ହୋଇଯାଇଥାନ୍ତି । ପୁରୁଣା ବାକ୍ସ କି ଆଲମାରିର କୋଣରେ ରହିଯାଇଥିବା ଫର, ମଇଳା ଅଳନ୍ଧୁ ଝାଡ଼ୁ ଝାଡ଼ୁ ଟୁପ୍‌ଟାପ୍ ଖସି ପଡ଼ନ୍ତି କୋଉଁକାଳୁ ସାଇତା ଓ ବିସ୍ମୃତ ରତ୍ନମାନ । ହଠାତ୍ ଅସନା ହାତ ପାପୁଲିରେ ଚକ୍ ଚକ୍ ହୀରା, ମୁକ୍ତା । ଅସ୍ପଷ୍ଟ ଲିଭି ଲିଭି ଆସୁଥିବା ସ୍ମୃତି ସବୁ ଝଲସି ପୁରୁଣା ଛାତିଭିତରକୁ ଚମକାଇ ଉଜାଳି ଦିଏ ସଜଳ ଅନୁଭୂତି ହେଇ ।

ସେଦିନ କିନ୍ତୁ ଆହୁରି ଆଶାତୀତ ଘଟଣାଟିଏ ଘଟିଲା । ମନଭିତରେ ସକାଳର ଅନାହୂତ ତରଙ୍ଗମାନ ପ୍ରାୟ ମିଳେଇ ନଥାଏ । ଖାଇସାରିବା ପରେ ନଳୁଟିଆ ଦି'ପହରେ ସେଇ ହାଲୁକା-ବିଷାଦ ସ୍ମୃତିର ଅନୁଭୂତି ସଙ୍ଗୀତାକୁ ଶୁଆଇ ଦେଉ ନଥାଏ—ସେ ଶୋଇବା ଘରୁ ଭିତର ବାରଣ୍ଡା, ବାହାଘରୁ ପୁରୁଣା ଚିଠିତାଡ଼ା ଘାଣ୍ଟି ବୁଲୁଥାଏ, ଯେତେ କି ଆଉ କିଛି ଅନୁଭୂତି ବା ଅନୁଭବ ମିଳିଯିବ, ସକାଳୁ ମିଳିଥିବା ଉଦାସିଆ ପୁଲକଟାକୁ ଆଉ କିଛିବାଟ ଗଡ଼େଇନେବ । ଆଉ ସତକୁ ସତ ସେତେବେଳକୁ ଡାକବାଲା ଡାକିଲା ବାହାରେ—ସଙ୍ଗୀତା ନାଁରେ ଚିଠିଟିଏ । ଛାତିଟା ଧଡ଼୍‌କିନା ହେଲା ଉପରେ ହସ୍ତାକ୍ଷରଟା ଦେଖି ଏମିତି ଗୋଟେ ମୁହୂର୍ତ୍ତରେ ଆଜି ନ ଥିଲେ, ସେ ନିଜ ଆଖିକୁ ବିଶ୍ୱାସ କରିପାରି ନଥାନ୍ତା, ଗତକାଲି ହୁଏତ ସେ ଅଦୌ ଚିହ୍ନିବ ପାରି ନ ଥାନ୍ତା ହସ୍ତାକ୍ଷରଟା ।

ଧୀରେନ୍‌ର ଚିଠି ।

ଭିତରକୁ ଯାଇ କବାଟ ବନ୍ଦକରି ସୋଫାରେ ଭଲକରି ଆଉଜି ବସି ଚିଠି ଖୋଲିଲେ ସଙ୍ଗୀତା । ତା'ର ଭୟ ହେଉଥିଲା ଚିଠି ଖୋଲିସାରିଲା ପରେ ହୁଏତ ଉପରର ହସ୍ତାକ୍ଷର ତାକୁ ଧୋକା ଦେଇଥିବ । ନା । ଇତି । ଧୀରେନ୍

ବହୁ ଉପନ୍ୟାସ ଗଳ୍ପରେ ପଢ଼ିଥିବା ପରି ଚିଠିର ଆରମ୍ଭ, ବହୁଦିନ ପରେ ଅନ୍ୟଙ୍କୁ ବିବାହ କରି ଯାଇଥିବା ପୁରୁଣା ପ୍ରେମିକାକୁ ଏକଦା-ପ୍ରେମିକ ଯେମିତି ଚିଠି ଦେବାକଥା । ଦ୍ୱନ୍ଦ୍ୱ, ଭୟ, ଅନିଶ୍ଚିତତା : "ଚିଠି ପାଇ ଆଶ୍ଚର୍ଯ୍ୟ ହେଇଯିବୁ···ଭୁଲ ବୁଝିବୁ ନାହିଁ···ଅନୁରୋଧ ଚିଠିଟା ଶେଷଯାଏଁ ପଢ଼ିବୁ···" ଇତ୍ୟାଦି । ଭୁଲ୍ ନ ବୁଝିବା ପାଇଁ ଯଥେଷ୍ଟ ହେଲଭଳି କିନ୍ତୁ ଚିଠିରେ କୌଣସି ଜାଗାରେ ତା'ର ଉଦ୍ଦେଶ୍ୟ ଖୋଲିଖୋଲି ବ୍ୟକ୍ତ କରିନାହିଁ ଧୀରେନ୍ । ବରଂ ଅଦ୍ଭୁତ ଅନୁରୋଧଟିଏ କରିଛି । ସେ ଆସୁଛି ଏଠିକି ସୋମବାର ଦିନ, ସେଇଦିନ ଦି'ପହରେ ଯଦି ହୁଏ ପାଞ୍ଚନମ୍ବର ବଜାର ପାଖରେ ଦେଖା କରିବାକୁ କହିଛି ।

ସଙ୍ଗୀତା ଚିଠିଟିକୁ କୋଳରେ ଧରି ବସିରହିଲା । ସେଇମିତି ପାଟେ ଘିରି ବାଜିଲା । ତା' ସ୍ୱାମୀ ଅଫିସରୁ ଫେରିଲେ । ଗେଟ୍ ପାଖେ ସ୍କୁଟର୍ ରହିବା ଶୁଣି ସେ ଚିଠି ଖଣ୍ଡି ବ୍ଲାଉଜ୍‌ରେ ପୂରାଇଲା ।

ଆଜି ମାସର ଶେଷ ଶନିବାର ରାତି । କ୍ଲବ୍‌ରେ ଭେରାଇଟି ଶୋ । ଅଥଚ ସଙ୍ଗୀତା ବିଶେଷ କିଛି ଆଗ୍ରହ ଅନୁଭବ କରୁନି । ଏମିତି କି ବିନୋଦ କହିଲା ପରେ ଯାଇ ତା'ର ମନେ ପଡ଼ିଲା ଶୋ' କଥା । କ୍ଲବ୍‌ରେ ଥିବା ସମୟତକ ସେ ଖାଲି ଭାବୁଥିଲା ଚିଠି କଥାଟା ବିନୋଦକୁ କହିବା ଠିକ୍ ହେବ କି ନାହିଁ ।

ସୋମବାରକୁ ଆଉ ଦୁଇଦିନ ବାକି । ଦେଢ଼ଦିନ କହିଲେ ଠିକ୍ ହେବ ! ରାତିରେ ବିଛଣା ଧରିବା ଯାଏଁ ସେ କିଛି ସିଦ୍ଧାନ୍ତ ନେବାକଥା ମନକୁ ଆଣି ପାରି ଥାଏ । ସେ ଏକଥା ବିନୋଦକୁ କହିବ କି ନାହିଁ, ବା ଚିଠିଟା ପଢ଼ିଦେଲା ପରେ ଧୀରେନ୍‌କୁ ଯାଇ ଦେଖାକରିବ କି ନାହିଁ ।

ଚିଠିଟା ଏତେ ସାଧାରଣ ଭାଷା ଓ ଆନ୍ତରିକ ସ୍ୱରରେ ଲେଖାଥିଲେ ବି ତାକୁ କଥାଟା ହଠାତ୍ ଗୋଳମାଳିଆ ଲାଗୁଥାଏ—ଏତେଦିନ ପରେ କ'ଣ ବା ହୋଇପାରେ ଧୀରେନ୍‌ର ଉଦ୍ଦେଶ୍ୟ ।

ଧୀରେନ୍ ସଙ୍ଗେ ତାର ଶେଷଦେଖା ହୋଇଥିଲା ସେଇ ବାହାଘର ଦିନ-କେତେ ଆଗରୁ । ଘରେ ଜଣେ ଜଣେ କୁଣିଆ ଜମିବା ଆରମ୍ଭକରି ଦେଇଥାନ୍ତି । କେଉଁ ବାହାନାରେ କେଜାଣି ସେ ଓ ଧୀରେନ୍ ଆସି ତାଙ୍କ ଖୋଲା ଛାତ ଉପରେ ପହଞ୍ଚିଲେ । ସେ ଶାନ୍ତ, ନିରୋଳା ଜାଗାଟାରେ ସନ୍ଧ୍ୟା ନଇଁ ଆସୁଥିଲା ବେଳେ ଧୀରେନ୍ ପାଖେ ଠିଆ ହେଲାକ୍ଷଣି ଗୀତାର ପୁରୁଣା ଆଶ୍ୱସ୍ତ ଭାବଟିଏ ଫେରିଆସିଲା ଓ ହଠାତ୍ ତାକୁ ଧୀରେନ୍‌ର ପାଖକୁ ଲାଗିଯାଇ ମନଖୋଲି କାନ୍ଦି ପକେଇବାକୁ ଇଚ୍ଛାହେଲା; କିନ୍ତୁ ତାକୁ ଚମକାଇ ଦେଇ ଧୀରେନ୍ କହିଲା—"ସବୁଦିନ ପାଇଁ ତେବେ ନିରାପତ୍ତାର ବନ୍ଦୋବସ୍ତ ହୋଇଗଲା ତୋର, ନୁହେଁ ?"

ଧୀରେନର ସ୍ୱରର ସେ ଦାଉରେ ଏମିତି କାଠ ପାଲଟିଗଲା ଯେ, ପରେ ପରେ ସେ ଆହୁରି ଯାହା ସବୁ କହିଗଲା, ସଙ୍ଗୀତା ଭଲକରି ବୁଝିପାରୁ ନ ଥିଲା । ସେଇ ଝାପ୍‌ସା ଅନ୍ଧାରରେ ଧୀରେନର ଅସ୍ପଷ୍ଟ ମୁହଁକୁ ନିରେଖି ଏ ନୂଆ ସ୍ୱରକୁ ସେ ଚିହ୍ନିବାକୁ ଚେଷ୍ଟା କରୁଥିଲା କେବଳ । ତାର ମନେହେଲା ଧୀରେନ୍ ବୋଧହୁଏ ତାର ପ୍ରେମିକା ଗୀତାର ଉପସ୍ଥିତି ସମ୍ପୂର୍ଣ୍ଣ ଭୁଲିଯାଇଛି । କେବଳ କେଉଁ ନାଟକର ଧାଡ଼ିଆ ସଂଳାପଗୁଡ଼ାଏ ମୁଖସ୍ଥ କରି ବକିଯାଉଛି ।

ନାଷ୍ଟ୍ରାପଟିଏ ଟାଣି ନେଇ ସଙ୍ଗୀତା ନିଜକୁ ଗୁଣ୍ଡେଇପୁଣ୍ଡେଇ ନେଇଥିଲା ନିଜ ନିଦା କାନ୍ଥ ଭିତରକୁ । ନିଜକୁ ବୁଝାଇବାଲାଗି, ଚାଲିଯିବା ଆଗରୁ ଥରକଲାଗି ହେଲେ ଧୀରେନ ପାଖେ କିଛି ସମୟ ପାଇଁ ନିଜେ ହୋଇ ରହିବାଲାଗି ଆଗ୍ରହ ତା'ର ସେହିକ୍ଷଣି ମରି ଯାଇଥିଲା । ଧୀର ସ୍ୱରରେ ତେଣୁ ସେ କହିଲା—ଚାଲ ତଳକୁ ଯିବା ଡେରି ହେଲାଣି ।"

ତା'ର ଏତେଗୁଡ଼ାଏ ଅଭିଯୋଗର ଆଦୌ କିଛି ଉତ୍ତର କିମ୍ବା ପ୍ରତିଘାତ ନପାଇ ଧୀରେନ ବୋଧହୁଏ ଯିବା ପୂର୍ବରୁ ଆହୁରି ମୁନିଆ କଥା ପଦେ ଖୋଜିଲା ଓ କହିଲା—କିଏ କ'ଣ ଭାବିଦେଲେ ଏବେ ତୋର ଆଉ କିଣ

କ୍ଷତ ହୋଇଯିବ ଯେ ତୁ ଏତେ ଡରୁଛୁ ? ସେଇଦିନ ଧୀରେନ୍‌କୁ ବାଟେଇ ଦେବାକୁ ଗଲାବେଳେ କିନ୍ତୁ ଧୀରେନ ତା ହାବଭାବରୁ କଣ ଠଉରେଇଲା କେଜାଣି, ହଠାତ୍ ଅତି ନରମ, ପ୍ରାୟ ଦୟାର୍ଦ୍ର ଶୁଭୁଥିବା ଗଳାରେ କହିଲା— "ଗୀତୁ, ତୁ ଏମିତି ବୟସ୍କ ଦିଶୁଛୁ କାହିଁକି ? ବାହା ପୂର୍ବରୁ ତ ଝିଅମାନେ ସୁନ୍ଦର ଦେଖାଯିବା କଥା । ବିଶ୍ୱାସକର, ଆଜି ତୋ' ମୁହଁଟା ଅବିକଳ ତୋ ମା'ଙ୍କ ମୁହଁପରି ଦେଖାଯାଉଥାଏ, ତୁ ତୁନି ହୋଇ ଛିଡ଼ା ହୋଇଥିଲା ବେଳେ ।"

ଧୀରେନ୍ କହିଥିବା କଥା ସବୁ ଏଯାକେ ତା' ମନରେ ବାଜି ଫେରି ଯାଉଥିଲା, ଅଥଚ ହଠାତ୍ ଏଇ ଶେଷ କଥା କେତେପଦ ତା' ମନଭିତରେ ଘୁରି ଘୁରି ଗଲାଗଲା । ତା'ର ମନେ ବି ପଡ଼ିଗଲା ଯେ ଥରେ ତାଙ୍କ ବୟସ୍କା ଅବିବାହିତା କଲେଜ ପ୍ରିନ୍‌ସପାଲ୍‌ଙ୍କ କଥା କହୁ କହୁ ଧୀରେନ୍‌କୁ ସେ କହିଥିଲା—"ତାଙ୍କ ମୁହଁଟାରେ ସବୁବେଳେ ଏମିତି ଭ୍ରୁକୁଞ୍ଚା ବିରକ୍ତିର ଭାବଟିଏ ଲେଖିହୋଇ ରହିଥାଏ କେମିତି କେଜାଣି ।" ଧୀରେନ୍ ଉତ୍ତର ଦେଲା ଅତି ସହଜ-ଭାବେ—"ଯିଏ ଯେଉଁ ଭାବନେଇ ଜୀବନର ଅଧିକାଂଶ ସମୟ ବଞ୍ଚିରହିବ, ତା' ମୁହଁରେ କ୍ରମେ ସବୁ ପ୍ରକାର ମନର ଅବସ୍ଥାରେ ବି ସେଇ ଗୋଟିଏ ଭାବର ଛାପ ଲେଖିହୋଇ ଯିବନି । ଅଧିକାଂଶ ଲୋକଙ୍କ ବୟସ ହୋଇଗଲା ପରେ ଦେଖୁନୁ— ତୋ' ମା'ଙ୍କୁ ଦେଖୁନୁ, ସ୍ନେହୀ ମୁହଁଟାଏ ସତ, ହେଲେ ବି କେମିତି ଗୋଟେ ଏକା ରକମର ଜୀବନ ଜୀଇଁ, ମପାଚୁପା ବିଷୟରେ ଏକା କଥାମାନ ଦୋହରାଇ, କେମିତି ଗୋଟେ ଛାପାମରା ଏକ୍‌ସପ୍ରେଶନ୍ ।"

ବେଳେ ବେଳେ ଅଭୁତ ପରି କଥା କହେ ଧୀରେନ୍ । ସଙ୍ଗୀତା ପରି ସମସ୍ତଙ୍କ କଥା ଶୁଣି ମୁଣ୍ଡ ଭିତରେ ସାଇତି ହଜମ କରିବାକୁ ଚେଷ୍ଟା କରେନାହିଁ, ନିଜେ ଚିନ୍ତା କରେ ବି । ଆଜି ପୁଣି ଧୀରେନ୍‌ର ମୁହଁରୁ ଅବିକଳ ତା' ମା' ପରି ଦିଶୁଥିବା କଥାଟାରେ ଗୋଟେ ଦୁଃଖ ମିଶା ଧକ୍‌କା ଲାଗିଥିଲା ତା' ମନରେ । ତା'ର କାହିଁକି ମନେହେଲା ବେଶ୍ କିଛିଦିନ ପରେ ତାକୁ କିଏ ଜଣେ ସତକଥାଟାଏ କହିବାକୁ ବସିଛି । ଗଲା କେତେଦିନ ହେଲା ସମସ୍ତେ ଉପନ୍ୟାସ କି ନାଟକର ସଂଳାପ କଲାଭଳି ତାକୁ ଲାଗୁଥିଲା —କିନ୍ତୁ ଚରିତ୍ରର ଠିକ୍ ଠିକଣା ରହୁନାହିଁ । ବକ୍ତା, ଶ୍ରୋତା କି ପରିସ୍ଥିତିର ବି କିଛି ବାଛବାଛିର ନାହିଁ ପ୍ରକୃତ ଜୀବନରେ ।

ସଙ୍ଗୀତା ବି. ଏ. ପଢ଼ୁଥିଲା । ସାଙ୍ଗମାନଙ୍କ ସାଙ୍ଗେ ଗପକରେ—କଲେଜ କମନ୍ ରୁମ୍‌ରେ, ପଢ଼ଶା ଘରମାନଙ୍କରେ । ପିଲେଇ କରେ, ମ୍ୟାଟିନି ଶୋ' ସିନେମା ଯାଏ । ବେଳେ ବେଳେ ଟେଷ୍ଟ୍‌ରେ ଖରାପ କଲେ କି ଟ୍ୟୁଟୋରିଆଲ୍‌ରେ ଅନୁପସ୍ଥିତ ରହୁଥିବା କଥା ପଢ଼ଶାଘର ବୟସ୍କ ଶଙ୍କର୍‌ଙ୍କଠୁ ଶୁଣିଲେ ବାପା କି ଗାଇ ଆକଟନ୍ତି—"ଗୀତା, କଲେଜରେ ପାଠ ପଢ଼ି ଆମ ନାଁ ପକେଇଦବୁନି, ବୁଝିଲୁ ? ପାଠ ପଢ଼ୁନୁ ତ କରୁଛୁ କ'ଣ ? ପରୀକ୍ଷାରେ ଯେମିତି ଭଲ ନମ୍ବର ରହେ, ହେଲା ?" ସଙ୍ଗୀତା ବି ଯେ ନ ବୁଝିଥିଲା ତା' ନୁହେଁ—ସେ ବିନା ପ୍ରଶ୍ନ ଓ ସର୍ତ୍ତରେ ପରୀକ୍ଷାରେ ଭଲ ନମ୍ବର ରଖିବା ତା'ର ବର୍ତ୍ତମାନ ଜୀବନର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ଓ ଲକ୍ଷ୍ୟ ।

ପଡ଼ୋଶୀ ଧୀରେନ୍ ସାଙ୍ଗେ ଚିହ୍ନା ପରିଚୟ ଅନେକଦିନୁ—କେବେ ତା' ପ୍ରତି ଆକୃଷ୍ଟ ହେବାକୁ ଆରମ୍ଭ କରିଥିଲା କେଜାଣି । ଶେଷ ସ୍କୁଲ ଜୀବନରେ ବୋଧହୁଏ—ଗୋଟି ଗୋଟି ହୋଇ ତା'ର ଅବଶ୍ୟ ସବୁ ମନେନାହିଁ । ରକ୍ଷଣଶୀଳ ସାଧାରଣ ପରିବାରଟିଏର ଗେହ୍ଲା ଝିଅଟିଏ । ଶୈଶବ ଯାଇନାହିଁ—ଏଇ ଛଳନାରେ ହିଁ କୈଶୋର ତା'ର କେତେବେଳେ ବିତି ଯାଇଥିଲା । କଲେଜରେ ପାଦଦେଲା ପରେ କିନ୍ତୁ ସେ ପୂର୍ଣ୍ଣପ୍ରାଣରେ ଯୌବନକୁ ସ୍ୱୀକୃତ ଦେଲା ଓ ଏ ଯାବତ୍ ଧୀରେନ୍ ପାଇଁ ଲୁଚେଇ ପାଳିଥିବା ଆବେଗରେ ବି ସବୁ ଉଚ୍ଛ୍ୱାସ ନେଇ ଝାସଦେଲା ।

ସେ ଦୁହେଁ ପରସ୍ପରକୁ ଚାହୁଁଥିଲେ, ଏ ବିଷୟରେ ସେ ନିଃସନ୍ଦେହ; କିନ୍ତୁ କାହିଁକି ବିବାହ କରିପାରିଲେ ନାହିଁ କିମ୍ବା ସେ ଦିଗରେ ଉଭୟ ପକ୍ଷରୁ କୌଣସି ସ୍ଥିର ପଦକ୍ଷେପ ନିଆଯାଇ ପାରିଲା ନାହିଁ, ଏକଥା ଆଜି ବି ସଙ୍ଗୀତା ପରିଷ୍କାର ଭାବେ ବୁଝାଇ ପାରେନାହିଁ ନିଜକୁ । କଲେଜରେ ପାଦଦେଲା ଦିନୁ ସଙ୍ଗୀତାର ବାପ, ଭାଇ ଲାଗି ପଡ଼ିଥିଲେ ତା ପାଇଁ ବରଖୋଜାରେ ।

ବର୍ତ୍ତମାନ ବିଭୁ ବିଭୁ ବୋଉ କ୍ରମେ ବ୍ୟସ୍ତ ହେଇ ଉଠୁଥିଲା । ବାପଘରକୁ ଆସିଥିବା ସଙ୍ଗୀତାର ସାଙ୍ଗ ବିବାହିତା ଝିଅଙ୍କୁ ଦେଖିଲେ ଫିଁ କରି ନିଃଶ୍ୱାସ ଛାଡ଼ି କହେ—ଭାଗ୍ୟ କରିଥିଲେ ତାଙ୍କ ବାପ ମା, ଭଲ ଭାବରେ ଦାୟିତ୍ୱ ଖସାଇ ଦେଲେ । ଧୀରେନ୍ ପଢ଼ୁଥାଏ ଦୂର ସହରରେ । ଛୁଟିରେ ଦେଖାହୁଏ,

ଲୁଣ୍ଟିଛପାରେ ଗୋଟିଏ ଅଧେ ଚିଠି ବି ଦିଆନିଆ ହୁଏ । ଦେଖାହେଲେ କଥା ବାର୍ତ୍ତାରେ ଧୀରେନ୍ କହେ ତା' ବନ୍ଧୁମାନଙ୍କ କଥା, କଲେଜ କଥା, ତା' ଜୀବନର ଲକ୍ଷ୍ୟ କଥା । ସଙ୍ଗୀତାର ନିଜ ବିଷୟରେ କହିବାକୁ ବା କ'ଣ ଥାଏ— ଧୀରେନ୍ ପ୍ରତି ତା' ପ୍ରେମ ଓ ତାକୁ କେନ୍ଦ୍ର କରି ଦେଖୁଥିବା ସ୍ୱପ୍ନ ବ୍ୟତୀତ । ଧୀରେନ୍ ସେତିକି ଜାଣେ ଓ ବୁଝେ—ସଙ୍ଗୀତା ଅଛି ତାକୁ ଭଲ ପାଇବାକୁ । ଧୀରେନ୍‌ର ମା' ଘରକୁ ବୁଲିଆସିଲେ ଅନ୍ୟ ସମସ୍ତଙ୍କ ପରି ବୋଉକୁ ବେଳେ ବେଳେ ପଚାରି ଦିଅନ୍ତି—କ'ଣ ଗୀତା ପାଇଁ ବୁଝିଲଣି କୋଉଠି ?

ସଙ୍ଗୀତାର ବାହାଘର ଠିକ୍ ହୋଇଗଲା । ତା' ପୂର୍ବରୁ ସେ ତା' ସାଙ୍ଗ ଜରିଆରେ ବୋଉକୁ ଅବଶ୍ୟ ଜଣେଇ ଦେଇଥିଲା ଯେ ତା' ଇଚ୍ଛା ସେ ଧୀରେନ୍‌କୁ ବାହାହେବ ।

ବାପା ଭ୍ରୂକୁଞ୍ଚେଇଲେ—'ଗୀତା କାଲିକା ପିଲା, ତା'ର ଗୋଟାଏ ଭଲମନ୍ଦ ବିଚାର କରିବାର ଶକ୍ତି ଆସିଲାଣି ?'

ଟିକେଟ ପିନ୍ଧା ଅଫିସର ବଡ଼ଭାଇ—"ବାଜେ ଚିନ୍ତା କାହିଁକି କରୁଚ ବୋଉ ? ଗୀତା ଆମଘର ଆଦର୍ଶରେ ଗଢ଼ା, ଏସବୁ ଫାଲ୍‌ତୁ ଶସ୍ତା କଥାରେ ଭୁଲିଯିବା ପିଲା ନୁହେଁ ସେ ।"

ଓ ସଙ୍ଗୀତାର ଶୁଣାଣିରେ ପୁଣି ବାପା—"ମୁଁ ଜାଣେ, ମୋ ଗୀତୁ ମୋତେ ତଳେ ପକେଇ ଦେବନାହିଁ ।"

ଶେଷରେ ବୋଉର କାନ୍ଦୁରା ମୁହଁକୁ ଚାହିଁ ଗୀତା କହିଲା—"ନା ମ, ଯେମିତି କହୁଚ ନୁହେଁ । ତୁ ଏମିତି ଦୁନିଆଁ ହୋଇଯାଉଚୁ କାହିଁକି ?···ତୁ ଯାହା ଭଲ ଭାବିବୁ···"

ବୋଉ ଲୁହ ପୋଛୁ ତା' ପିଠିରେ ହାତବୁଲେଇ ସେଦିନ ଅନେକ କଥା ବୁଝାଇଥିଲା, ଅନେକ ଭାଗ୍ୟବନ୍ତ ଓ ହତଭାଗୀଙ୍କ ଉଦାହରଣ ଦେଇଥିଲା । ତା'ର ସ୍ନେହୀ ବିଦ୍ୱାନ୍ ବାପା ବି ସେଦିନମାନଙ୍କରେ ତାକୁ କଥା କଥାରେ ବୁଝାଇ ଦେଉଥିଲେ କୋଉକଥା ସବୁ ଜୀବନରେ ବଡ଼, କୋଉଗୁଡ଼ିକ ଖରାପ,

ଦୁର୍ବଳତା—ଯୋଉ ସବୁକୁ ଜୀବନରେ ପ୍ରକୃତ ମୂଲ୍ୟ ଦେବାକୁ ହୁଏ, ସୁଖ ପାଇଁ ପୁଣି ଆଦର୍ଶ ପାଇଁ । ସଙ୍ଗୀତା ଚୁପ୍‌ଚାପ୍ ସବୁ ଶୁଣି ବୁଝିବାକୁ ଚେଷ୍ଟା କରୁଥିଲା—ଜୀବନର ଏଇ ସବୁ ଗହନ ସତ୍ୟ । ମନର ଆକର୍ଷଣ ଯେତେ ଗଭୀର, ଭାବ ଇଚ୍ଛା ମାନ ଯେତେ ଗମ୍ଭୀର ହେଲେ ବି ସାରାଜୀବନ ଲାଗି ବହୁତ କଥା ଆଗପଛ ଭାବି କରିବାକୁ ହୁଏ; କାରଣ ଖଣ୍ଡେଦୂର ଜୀବନଟା ଏକ ଧରଣରେ ଗଡ଼ିଗଲା ପରେ ଭୁଲ ହୋଇଛି ବୋଲି ହଠାତ୍ ବୁଝିପାରି ଫେରି ଗୁହାଁଲେ ବି ଆଉ ଫେରିଆସି ଆରମ୍ଭ କରିହୁଏ ନାହିଁ । ଶୁଭାକାଂକ୍ଷୀମାନଙ୍କ ଅଭିଜ୍ଞତାରୁ ବଛାଯାଉଥିବା ସିଧା-ସଳଖ ରାସ୍ତାରେ ଧୀରସ୍ଥିର ମନରେ ପାଦ ଦେଲାପରେ ଠାକୁରଙ୍କୁ ଡାକୁଥିବାକୁ ହୁଏ । ସଦାବେଳେ ସୁରୁଖୁରୁରେ ଦିନ କଟୁ ଥାଉ ବୋଲି—ସୁଖଶାନ୍ତି ପାଇଁ ବି ନୁହେଁ । ସୁଖ, ଶାନ୍ତି ବାସ୍ତବରେ କି ଜିନିଷ ସେସବୁ ଆଉ ମନରେ ପ୍ରଶ୍ନ ନ ଥିଲା ସଙ୍ଗୀତା ।

ବାହାଘରର ସେ ଜାକଜମକ, ହଇଚଇ ଓ ଜୀବନର ତଥାକଥିତ ନୂଆ ଘଟଣାମାନ ତା' ମନରେ ଖୁବ୍ ଗୋଟାଏ ଆଲୋଡ଼ନ ସୃଷ୍ଟି କଲା ନାହିଁ । ବରଂ ତାକୁ ସବୁ କିଛି ପ୍ରଥମେ ଗୋଳମାଳିଆ ଲାଗୁଥିଲା—ପରୀକ୍ଷାରେ ଭଲ ମାର୍କପାଇଁ ତାଗିଦ୍ ଶୁଣିବା, ଧୀରେନ୍‌ପାଇଁ ମନରେ ଉଠୁଥିବା ଅକାରଣ ଆବେଗ ଓ ବର୍ତ୍ତମାନ ବିତାଇବାକୁ ଯାଉଥିବା ଏ ବାଧ୍ୟବାଧ ଜୀବନ ଭିତରେ ସେ କିଛି ଯୁକ୍ତିଯୁକ୍ତ ପୂର୍ବାପର ସମ୍ପର୍କ ଦେଖିପାରୁ ନ ଥିଲା ।

ଦିନ ଯାଉଁ ଯାଉଁ ମନ ଭିତରଟା ପୁଣି ସ୍ଥିର ନିସ୍ତରଙ୍ଗ ହୋଇଗଲା । ସବୁ କିଛି ଠିକ୍‌ଠାକ୍ । ନିତିଦିନିଆ ଜୀବନ ଭିତରେ ଛୋଟ ଘଟଣା, ବଡ଼ ଘଟଣା ପୁଣି ଆସିଲା—ସେଇ ଭିତରୁ ହସ ଖୁସି-ରାଗ, ରୋଷ, ଦୁଃଖ କାନ୍ଦର ଖୋରାକ ମିଳିଯିବାକୁ ବିଶେଷ ଅସୁବିଧା ହେଲା ନାହିଁ ।

ରବିବାର ଦିନ ଧୀରେନ୍‌ର ଚିଠିଟାକୁ ଚିରିଦେଲା ସଙ୍ଗୀତା । ଆଉ ଗୋଟିଏ ସମସ୍ୟା ରହିଲା ସମାଧାନ ପାଇଁ । ସେ ଧୀରେନ୍‌କୁ ଦେଖାକରିବାକୁ ଯିବ କି ନାହିଁ । ସୋମବାର ସକାଳେ ବିନୋଦ ଅଫିସ ଗଲାପରେ ସେ ଭାବିଲା—ଏଥିରେ ତ ଭଲମନ୍ଦର ବିଶେଷ କିଛି ନାହିଁ । ମୁଁ ବି ଆଉ ଛୋଟ ପିଲା ନୁହେଁ । ବିନୋଦ ଜାଣି ବା ଯଦି ଗଲେ—ଏତେ ଟିକିଏ କଥାରେ ସେମିତି

କିଛି ମହାଭାରତ ହୋଇଯିବାର ଗୁନ୍‌ସ ବି ପ୍ରାୟ ନାହିଁ । କଥାଟା ବାରେଇ କହିହେବ—ଯଥା ହଠାତ୍ ମାର୍କେଟରେ ଦେଖା ହୋଇଗଲା···। ଯାଇ ଦେଖା ଯାଉନା ? ଥରଟିଏ ଜୀବନରେ ଖୋମଖିଆଲଭାବେ କଥାଟିଏ କରାଯାଉ । କିଛି ହେଲେ ଥ୍ରିଲ୍ ଟିକଏ ।

ମାର୍କେଟ ପାଖେ ପହଞ୍ଚି କୋଉଠି ଖୋଜିବ ବା ଅପେକ୍ଷା କରିବ ଭାବୁ ଭାବୁ ହଠାତ୍ ସେ ଧୀରେନ୍‌କୁ ଦେଖିଲା—ଦୋକାନର ଶୋ' କେସ୍‌ରେ ସଜଡ଼ା ଜିନିଷକୁ ନିରେଖି ଦେଖୁଥିବା ଧୀରେନ୍‌କୁ ଅଧାପଛରୁ ବି ଚଟ୍‌କିରି ଚିହ୍ନିଲା ସଙ୍ଗୀତା । ଧୀରେନ୍ ବି ହଠାତ୍ ବୁଲିପଡ଼ି ସଙ୍ଗୀତାକୁ ଦେଖିଲା ଓ ଖୁସି ହୋଇ ଆଶ୍ଚର୍ଯ୍ୟ ଓ ଅଦ୍ଭୁତ ଗୋଟାଏ ଅପ୍ରସ୍ତୁତ ଭାବର ମିଶାମିଶି ହସଟିଏ ହସିଲା । ସଙ୍ଗୀତା ସହଜ ହସରେ ପ୍ରତ୍ୟୁତ୍ତର ଦେଇ ଟ୍ରୁଟ୍‌ଗ୍ରେପ୍ ରିକ୍‌ସା ଭଡ଼ା ତୁଟାଇଲା ଓ ଭାବିଲା ସେ ଯେତେ ଆଶା କରିଥିଲା ସେମିତି କିଛି ଭାବାନ୍ତର ହେଲା ନାହିଁ ତା'ର— ବୋଧେ ଅନେକଥର ସାକ୍ଷାତ୍‌ଟା ମନରେ ଆଙ୍କିବା ଫଳରେ, କିମ୍ବା ବହୁ ଦିନୁ ସୁପ୍ତ ସ୍ମୃତି ସବୁ ପୁଣି ଜୀବନ୍ତ ଅନୁଭୂତି ସଙ୍ଗେ ଖାପ୍‌ଖାଇ ପାରୁ ନ ଥିଲା । ଖାଲି ସେତିକି ନୁହେଁ, ଆନନ୍ଦରେ ଆସି ଧୀରେନ୍ ସାଙ୍ଗେ ପାଦ ମିଳାଇଲାବେଳେ ମନ ଭିତରେ କୋଉଠି କ୍ଷୀଣ ହତାଶାଟିଏ ବି ଗୁଞ୍ଜରି ଉଠୁଥିଲା—ଧୀରେନଟା ଏଇ କେତେଟା ବର୍ଷ ଭିତରେ ଏତେ ପତଳା ଓ ହାଡ଼ୁଆ ଦେଖାଯାଉଥିବ, କପାଳଟା ଏତେ ଚଉଡ଼ା ହୋଇ ଯାଇଥିବ, ଆଉ ଏଡ଼େ ଅସଜଡ଼ା କେଶବାସରେ ଧୀରେନ୍ ତା' ସଙ୍ଗେ ଦେଖା କରିବାକୁ ଆସିଥିବ—ସବୁ କିଛି ସଙ୍ଗୀତାକୁ ବେଖାପ ଲାଗୁଥିଲା ।

ସାଉଥ୍ ଇଣ୍ଡିଆନ୍ କାଫେରେ ଦୁହେଁ ବସିଥିଲେ ସାମନା ସାମନି । ଦୁହେଁ ପରସ୍ପରର ଆଖି ବ୍ୟତୀତ ଅନ୍ୟ ସବୁ କିଛି ଆଡ଼େ ଚାହୁଁଥିଲେ ଖାମ୍‌ଖିଆଲି ହେବାର ଚେଷ୍ଟାରେ । ପ୍ରଥମ ବାକ୍ୟ ବିନିମୟମାନ ସରିଥିଲା—ଧୀରେନ୍‌ର କୃତଜ୍ଞତା ସଙ୍ଗୀତା ଆସିଥିବା ଯୋଗୁଁ, ଦୁହିଁଙ୍କ ଚେହେରା ବଦଳିଛି ଇତ୍ୟାଦି । ତା'ପରେ କେମିତି ଅଛ ? କ'ଣ କରୁଛ ଆଜିକାଲି ?'' ଉତ୍ତରରେ କଫି କପ୍‌ରୁ ଆଖି ନ ଉଠାଇ ଧୀରେନ୍ ଅତି ଧୀର ସ୍ୱରରେ କହିଲା— ବହୁତ ଦୁଃଖ ଓ ହତାଶା ଭିତର ଦେଇ ଯାଇଛି ସେ ଏ ଭିତରେ—ସ୍ୱାମୀ, ସନ୍ତାନ ସମ୍ପତ୍ତି ନେଇ ସୁଖୀ; ସଙ୍ଗୀତା କାହୁଁ ବୁଝିବ ସେ'ସବୁ ।

ଧୀରେନ୍‌ର ଗହ୍ୱରଆ ଆଖିକଣରେ ସରୁ ସରୁ ଚେର୍ଚ୍ଚା ଗାର, ମୁହଁରେ ଚହ୍ଲା ଛାପଟିଏ ପଡ଼ିଆସୁଚ—ଏମିତି ଛାପ ପ୍ରଥମେ ତାକୁ ଚହ୍ଲେଇ ଦେଇଥିଲ ଧୀରେନ୍‌ । ଏ ମୁହଁ ସଙ୍ଗୀତା ମନେ ରଖିଥିବା ତୋଫା ଚେହେରାଟିଏ ନୁହେଁ, ଅନେକ ପରିଚିତ ମୁହଁ—ଧରଣରୁ ଗୋଟିଏ ଗୋଷ୍ଠୀଭୁକ୍ତ ହେବ ।

ଧୀରେନ୍‌ ନିମ୍ନ ସ୍ୱରରେ ତଥାପି ବଖାଣୁଥିଲ ତା'ର ସାଫଲ୍ୟ ପ୍ରତିଷ୍ଠା-ପାଇଁ ସଙ୍ଘର୍ଷର କଥା, ବିଫଳତା, ଅପମାନର କଥା, ଜୀବନର ଆଦର୍ଶମାନଙ୍କୁ ଆହୁତିଦେବାର କରୁଣ ସାଲିସ୍‌ କଥା । ତଥାପି କିଛି ହେଇପାରିଲିନାହିଁ ସେ ଜୀବନରେ ।

ନିରବରେ ସଙ୍ଗୀତା ଶୁଣିଯାଉଥିଲ ଏ ନୂଆ ମୁହଁରୁ, ପରିଚୟ ନ ଥିବା ସେ ଜୀବନର କାହାଣୀ ।—ହୁଏତ ଆଦ୍ୟ ଯୌବନରେ ଦୂରଦୃଷ୍ଟି ନ ଥିଲ ମୋର । ଠିକ୍‌ ରାସ୍ତା ବତାଇଦେବାକୁ ବି କେହି ଜୁଟିଲେନି ଅସଲ ସମୟରେ । ଖାଲି ପିଲିକିଆମିରେ ଏଣେତେଣେ ମାତିଯାଇ ଗୁଡ଼ାଏ ସମୟ ନଷ୍ଟ କରିଦେଲି । ତଥାପି ଏବେ ବି ଯଦି କିଛି ଗୋଟାଏ ଆଶ୍ରା ମିଳିଯାନ୍ତା···

ସଙ୍ଗୀତା ବୁଝିଲ—ସ୍ଥାୟୀ ନିରାପତ୍ତା ଖୋଜିବାର ବୟସ ଓ ମନ ଆସିଯାଇଚି ଧୀରେନ୍‌ର । କେଡ଼େ ଶୀଘ୍ର ଆସିଯାଇଥିଲ ତା'ନିଜର । କାରଣ ଲଗାମଛଡ଼ା ହେଇ ସ୍ୱପ୍ନ-ମାପିକେ ଜୀବନ ନେଖୋଜିବାପାଇଁ ତା' ହାତରେ ସମ୍ବଳ ନ ଥିଲ । ଅନ୍ୟମାନଙ୍କ ଜୀବନର ଅଭିଜ୍ଞତା ଓ ବୟସ ତା' ଉପରେ ମାଡ଼ି ବଆସିଗଲାବେଳେ ସେ ମୂଣ୍ଡପାତି ବୁଝିନେଇଥିଲ । ଧୀରେନ୍‌ ବା କେମିତି ବୁଝିଥାନ୍ତା—ତା' ପାଖେ ସେତେବେଳେ ଅଜାଡ଼ି ପଡ଼ୁଥିଲ ଆହୁରି କେତେଜଣଙ୍କ ସ୍ୱପ୍ନ । ପାଦ ସାମନାରେ ଲମ୍ବା ଭବିଷ୍ୟତ ଓ ଅସରନ୍ତି ସୁଯୋଗ—ତା' ଭାଷାରେ ତା' ଜୀବନର ଲକ୍ଷ୍ୟ ।

ଧୀରେନ୍‌ କହୁଥିଲ—ମୋ ପାଇଁ କିଛି କରିବାକୁ କହୁନି ସଙ୍ଗୀତା, ତେବେ ତୋ ସ୍ୱାମୀ ଚାହିଁଲେ ଷ୍ଟିଲ୍‌ ପ୍ଲାଣ୍ଟ୍‌ରେ ବାବୁଲର ଗୁଳକିଞ୍ଚା କରେଇ ଦେଇ ପାରିବେ । ମୋ ତଳ ଭାଇ ହେଲେ ବି ମୋ'ଠୁଁ ବହୁତ ସାନ ସେ—ମୋ ଆଖି ଆଗରେ ଜନ୍ମ । ପୁଣି ଆଖି ଆଗରେ ତାକୁ ମୋ'ର ପରି ବୁଢ଼ା ପାଲଟିଯିବା ଦେଖିପାରିବି ନାହିଁ···

ସଙ୍ଗୀତା ଭାବିଲା—ଧୀରେନ୍‌ର ଆଖି ଦେଇ ଦିନେ ଦେଖିଥିବା ସ୍ୱପ୍ନର ଚିହ୍ନ କିଛି ଏଯାଏ କୋଉଠି ରହିଯାଇଛି ବୋଲି ବୋଧେ ଏବେ ଶୁଖି ହୋଇଗଲି ଭଳି ଗୋଟେ ରକମ ପ୍ରଶାନ୍ତ ସହିତ ମନର କେଉଁ କୋଣରୁ ହତାଶାର ହାହାକାରଟିଏ ଉଠୁଚି ।

ଧୀରେନ୍ ହାତପାପୁଲି ଉପରେ କପାଳ ଥାପି ଆସ୍ତେକରି କହୁଥିଲା—ଶେଷରେ ତୋ ଆଗରେ ମୋର ଏମିତି ହାତ ପତାଇବାର ଥିଲା, ସୁହେଁ ଗୀତା···

ସଙ୍ଗୀତା ପଦେ ସାନ୍ତ୍ୱନା ଦେବାକୁ ଚେଷ୍ଟାକଲା, ଶୁଖିଲା ହସ ଟିକିଏ ହସି କଥାବାର୍ତ୍ତାକୁ ହାଲୁକା କରିବାକୁ ବି ଚେଷ୍ଟାକଲା । ଘୃଣା ଭିତରେ ତାକୁ କେମିତି ଶୁଖିଲା ଆଉ ଭାରି ଲାଗୁଥିଲା—କୋଉକାଳୁ ମଲା ନଈଟିଏର ଶୀତଳ ବାଲି ପରି ।

ଧୀରେନ୍ ତା'ର ବକ୍ତବ୍ୟ ଶେଷ କଲାପରେ କହିଲା— ତେବେ, ବିହୁତ ଦୁଶ୍ଚିନ୍ତା ଆଉ ଅଶାନ୍ତିରେ ଅଛି ଗୀତୁ ! ମୋ କଥା ଟିକିଏ ଭାବିବୁ ।

ନିଜକୁ ଗୁଣ୍ଡେଇ ପୁଣ୍ଡେଇ ନେଲା ସଙ୍ଗୀତା ନିଜ ନିଦା କାନ୍ଥ ଭିତରକୁ । କାଫେରେ ବାଜୁଥିବା ରେଡ଼ିଓରେ ପୁଣି କେଉଁ ଚିହ୍ନା ଧ୍ୱନି—ମନରେ କିନ୍ତୁ କିଛି ଭାବାନ୍ତର ଆଣୁନାହିଁ । ଧୀରେନ୍‌ର ମୁହଁକୁ ଚାହିଁଲା—ସ୍ମୃତି ସବୁ ତହିଁରେ ଦିଶୁଛି—ଅଥଚ ଦୂର, ଶୀତଳ । କାନ୍ଥରେ ଟଙ୍ଗା ଧୂଳିବୋଳା, ଫିମ୍ପି ଖିଆ ପୁରୁଣା ଫଟୋପରି । ଓ୍ୱାଚ୍ ଦେଖି ସେ ଉଠିଲା—ମୁଁ ଯାଏ ଧୀରେନ୍ ଭାଇ, ଯିଏଁକର ଫେରିବାର ବେଳ ହୋଇଗଲା । ବାବୁଲିର ବୁକଶପାଇଁ ତମେ ଆଦୌ ଭାବନା କରନି । ତମ କଥା ବି ମୁଁ ୟାଁ'ଙ୍କୁ କହିବି । ମୋ ଉପରେ ବିଶ୍ୱାସ ରଖ···

ଗୁରୁଟା ବାଜିନି—ବିନୋଦ ଅବଶ୍ୟ ଏବେ ପ୍ଲାଣ୍ଟରୁ ଫେରି ନ ଥିବ । ତା'ର ମନେପଡ଼ିଲା ଘର ପାଇଁ ଏଣୁତେଣୁ କେତେଟା ଜିନିଷ କିଣିବାର ଥିଲା, ନେଇନେଲେ ହେବ । ଦି' ତିନିଦିନ ହେଲା ଡ୍ରଇଁ ରୁମ୍‌ଟା ଅସଜଡ଼ା ପଡ଼ିଛି, ଫେରି ସଜାଡ଼ିବାକୁ ହେବ । ଆଗରେ ଅପରାହ୍ଣର ଖରା । ହଠାତ୍ ଖିଆଲ୍‌ଟାଏ ଆସି ସିଙ୍ଗୀତା ଓଠରେ ଟିକିଏ ହସ ଚହଲାଇ ଦେଲା—ସେ ସକାଳ କେମିତି

ଅକାରଣେ ଉଚ୍ଛନ୍ନ କରିଦେଇଥିଲା ତାଙ୍କୁ, ଅଜବ ଗୋଟାଏ ରୂପ ଦେଇ ଦେଉ ନ ଥିବା ଆକାଙ୍‌କ୍ଷା, ଆଶାରେ ଭରିଯାଉଥିଲା ମନ । ଦିନ ଗଡ଼ି ଯାଉଯାଉ ସବୁ ନିରାଶା, ଘଟଣାବହୁଳତା କ୍ରମେ ଚୁପ୍‌ଚାପ୍ ମାନିନେବାକୁ ହୁଏ, ଅପରାହ୍ଣ ଗ୍ରହଣ କରେଇନିଏ ସବୁ ।

ଧୀରେନ୍ ବସିଛି ଏବେ ବି କାଫେରେ ? ଭାବି ହେଉଚି ତା' ଦୁର୍ଭାଗ୍ୟ କଥା ଓ ଅନିଶ୍ଚିତ ଭବିଷ୍ୟତ କଥା ? ଅନିଶ୍ଚିତତା ତାଙ୍କୁ ଏକଦା ଅହମିକା ଓ ଆତ୍ମସନ୍ତୋଷ ଦେଉଥିଲା, ଏବେ ମୁଣ୍ଡ ଉପରେ ବୋଝ ହୋଇ କପାଳ କୁଞ୍ଚେଇ ଦେଉଛି । ଆଃ—ଆଖି ଝଲସାଇ ଦେଉଚି ଖରା, ସିଧା ଚାହିଁହେଉନି । ସଙ୍ଗୀତା ହାଣ୍ଡ୍‌ବ୍ୟାଗ୍‌ରୁ ସନ୍‌ଗ୍ଲାସ୍ କାଢ଼ି ଲଗାଇନେଲା । ଟାଣ ଖରାକୁ ଆଖି ମିଞ୍ଜି ମିଞ୍ଜି କରି ଅନାଇଲେ ଆଖି ଚାରିପାଖେ ଗାରପଡ଼ି ବୟସ ବଢ଼ାଇଦିଏ ବୋଲି ସେ ପଢ଼ିଥିଲା କୋଉ ଗୋଟିଏ ଫ୍ୟାସନ୍ ମାଗାଜିନ୍‌ରେ । ଏମିତି ସାନ ସାନ ଟିକିନିଖି ସତ୍ୟ ସବୁ ଅନେକ ଗୋଟେଇ ରଖିଚି ସେ ଅଭିଜ୍ଞତାରୁ । ଟିକିଏ ମନ ଲଗାଇଲେ, ସଜେଇ ଜାଣିଲେ ଚେହେରା, ଘରଦ୍ୱାର, ଜୀବନ ସବୁ ସଜାଡ଼ିସୁଜୁଡ଼ି ଚକ୍ ଚକ୍ ସୁନ୍ଦର ରଖିହେବ ।

# ରାସ୍ତା

ପ୍ରଭାତ ଚେଷ୍ଟାକରି ସୀମା ସାଙ୍ଗେ ପାଦ ମିଳାଇ ଚାଲିଲା । କିଛି ସମୟ ନ ଯାଉଣୁ ଅନ୍ୟ କଥା ଭାବିଲା । ଆଖି ଫେରାଇଲାବେଳକୁ ଦୁହିଙ୍କ ପାଦ ପୁଣି ବେତାଳିଆ ପଡ଼ୁଛି । ସନ୍ଧ୍ୟା ଅନ୍ଧାରର ନିଛାଟିଆ ରାସ୍ତାରେ ଦୁହେଁ ଚାଲୁଥିଲେ । ଆଗ ବତିଖୁଣ୍ଟ ପାଖେଇ ଆସିଲାବେଳକୁ ପଛ ବତିଖୁଣ୍ଟ ଦେଇଥିବା ଛାଇ ଲମ୍ବି ପୁରୁଣା ପାଲଟି ଧାଇଁ ଧାଇଁ ପଛ ପାଖ ଅନ୍ଧାରରେ ମିଶୁଛି । ଆଗ ବତିଖୁଣ୍ଟ ପୁଣି ପଛେଇ ଯାଉଛି, ଆଲୁଅ ସଙ୍ଗେ ଛାଇ ଲମ୍ବୁଛି ଓ ପୁଣି ପୁରୁଣା ହୋଇ ହଜୁଛି । ପ୍ରଭାତ ଭାବିଲା ରାସ୍ତା ମଝିରେ ସେ ଦୁହେଁ ହାତ ଧରାଧରି ହୋଇ ରହିଯାଆନ୍ତେ ନିଶ୍ଚଳ ହୋଇ, ଦୁହିଙ୍କ ଉଷ୍ମତା ପରସ୍ପରର ଦେହକୁ ଛୁଅନ୍ତା, ସନ୍ଧ୍ୟାର ପବନ ତାକୁ ଉଡ଼ାଇ ନିଅନ୍ତାନାହିଁ । ଫଟଳା ଆଲୁଅ ତଳରେ ଦୁହିଙ୍କ ଛାଇ ଉଷୁମ ହୋଇ ପାଦ ପାଖେ ଶୋଇଥାନ୍ତା ଓ ସୀମାର ମପାଚୁପା ଶ୍ରେଷ୍ଠ ପାଦୁଣ୍ଡକୁ ଡେଇଁ ତା'ର ଖଜବଜ ପାଦ ଅନ୍ୟମନସ୍କ ବେତାଳିଆ ହୋଇ ଆଗେଇ ଯାଆନ୍ତେ ନାହିଁ । ପ୍ରଭାତ କିନ୍ତୁ ଚାଲିଲା ପୂର୍ବବତ୍ ଓ ସୀମା ସାଙ୍ଗେ ପାଦ ମିଳାଇଲା । ଆଗ ବତିଖୁଣ୍ଟରୁ ସମୁଦ୍ର ଲହରୀ ଭଳି ପାଦ ପାଖକୁ କ୍ରମେ ବ୍ୟାପି ଆସୁଥିବା ଆଲୁଅର ସମ୍ମୋହନ ବି କମ୍ ନୁହେଁ । ପାଦ ସାମ୍ନାରୁ ଛାଇ ଅନ୍ଧାର ସବୁ ଧୋଇ ସଫା ହୋଇଯିବାରେ ଏକରକମ ମୁକ୍ତିର ଆନନ୍ଦ—ସାମୟିକ ହେଉ ପଛେ । ଚାଲୁ ଚାଲୁ ମୁହଁରେ ପିଟି ହେଉଥିବା ପବନ ସୀମା ଦେହର ପରଫ୍ୟୁମ୍ ସାଙ୍ଗେ ତା' ନିଜ ଝାଳଗନ୍ଧ ବି ତ ଉଡ଼େଇ ନେଉଛି ।

ନିରବତା ବିଷୟରେ ଦୁହେଁ ସଚେତନ ହେଲେ । ପ୍ରଭାତ କହିଲା— ତମେ ମୋ ସଙ୍ଗେ ପାଦ ମିଳାଇ ଚାଲିଲ ଦେଖି ! କେତେ ଶ୍ରେଷ୍ଠ ପାଦୁଣ୍ଡ ତମର । ସୀମା ଉତ୍ତରରେ ଟିକେ ହସିଲା କେବଳ ।

ପୁଣି ନୀରବତା । ସୀମାର ଜାଣିବାକୁ ଇଚ୍ଛାହେଲା ପ୍ରଭାତ କ'ଣ ଭାବୁଛି । ପ୍ରଭାତ ବି ଅନୁସନ୍ଧିତ୍ସୁ ହେଲା— କ'ଣ ଭାବୁଛ ସୀମା ?

ସୀମା ଆଙ୍ଗୁଳିରେ ଅନେଇ କପାଳରୁ ବାଳ ସଜାଡ଼ିଲା, ଭାବ ସ୍ଥିର କଲାପରି କହିଲା—ସିନେମାଟାର ଅଧାରୁ ଏମିତି ଉଠିଆସିବା ମୋତେ ଭଲ ଲାଗିଲାନି ।

ପ୍ରଭାତ ଭ୍ରୂ କୁଞ୍ଚେଇ କହିଲା—ଦେଖିବାର ଆଉ କ'ଣ ଥିଲା ସେଥିରେ । ସେଇ ଗତାନୁଗତିକ— ଭିଲେନ୍ ଯୁଦ୍ଧ ଶେଷରେ ପାହାଡ଼ରୁ ଗଡ଼ି ମରିଥିବ ବା ପୋଲିସ ଭ୍ୟାନ୍‌ରେ ଠିଆ ହୋଇଥିବ—ଫର୍ମୁଲା ।

ସୀମା କହିଲା—ସେ ସବୁ କିଏ ନ ଜାଣେ ? ତଥାପି ଭଲ ଲୋକଙ୍କୁ ସେଇ ପରିସ୍ଥିତିରେ ହେଉ ପଛେ ଦେଖିବାରେ ଆନନ୍ଦ ନାହିଁ ?

"—ଏସବୁ ସିନେମାରେ ଖାଲି ଚଳେଇ । ପରିସ୍ଥିତି ନାହିଁ, ମଣିଷ ବି ନ ଥାନ୍ତି ।" ପ୍ରଭାତର ଅଧୈର୍ଯ୍ୟ ସ୍ୱର ।

ସୀମାର ଶାନ୍ତ ଉତ୍ତର—ମୋତେ ଭଲ ଲାଗେ । ସିଟ୍‌ରେ ଆରାମରେ ଆଉଜି ଯାଅ—ରଙ୍ଗୀନ୍ ଦୁନିଆଁ, ସୁନ୍ଦର ଲୋକ—ବଣ ଜଙ୍ଗଲରେ ବୁଲି ଗୀତଗାଅ, ପ୍ରାଚୁର୍ଯ୍ୟରେ କ୍ଲବ୍‌ରେ ନାଚ, କରୁଣଗୀତ ସାଙ୍ଗକୁ ଟୋପେ ଦି'ଟୋପା ଲୁହ ଝରାଅ । ଭିଲେନ୍ ହିରୋଇନ୍‌କୁ ତାର ଯେତେ ଗୁପ୍ତ ଆଡ୍‌ଡ଼ାକୁ ନେଇଯାଉ, ତମର ଦାୟିତ୍ୱ କିଛି ନାହିଁ, ସବୁ ସମସ୍ୟାର ସମାଧାନ ହୋଇଯିବ ଆପେ । ଚକ୍‌ଚକ୍‌ଣ ସୁନ୍ଦର ଦୁନିଆଁ, ଝୁଲ୍ ଝଟକା, ଆବଡ଼ା ଖାବଡ଼ା କିଛି ନାହିଁ ।

ପ୍ରଭାତ କିଛି କହିଲା ନାହିଁ । ସେ ଜାଣେ ସୀମା ଏମିତି ଆଖି ମେଲାକରି ସ୍ୱପ୍ନ ଦେଖିପାରେ ବୋଲି; କିନ୍ତୁ ଏବେ କ'ଣ ସେ ସିନେମାରେ ଦେଖିଥିବା ହିରୋ କଥା ଭାବୁଛି ? ସୀମା ବାସ୍ତବ ଜୀବନରେ ବି ପରଦାର ରଙ୍ଗୀନ୍ କଳ୍ପନା ସବୁର ଆଶା ରଖିପାରେ ?

ସୀମା ଭାବୁଥିଲା ପ୍ରଭାତ ଏମିତି ଚଳେଇ ଆଉ ବାସ୍ତବକୁ ଗୋଳାଗୋଳି କରି ପକାଏ କେମିତି ?

ସାନ ପୋଲଟିର ପାଖ ସନ୍ଧ୍ୟା ଲଇଟ୍‌ଟି ଜଳୁନଥିଲା । ଦୁହେଁ ଗୁଇ ଅନ୍ଧାରରେ ପୋଲ ଉପରେ ପାଖାପାଖି ବସିଲେ । ସୀମାର କାନ ଉଡ଼ ପ୍ରଭାତର ବାହୁ ଓ ପିଠିରେ ବାଜୁଥିଲା । ଅଳ୍ପ ଦୂରରେ କଲୋନୀରେ ଧାଡ଼ି ଧାଡ଼ି ଆଲୁଅ । ଅଦୂରରେ ଝୋଲି ପଡ଼ିଥିବା ଘର—ଗେଷ୍ଟହାଉସ୍ ବା କୌଣସି ଅଫିସ୍ ବିଲ୍‌ଡ଼ିଂ—ସାମ୍ନାରେ ପେଟ୍ରୋମାକ୍ସ ଆଲୁଅରେ ଅସ୍ପଷ୍ଟ ମଣିଷ ଛାଇ। ବୁଲୁଛନ୍ତି । କୁଳିଗୁଡ଼ାଏ, କିଛି ଗୋଟାଏ ଭାରି ଜିନିଷ ଉଠାଉଛନ୍ତି ବା ଟାଣୁଛନ୍ତି । କିଛି ଗୋଟାଏ ଗାଉଛନ୍ତି ବୋଧହୁଏ—ଅନେକଟା ସବାରିବାହକଙ୍କ ଗୀତ ଭଳି । ଜଣେ ଲୋକର ଅସ୍ପଷ୍ଟ ଉଚ୍ଚାରଣ; ତତ୍‌ପରବର୍ତ୍ତୀ କୋରସ୍‌ରେ ସେଇ କେତୋଟି ଶବ୍ଦର ତାଳଦିଆ ପୁନରାବୃତ୍ତି । ବିଭିନ୍ନ ଅବସନ୍ନ ଦେହର ଶକ୍ତିସବୁ କେନ୍ଦ୍ରୀଭୂତ କରିବା ପାଇଁ ଏ ହୁଙ୍କାର ।

ସୀମା ଦେଖୁଥିଲା । ଘରଟିର ଅନ୍ଧାରୁଆ ଆକାର ଦିଶୁଛି କିଛି କିଛି, ପଛ ପାଖେ ଅଦୂରରେ ଅନ୍ଧକାର ପର୍ବତ ଓ ତାର ସୀମାରେଖା ପାଖେ ପାଖେ ଏବେ ବି ବିଗତ ସୂର୍ଯ୍ୟର ଲାଲିମାର ନଷ୍ଟପ୍ରଭ ଅବଶିଷ୍ଟାଂଶ ।

ପ୍ରଭାତ ଦେଖୁଥିଲା । ସନ୍ଧ୍ୟା ଆକାଶ ତଳେ ଶ୍ରେଣୀବଦ୍ଧ ମଣିଷଗୁଡ଼ାଏ । ଦିନସାରର ଖଟଣୀ ପରେ ପୁଣି ଏ କାତର ହାସ୍ୟାସ୍ପଦ ହୁଙ୍କାର, ଶକ୍ତି ଠୁଳେଇବାର ପ୍ରଚେଷ୍ଟା । ହଠାତ୍ ମାନବଜଗତ ପ୍ରତି ବିଦ୍ରୂପଭରା କଣ୍ଠରେ ପ୍ରଭାତ ନିରବତା ଭାଙ୍ଗିଲା—ଦେଖୁଛ ତ ସୀମା, ମଣିଷଗୁଡ଼ାଏ । ଜୀବନର ନିମ୍ନତମ ଖୋରାକିରେ ବନ୍ଦୀରହି ଦିନରାତି ବିନା ଆପତ୍ତିରେ ନିରନ୍ତର [illegible] ଚାଲିଛନ୍ତି କପରି ।

ସୀମା ଟିକେ ହଡ଼୍‌ବଡ଼େଇ ଗଲା ଓ ଭ୍ରମ ସଂଶୋଧନ କଲା ଭଳି ପ୍ରସ୍ତୁତ ହେଲା ପ୍ରଭାତର କଥା ଶୁଣିବାକୁ । ପ୍ରଭାତ କହିଲା—କେବେ ଭାବି ଦେଖିଛ, ସାଧାରଣ ମଣିଷର ହସ କାନ୍ଦର ଜୀବନଟିଏ ସେମାନଙ୍କର ଥିବ କି ନାହିଁ । ମୋର ତ ବେଳେବେଳେ ମନେହୁଏ ମା' କୋଳ ଛାଡ଼ିବା ପରଠୁ ସେମାନେ ହସ କାନ୍ଦ ଓଜର ଆପତ୍ତି ଭୁଲି ଯାଇଥିବେ । ଭାରବାହୀ ପଶୁଗୁଡ଼ାଏ । ଦେଖ ତ କି ନିର୍ଲିପ୍ତ ଖଟଣି !

ନରେଶ ଦେଖି ବ ସୀମା ନର୍ଲିପ୍ତ ଖଝଣୀରୁ କଣ୍ଟୁ ଦେଖି ପାରିଲାନ, କେବଳ ତାଙ୍କ ଛନ୍ଦଭର ହୁଙ୍କାର ଶୁଭୁଥିଲା । କହିଲା—ପ୍ରଭାତଙ୍କୁ ଉଦ୍ଧାହିତ କଲାଭଳି—ତମେ ଏଥିରୁ ଆଇଡ଼ଆ ନେଇ ଆଜ ରାତିରେ ଆଙ୍କିଲ ଦେଖି । ଏଇଠୁ ସେମାନଙ୍କୁ ଦେଖି ଇଚ୍ଛା ହେଉଛି ମୁଁ ଯଦି ଆଙ୍କି ପାରୁଥାନ୍ତି ତମଭଳି !

ପ୍ରଭାତ ଭାବିଲା—ତମେ ଆଙ୍କି ପାରିବ ନାହିଁ । ଏତେ ଦୂରରୁ ଦେଖି ଆଙ୍କି ହୁଏ ଜୀବନକୁ !

ପ୍ରଭାତର ମୁହଁ ବିମୁଗ୍ଧ ଦିଶୁଥିଲା—ସୀମା ବୁଝିଲା ସେ ସ୍ୱପ୍ନ ଦେଖୁଛି । ଏମିତି ପ୍ରଭାତଙ୍କୁ ଭଲ ଲାଗେ—ଲମ୍ବା ଦେହ ଉଦ୍‌ବଗ୍ନ ହୋଇ ଆଗକୁ ଝୁଙ୍କି ପଡ଼ିଛି ଓ ବଡ଼ ବଡ଼ ଆଖି ସ୍ୱପ୍ନିଳ । ସୀମା ଭାବୁଥିଲା ପ୍ରଭାତଙ୍କୁ ଜଣେଇ ଦେବାକୁ ହେବ, ତା ସଙ୍ଗେ ହୁଏତ ଆଉ ଦେଖା ହୋଇ ନ ପାରେ, ତାର ବାହାଘର ତ ଆଉ ବେଶି ଦିନ ନାହିଁ । ଅପ୍ରିୟ ଝଟିକ୍ । କେମିତି ଆରମ୍ଭ କରିବ ଭାବୁ ଭାବୁ ହଠାତ୍ କୁଲିମାନେ ଏଥର ତିଆରି କରି ଲ୍ଗଲଥିବା କୋଠାର ଛାତ ଉପରକୁ ଆଖି ଗ୍ଲଲଗଲା । ଦୁଇ ତିନୋଟି ପେଟ୍ରୋମାକ୍ସର ନଳାଭ ଆଲୁଅରେ କର୍ମତତ୍ପର କୁଲିଗୁଡ଼ିଏ । ଆଦିବାସୀ ରେଜାଙ୍କ ସମ୍ମିଳିତ ସଙ୍ଗୀତର ଧ୍ୱନି—ଅସ୍ପଷ୍ଟ ଦୁର୍ବୋଧ ଭାଷା, ଏକ ପ୍ରକାରର ସ୍ୱରଲହରୀ, ଉପରକୁ ଉଠିଛି ପୁଣି ଖସି ଖସି ହଠାତ୍ ସ୍ୱରର ନିମ୍ନତମ ପାହାଚରେ ଓ ପରପଦ ପୁଣି ଉଠାଣି । ସୀମା ରୋମାଞ୍ଚିତ ହେଲା । ଜୀବନ, ଫୂର୍ତ୍ତି ! କାହିଁ ବାଧବାଧକତାର ତ ଚହ୍ନ ନାହିଁ ।

ପ୍ରଭାତର ଇମୋସନାଲ୍ ସ୍ୱର ପୁଣି ଶୁଭିଲା—ବଞ୍ଚନ୍ତି କାହିଁକି ଏମାନେ, ସର୍‌ଭାଇଭ୍ କରିବାର ଯୋଗ୍ୟତା ଯଦି ନାହିଁ ? ପଶୁଠୁ ବଶିଷ୍ଟ ବୋଲି କେଉଁ ଯୋଗ୍ୟତା ସେମାନେ ଜାହିର୍ କରୁଛନ୍ତି କହିଲ ?

ସୀମା ଦେଖିଲା ପ୍ରଭାତର ଗଳାରେ କାରୁଣ୍ୟ, ଆଖିରେ ଯନ୍ତ୍ରଣା । ଆଜ ରାତିରେ ହୁଏତ ଅନେକ ସମୟ ଧରି ପ୍ରଭାତ ଏଇମାନଙ୍କ କଥା ଭାବିବ, ଏଇ କୁଲିମାନେ ଖୋଲକରେ ଗୀତଗାଇ ତିଆରି କରିଥିବା ଘରର ଶୀତଳ ଗ୍ଲରିକାନ୍ଥ ଭିତରେ ବସି ଦୀର୍ଘଶ୍ୱାସ ଟାଣି ସେଇମାନଙ୍କୁ ଦୟା କରିବ, କବିତା ଲେଖିବ ।

ହସର ଶବ୍ଦ, ଗୋଟିଏ କ୍ଷଣ ନୀରବତା ଓ ତା’ ପରେ ପରେ ସମବେତ କଣ୍ଠରେ ସ୍ୱରର ପୁନରାବୃତ୍ତି । ସୀମା ଅନ୍ୟମନସ୍କ ହୋଇ କହିଲା— ପ୍ରଭାତ, ହଠାତ୍ ଆମେ ଯାଇ ସେ ଘର ଆଲୁଅ ତଳେ ପହଞ୍ଚି ଗଲେପାରନ୍ତେ ପଦ । କେହି ଆମକୁ ଚିହ୍ନନ୍ତେ ନାହିଁ ।

ପ୍ରଭାତ ବିମୂଢ଼ ହୋଇ ଚାହିଁଲା ସୀମାକୁ । ପରସ୍ପରର ଦୃଷ୍ଟି ଦୁହିଁଙ୍କ ଆଖିର ସ୍ୱପ୍ନ ଦପ୍ କରି ଲିଭାଇଦେଲା । ପ୍ରଭାତର କୈଫିୟତ୍—“ତମ ଭଲ ସତ୍ୟକୁ ଦେଖୁ ଦେଖୁ ମୁଁ ଆଖି ବୁଜି ଦେଇ ପାରିବ ନାହିଁ ସୀମା, ଝାପ୍‌ସା ଆଲୁଅ ତାକୁ ଯେତେ ସୁନ୍ଦର କରୁ ପଛକେ ।” ସୀମାର କୈଫିୟତ୍—“ସତ କହୁଛୁ ପ୍ରଭାତ, କାଲି ସକାଳେ ସେମାନଙ୍କୁ ମୁଁ ଦୟା କରିବ, ଯେତେବେଳେ ସେମାନେ ଦରିଦ୍ର ଦେଖାଯିବେ । ତମ କବିତା ପଢ଼ିବ ଓ ମୁଗ୍ଧ ହେବ ।”

ଧୀରେ ଧୀରେ ସେମାନେ ପୁଣି ପାଖେଇ ଆସିଲେ, ପରସ୍ପରକୁ ଚାହିଁ ଆଶ୍ଚର୍ଯ୍ୟ ହେଲେ ଓ ତା’ପରେ ପରସ୍ପରର ସ୍ୱପ୍ନକୁ ଲେଉଟାଇ ଆଖିରେ ଚାହିଁଲେ । ତଥାପି ଯେତେ ପାଖା ପାଖି ମୁଣ୍ଡ ଯୋଡ଼ି ଅନେଇଲେ ବି ଘର ଓ କୁଳିମାନେ ଏକା ଦେଖାଯାଆନ୍ତି ନାହିଁ ।

ସୀମା ଉଠି ଠିଆହେଲା—ଯିବା, ଡେରି ହେଉଛି । ପ୍ରଭାତ ହଠାତ୍ ପଚାରିଲା—ସୀମା ତମର ବାହାଘର କଥା କ’ଣ ପକ୍କା ହୋଇଗଲା ? ସେଇ ସୁଦୀପ୍ତ ସାଙ୍ଗରେ ?

ଦୁଇଟିଯାକ ପ୍ରଶ୍ନର ଉତ୍ତରରେ ସୀମା ମୁଣ୍ଡ ହୁଙ୍କାରିଲା । ଆଉ କ’ଣ ପଚାରିବ ହୋଇ ପ୍ରଭାତ ଚୁପ୍ ରହିଲା । ଅବସନ୍ନ ଲାଗୁଥିଲା ତାକୁ । ସୀମା ମୋତେ ପଦ ଭଲ ନ ପାଉଥିଲା ଏମିତି ନିର୍ଜନ ସନ୍ଧ୍ୟାରେ ମୋ ପାଖେ ବୁଲୁଥିଲା କାହିଁକି, ଦେହରେ ପରଫ୍ୟୁମ୍ ଲଗାଇ ? ଧୀରେ ଧୀରେ ଉଠି ଠିଆହେଲା ପ୍ରଭାତ ।— ତମର ଚାକିରି ନାହିଁ, ଯୋଗ୍ୟତା ନାହିଁ । ଆଉ ଦୁଇବର୍ଷ ଅପେକ୍ଷା କରିପାରନ୍ତି ନାହିଁ ? ନା—ତମକୁ ବିଶ୍ୱାସ ନାହିଁ, ତମର ଦାୟିତ୍ୱବୋଧ ଆଦୌ ନାହିଁ; କିନ୍ତୁ ସୀମା, ତମର ତ ଯୋଗ୍ୟତା ଅଛି, ତମେ ପଦ—। ସୀମା ହସିବ, କହିଦେବ ସତ କଥାଟି—ଏତେ ଦୂର ଚାହିଁ ମତେ ? କେତେ ତ୍ୟାଗ ସ୍ୱୀକାର କରିପାରିବ ନବେ ?

ଚାଲୁ ଚାଲୁ ସୀମା କେତେ କଥା ଗପୁଥିଲା—ପାହାଡ଼ିଆ ରାସ୍ତା ତ, ଭାଇ ଏତେ ଜୋର୍‌ରେ ଗାଡ଼ି ଚଲାଉଥାନ୍ତି । ଭାଉଜ ସାମ୍ନା ସିଟ୍‌ରେ ନିଶ୍ଚିନ୍ତରେ ଢୁଳାଉଥାନ୍ତି । ମୋର କିନ୍ତୁ ଡରରେ ନିଃଶ୍ୱାସ ବନ୍ଦ ହୋଇଯାଉଥାଏ, ହାତ ଗୋଡ଼ ଟାଣକରି ଗୋଟିପଣେ ଝାଳରେ କାକୁସ୍ଥ ହୋଇ ମୁଁ ଖାଲି ସାମ୍ନା ରାସ୍ତାକୁ ଚାହିଁଥାଏ । ମୁଁ ଜାଣେ ଷ୍ଟିଅରିଂ ଭାଇଙ୍କ ହାତରେ, ଯେତେ ଉଦ୍‌ବିଗ୍ନ ହେଲେ ବି ଗାଡ଼ି ଉପରେ ମୋର ଟିକିଏ ହେଲେ କଣ୍ଟ୍ରୋଲ୍ ନାହିଁ । ତଥାପି କ'ଣ ନିଶ୍ଚିନ୍ତରେ ରହିହୁଏ ।

—ଏତେ ଭୟ ଯଦି, ଭାଇ ଗାଡ଼ି ଚଲାଇଲାବେଳେ ବସ କାହିଁକି ?

—ଆଉ କ'ଣ କରିବି ?

—ଡ୍ରାଇଭିଂ ଶିଖିନେଉନି ।

—ହେଃ ! ସୀମା ହସିଲି ।

—କାହିଁକି, ଏମିତି ଅବାନ୍ତର କିଛି ତ ନୁହେଁ ।

—ଡ୍ରାଇଭିଂ ଭାଇଙ୍କ କାମ, ସେ କରିବେ । ଡର ତ ଲାଗିବ, ତା' ବୋଲି—

ପ୍ରଭାତ ରାଗରେ ଦାନ୍ତ କଡ଼ମଡ଼ କଲା । କି ଆଶ୍ଚର୍ଯ୍ୟ କଥା, ଡ୍ରାଇଭିଂ ଭାଇଙ୍କ କାମ ବୋଲି କୋଉ ବେଦରେ ଲେଖାହୋଇଛି ! ନାୟକ ନାୟିକାଙ୍କ ପ୍ରୋବ୍ଲେମ୍ ତମ ପ୍ରୋବ୍ଲେମ୍ ନୁହେଁ, କୁଳିଙ୍କ ଯନ୍ତ୍ରଣା ବି ତମର ନୁହେଁ, ଡ୍ରାଇଭିଂ ବି ତମ କାମ ନୁହେଁ । ଏମିତି ସୁଟୁଂଖୁଳୁଟରେ ସବୁଦିନ ଚାଲିବ ତମେ, କିଛି ନ ମୁଣ୍ଡେଇ !

ସାମ୍ନାରେ ଲେଭେଲ୍ କ୍ରସିଂ । ଦୁହେଁ ଚୁପ୍‌ଚାପ୍ ଠିଆ ହେଲେ ।

କେମିତି ପ୍ରଭାତ ଚାଲିବ ସାରାଜୀବନ ? ସାଧାରଣ ସାମାଜିକ ଜୀବନଟିଏ ଆରମ୍ଭ କରିପାରିବ ତ ? ଖାଲି ଛବି ଆଙ୍କେ ଓ ମଣିଷ ଜାତି ପାଇଁ ଯନ୍ତ୍ରଣା ପାଏ ବୋଲି ସୀମା (କି ଗୀତା କି ମିତା) ତ ତା' ଉପରେ ଆଉ ନିର୍ଭର କରି ପାରିବେନି । ତଥାପି ଛାଡ଼ି ଚାଲିଯାଇ ହୁଏନି ।

ସାଧାରଣ ଗୋଡ଼ ମାଟିରେ ଗୋଡ଼ ଯୋଡ଼ା ହୋଇ ବି ବେଳେବେଳେ ଲମ୍ବି ଯାଇ ଆକାଶର ନୀଳ ଢେଉକୁ ସୀମାର ମୁଣ୍ଡ ଛୁଉଁଛି । କେମିତି ଚାଲିବ ସେ ସ୍ୱପ୍ନ ପରେ ? ଜୀବନକୁ ଏତେ ଦୂରରୁ ଦେଖି ଦେଖି, ଘର ନ ନେଇ, ଶାଢ଼ୀର ଭାଙ୍ଗ ବି ନଷ୍ଟ ନ କରି ଚାଲିପାରିବ ଚିରଦିନ ଏମିତି ସୁନ୍ଦର କୋମଳ ଭାବେ ?

ଦୁହେଁ ପରସ୍ପରକୁ ଚାହିଁଲେ । ଦୂର ଟ୍ରେନ୍‌ରେ ଆଲୁଅ ପଡ଼ୁଛି ଦୁହିଁଙ୍କ ମୁହଁରେ ।

ପ୍ରଚଣ୍ଡ ନାଦରେ ଜଳ ଜଳ ଏକଆଖିଆ ଭୂତଟାଏ ଅପସରି ଗଲା । ଦୁହେଁ ରେଲ୍ ଲାଇନ୍ ପାରହେଲେ ।

ସୀମା ରେଲଲାଇନ୍‌କୁ ଚାହିଁ କି ଗୋଟାଏ ଅଶୁଭ ଆଶଙ୍କାରେ ଶିହରି ଉଠିଲା, ଦୋଷୀ ପରି ପ୍ରଭାତକୁ କଣେଇ ଚାହିଁଲା ଓ ପାଖକୁ ଲାଗିଆସିଲା । ଗୋଟାଏ କଥା ଦେବ ମୁଁ ଯିବା ପୂର୍ବରୁ ?

—କହ, ଚେଷ୍ଟା କରିବି ।

—ତମେ ଏଥର ସିଧା ସଳଖ ଜୀବିକାର୍ଜନ ପାଇଁ କିଛି ଗୋଟାଏ କର ପ୍ଲିଜ୍ ! ବାପା ମା' ତ ତମ ପ୍ରତି ତାଙ୍କ କର୍ତ୍ତବ୍ୟ କରି ସାରିଛନ୍ତି । ଏମିତି ଫାଙ୍କା ଫାଙ୍କା ଚାଲିଲେ କିଛିଦିନ ପରେ ଖାଲି ଦୁନିଆରେ ବଞ୍ଚିବା ବି କଷ୍ଟକର ହୋଇପଡ଼ିବ, ଭାବି ଦେଖିଛ ତ ?

ପ୍ରଭାତ ଅନ୍ୟମନସ୍କ ଭାବେ କହିଲା—ଚେଷ୍ଟା କରିବି ।

ଅଳ୍ପ ଦୂରରେ ବଜାର, ରିକ୍ସା ଷ୍ଟାଣ୍ଡ । ସେଇ ଗ୍ରୋଟ ଗଛମୂଳରୁ ସୀମା ଯିବାକୁ ଚାହିଁବ । ଭିଡ଼ ଆଲୁଅରେ ସେ ଧରା ପଡ଼ିବାକୁ ଚାହେଁନି । ରାସ୍ତାର ଲୋକଙ୍କୁ ବେଖାତିର କରି ସୀମା ପ୍ରଭାତର ହାତ ମୁଠେଇ ଧରିଲା ଓ କହି ଚାଲିଲା—ପ୍ରଭାତ, ମୁଁ ମାନୁଚି ତମ ଭିତରେ ପ୍ରତିଭା ଅଛି (ଅଧା ଆଲୁଅରେ ସୀମାର ମୁହଁ ସ୍ପଷ୍ଟ ଦିଶୁନି—ସେ ହସୁନି ତ !)···ତଥାପି, ଆମ ସମାଜରେ··· ତମ ପ୍ରତିଭାର ବିକାଶ ପାଇଁ ବି···

ପକ୍‌କା ରାସ୍ତାରେ ଶ୍ରୀକଣ୍ଠ ଶଙ୍କରଙ୍କ ଦୁହିଁଙ୍କ ପାଦ ବେତାଳିଆ ପଡ଼ୁଛି । ଜଣେ ବୟସ୍କା ଶୁଭାକାଂକ୍ଷୀ ମାଉସୀ ଭଳି ସୀମା ଉପଦେଶ ଦେଉଛି । ସେ କାହିଁକି ନିଜେ ଚିନ୍ତାକରୁନି ତା' ଜୀବନ କଥା ? ଯେଉଁ ଜୀବନରେ ସେ ସ୍ୱଚ୍ଛନ୍ଦରେ ପଶିବାକୁ ଯାଉଛି, ସେଠି ସେ ତା'ର ରୂପେଲି ପରଦାର ରାଜପୁତ୍ର କଥା ଚିନ୍ତା କରି ପାରିବ, ମାଳ ଆଳୁଅର ଲୁଳିଙ୍କୁ ଦେଖି ମୁଗ୍‌ଧ ହୋଇ ପାରିବ ?

ଦୁହେଁ ସାନ ଗଛଟି ମୂଳରେ ଠିଆହେଲେ । ଦୁହିଁଙ୍କ ହାତ ପରସ୍ପରର ମୁଠାରେ । ପ୍ରଭାତର ମନେହେଲା ହୁଏତ ହଠାତ୍ ହନେ କେବେ ଦେଖାହେଲା-ବେଳେ ସୀମାର ଏଇ ଲମ୍ବା ଆଙ୍ଗୁଳି ଉଷୁମ ପାପୁଲି ସମେତ ଗୋଲ ବାହୁରୁ ପୂରା ହାତଟା କଟି ଯାଇଥିବ । ଶଙ୍କିତ, ଉଦ୍‌ବିଗ୍ନ ଗଳାରେ କହିଲା—ସୀମା, ମୋର ବି ଗୋଟିଏ କଥା ତମେ ରଖିବ । ତମ ସ୍ୱାମୀଙ୍କଠୁ ଡ୍ରାଇଭିଂଟା ଶିଖିନେବ । ସୀମା ଭ୍ରୂକୁଞ୍ଚନକୁ ଖାତିର୍ ନ କରି ଆହୁରି ବ୍ୟଗ୍ର, ଆତ୍ମୀୟ ସ୍ୱରରେ ପ୍ରଭାତ କହିଲା—ତମେ ଜାଣିନ, ସୁଦୀପ୍ତ ଖ୍ୟାତଣ ର୍‌ୟାସ୍ ଡ୍ରାଇଭର । ତା'ର ଜିଭ ଅଗରେ ଆହୁରି ଖଜବଜ ହେଉଥିଲା, କହିଦଅନ୍ତା—ତମେ ଯେଉଁ ଜୀବନରେ ପଶିବ, ସେଠି ଦୂରେଇ ଠିଆହେଇ ଦର୍ଶକ ହେବା ସମ୍ଭବ ନୁହେଁ ଓ ଆଉଜଣବା ମାନେ ହାତ କଟିବାର ସମ୍ଭାବନା ।

ସୀମା ହସିଲା ଓ ହାତ ମୁକୁଳାଇ ନେଲା । କହିଲା—ଡ୍ରାଇଭିଂ ପୁଅଙ୍କ କାମ, ମୋତେ ଭଲ ଲାଗେନି ।

ସୀମା ଆଲୁଅ ଭିଡ଼ରେ ମିଶିଯାଉଛି ଆଦୌ ପଛକୁ ନ ଚାହିଁ । ହଠାତ୍ ସୀମା ବୁଲିପଡ଼ି ଫେରିଆସନ୍ତା, ପ୍ରଭାତର ବେକରେ ବାହୁଛନ୍ଦି କହନ୍ତା—ପ୍ରଭାତ, ତମକୁ ମୁଁ ଭଲପାଏ ଜୀବନ ଦେଇ । ତମ ପାଇଁ ମୁଁ ସବୁ ପାରିବି· · ·

ଏସବୁ ସତ ନୁହେଁ । ସୀମା ପ୍ରଭାତ ପାଇଁ ସବୁ ପାରିବନି, ପ୍ରଭାତ ପାଇଁ ତା'ର ସେତିକି ପ୍ରେମ ଓ ବିଶ୍ୱାସ ନାହିଁ । ପ୍ରଭାତ ବି ପାରିବନି ଏତେ ବିଶ୍ୱାସ ମୁଣ୍ଡାଇ, ସେ ବି ସୀମା ପାଇଁ କେତେ ଦୂର ବା କରିପାରିବ ? ଖାଲି ପାଖାପାଖି ଦେହର ଉଷ୍ଣତା ଭଲ ଲାଗେ, ଆଖିର ସ୍ୱଚ୍ଛ ଦର୍ପଣରେ ପ୍ରତିବିମ୍ବ ସୁନ୍ଦର ଦିଶେ, ରାସ୍ତା ସରିଯାଏ, ଘୁଲି ଯେତେ ସ୍ପୃଷ୍ଟିହେଲେ ବି ଦୂରେଇଯାଏ । ପରସ୍ପରକୁ ସେମାନେ ଦେଖନ୍ତି ଛଳ ଛଳ ଜଳରେ ପ୍ରତିବିମ୍ବ ଦେଖିଲା ଭଳି, ଦୁହେଁ ଜାଣନ୍ତି

ଦୁହିଙ୍କ ଭଙ୍ଗୁରତା । ଛୁଇଁଲେ ସେ ଛବି ଭାଙ୍ଗି ଖଣ୍ଡ ଖଣ୍ଡ ହୁଏ ଓ ଛବି ଭାଙ୍ଗି-ଯିବାର ଭୟରେ ଦୁହେଁ ଢେରଫେଡ଼ ଚାଲନ୍ତି ବିପରୀତ ଶୁଖିଲା ରାସ୍ତାଅଡ଼େ ଯେଉଁଠି ପ୍ରତିବିମ୍ବର ଆଧାର ନାହିଁ ।

ଚାଲି ଚାଲି ପ୍ରଭାତର ଛାତିରେ ଆଶଙ୍କାର ଓଜନିଆ ଭାବଟା ରହିଥିଲା ତଥାପି । ସେ ମନସ୍ଥ କଲା ରାଉରକେଲାରେ ଚାକିରୀଟା ଚେଷ୍ଟାକଲେ ହୋଇ ଯାଇପାରେ, ଭାଇ କହୁଥିଲେ ପ୍ରମୋସନ୍‌ର ଚାନ୍‌ସ ବି ଅଛି । ସମ୍ଭବତଃ ପୁଣି ଦିନେ କେବେ ସୀମା ସାଙ୍ଗେ ଦେଖା ହେଲାବେଳକୁ ତା' ନିଜର ପେଶୀବହୁଳ ହାତରୁ ଗୋଟାଏ ବି କଟି ଯାଇଥିବ ।

ପ୍ରଭାତକୁ ନିଘୁଟିଆ ଲାଗୁଛି । ଏକୁଟିଆ । ଶୀଘ୍ର ପାଦ ପକାଇଲା । ଏକୁଟିଆ ପାଦ ବେତାଳିଆ ହେବାର ଭୟ ନାହିଁ ! ଆଶ୍ଚର୍ଯ୍ୟ ହୋଇ ସେ ଉପଲବ୍ଧି କଲା ପଳାୟମାନ ଛାଇ ଦେଖି ଆନନ୍ଦିତ ହେବାର ଦୃଢ଼ତା ବି ତା'ର ଏବେ ନାହିଁ । ପିଠି ପାଖ ଓଦା ହୋଇ ଆସୁଛି ଝାଳରେ, ପବନ ବି ନାହିଁ ଉଡ଼ାଇ ନେବାକୁ । ଆଃ ! ସୀମା ପାଖରେ ଚାଲନ୍ତା ଯଦି ରାସ୍ତା କେଡ଼େ ଶୀଘ୍ର ସରନ୍ତା, ପାଦ ପଛକେ ବେତାଳିଆ ପଡ଼ୁ, କାଛୁ କାଛୁ ଦେହର ଉଷୁମ ଓ ପରଫ୍ୟୁମ୍ ପଛକେ ଖର୍ଚ୍ଚ ହେଉ ପବନରେ ।

ଶେଷ ବସ୍ତିଖଣ୍ଡ ଟପିଗଲା ପରେ ପ୍ରଭାତ ସ୍ତବ୍ଧ ହୋଇ ଦେଖିଲା, ସାମ୍ନାରେ ଛାଇ ଲମ୍ବି ଯାଇଛି, ମାଇଲ ମାଇଲ ଧରି ଲମ୍ବି ନିଜେ ଅନ୍ଧାର ପାଲଟିଛି । ସୀମା କ'ଣ ଏବେ ସହରର ଅପର ପ୍ରାନ୍ତର ବସ୍ତିଖଣ୍ଡ ଟପିଥିବ !

# ଭାଷା

ପୁରୁଣା ଆକାଶରେ ପୁଣି ଅନେକ ତାରା । ଦୂରରୁ ଟ୍ରେନ୍ ହୁଇସିଲ୍ ଶୁଭୁଛି ଓ ପବନ ବହୁଛି । ଶନିବାର ରାତି ।

ଚନ୍ଦ୍ରା ଓ ତପା ଅନେକ ଦିନ ପରେ ଭେଟିଥିଲେ । ତପା କିଛି କାମରେ କଟକ ଆସିଥିଲା ଓ ସୋମବାର ପୁଣି ଫେରିଯିବ ତା' ଘରକୁ । ଅନେକ ଗପ ବାକି—ଏତେ ଦିନର ନିବିଡ଼ ବନ୍ଧୁତା ।

ହଷ୍ଟେଲ୍‌ର ଶ୍ରେଷ୍ଠ ଛାତଟିରେ ଗୋଟାଏ ଅବ୍ୟବହୃତ ବେଷେଲ ଘରୁ ଉଠିଥିବା ଶିତଳ ଚିମ୍ନୀ ଛାତ ଉପରକୁ ଉଠି ଦୁହେଁ ପାଖାପାଖି ଚିତ୍ହୋଇ ଆକାଶକୁ ମୁହଁ କରି ଶୋଇଯାଇଥିଲେ । ଆକାଶର ଆଉଟିକେ ପାଖକୁ ଲାଗି-ଯିବା ପାଇଁ ବୋଧେ ଏ ପ୍ରଚେଷ୍ଟା । ରାତିର ଆକାଶରେ ଦଳ ଦଳ ବାଦୁଡ଼ି ତାରା-ମାନଙ୍କୁ ତାଙ୍କ ଅନ୍ଧାର ଡେଣାରେ ଢାଙ୍କି ଢାଙ୍କି ଉଡ଼ି ଯାଉଥିଲେ ।

କେତେବେଳକେ ଚନ୍ଦ୍ରାର ମନ୍ତବ୍ୟ—କେତେ ଲଗାଲଗି, କେତେ କୁନି କୁନି ତାରା ନିଁାରେ !

ଓ ତପାର—କେତେ ଟିକେ ଟିକେ ଆଲୁଅ ସେମାନଙ୍କର, କେଡ଼େ ଶୀତଳ ଆଲୁଅ ।

ଦୁଇବନ୍ଧୁ ପୁଣି ଚୁପ୍ ହୋଇ ପରସ୍ପରର ସ୍ନେହ ଓ ତାରା ଆଲୁଅରେ ସେକିହେଲେ । ରୁମ୍‌ମାନଙ୍କରୁ ଶନିବାର ରାତିର କୋଳାହଳ ଓ ରାସ୍ତା ଆଡ଼ୁ ଭାସିଆସୁଥିବା ଲଟେରୀ ବିକ୍ରେତାର ଚିତ୍କାର କାନରେ ବାଜୁଥିଲେ ବି ଦୁହେଁ ଜାଣିଶୁଣି ମୁଣ୍ଡ ଭିତରୁ ଅଡ଼େଇ ଦେଉଥିଲେ ।

ଚନ୍ଦ୍ରା ପଚାରିଲା ତପାକୁ—କ'ଣ ତୋ ଭାଇଙ୍କ ବିଷୟରେ ଏତେ ବ୍ୟସ୍ତ ହୋଇ ଲେଖିଥିଲୁ ?

ତପାର ମନଟା ହଠାତ୍ ଭାରି ହୋଇ ଖସି ଆସିଲା ତଳକୁ—ତାରାମାନଙ୍କଠୁ ମାଟି ଉପରକୁ । ଦୀର୍ଘଶ୍ୱାସ ଛାଡ଼ି ସେ ଉତ୍ତର ଦେଲା, ଲେଖିଛି ତ ସବୁ ।

ଚନ୍ଦ୍ରା ଚିଠିଟାରୁ ଯାହାଠୁ ବେଶି କିଛି ଆଶଙ୍କା କରୁଥିଲା । ସେ ଆଶ୍ଚର୍ଯ୍ୟ ଓ ସାମାନ୍ୟ ବିରକ୍ତ ବି ହେଲା – କିନ୍ତୁ ସେତିକି କଥାରେ ତୋ ଭଳି ଝିଅ ଏତେ ବ୍ୟସ୍ତ ହୋଇ ପଡ଼ିବାର ତ କୌଣସି କାରଣ ନାହିଁ । ତୁ କ'ଣ ଭାବିଥିଲୁ ତୋ ଭାଇ ପିଲାଦିନେ ଯେମିତି ଥିଲେ, ଠିକ୍ ସେମିତି ରହିଥାନ୍ତେ ? ବୟସ ବଢ଼ିବା ସଙ୍ଗେ ସଙ୍ଗେ ପ୍ରକୃତି ବି ତ ବଦଳେ । —ତା ବୋଲି ଏତେ ଦୂର ! ତପାର ବାଷ୍ପରୁଦ୍ଧ ଗଳା ।

ଚନ୍ଦ୍ରା ତା ବନ୍ଧୁର କୋହକୁ ଅନୁଭବ କଲା, ସମବେଦନାଜନିତ ହଠାତ୍ ସ୍ନେହରେ ତା ମନଟା ଭିଜିଗଲା; କିନ୍ତୁ କ'ଣ ବା ସାନ୍ତ୍ୱନା ଦିଆଯାଇପାରେ ତପାର ଏ ଅଯଥା ଭାବପ୍ରବଣତା ପାଇଁ ? ଚନ୍ଦ୍ରା ତା ମନରେ ଥିବା ଶବ୍ଦ ଓ ବାକ୍ୟ କୋଷ ଦରାଣ୍ଡି ଗଲା ।

ସାନ୍ତ୍ୱନା ବାଣୀରୁ ତପା ବୁଝିଲା, ତା ପାଇଁ ଚନ୍ଦ୍ରା ହୃଦୟରେ ସ୍ନେହ ଅଛି । ଯଦିଓ ସେ ବୁଝିବନି; କାରଣ ସେ ପୂଜା କରିନାହିଁ, ଜାଣିନାହିଁ ଦେବ ମୂର୍ତ୍ତିଟିଏ ଆଖି ସାମ୍ନାରେ ବତୁରି କାଦୁଅ ହୋଇଗଲେ କେତେ କଷ୍ଟ ହୁଏ !

ଚନ୍ଦ୍ରା ଭାବୁଥିଲା – ଆଜିର ଯୁବସମାଜର ଆଧୁନିକ ଓ ବିପ୍ଳବାତ୍ମକ ମନୋଭାବ ସମ୍ପର୍କରେ ଏତେଥର ଆଲୋଚନା କଲାପରେ ବି ତପାର ଏ ପିଲାକିଆମି !

ତା'ପରେ ଅନେକକ୍ଷଣ ରାତିର ଅନ୍ଧାରକୁ ନିଜ ଦୁଃଖ ଦେଇ ପ୍ରକୃତିସ୍ଥ ହେଲାପରେ ତପା ପଚାରିଲା—ଅମିୟ କଥା ଆଜିକାଲି କିଛି ଲେଖୁନୁ ଯେ ?

ଚନ୍ଦ୍ରା ଦମ୍ ଅଟକେଇ ନେଲା ଓ ତାରାମାନଙ୍କ ଉଦ୍ଦେଶ୍ୟରେ ଲମ୍ବେଇଥିବା ହାତଟାକୁ ଆସ୍ତେ ଆସ୍ତେ ତଳକୁ ଖସାଇ ଆଣିଲା । ସଖେଦେ ହସି କହିଲା—ଓଃ ! ଅମିୟ—

ସୁରଟା କିନ୍ତୁ ଧୋକ୍କା ଦେଲା ଓ ଚନ୍ଦ୍ରାର ଗୁଡ଼ତରେ ଦଶ ଟନ୍ ଲୁହା ଓଜନର ସୂଚନା ଦେଲା । ତପା ସନ୍ଦିଗ୍ଧ ହେଲା ଓ ବାଧ କଲା—ପ୍ଲିଜ୍ ଚନ୍ଦ୍ରା, ମୋ ପାଖେ ଯଦି ତୁ ଏମିତି କଥା ଲୁଚଉ—

ଚନ୍ଦ୍ରାର ଆଖି କୋଣ ଦେଇ ଗରମ ଲୁହ ବହିଗଲା କାନଯାଏଁ ।—ମୁଁ ତାକୁ ବୁଝିବାରେ ଭୁଲ୍ କରିଥିଲି । ତାର ଦୋଷ ନୁହେଁ ।

ସବୁ ଶୁଣିଲା ତପା । ବିଚ୍ଛିନ୍ନ ଚନ୍ଦ୍ରା—ନିଜର ନିସ୍ୱାହତା, ଅନଭିଜ୍ଞତା ଯାଇଁ ଧୋକା ପାଇଗଲା । ଅମିପ୍ରିୟଟାର ପୁଣି ଏତେ ବଦ୍‌ଗୁଣ ?

—ଚନ୍ଦ୍ରା ! ମୋ ସୁନା ଭଉଣି ! ଏମିତି ଘଟଣା ଅନେକ ଘଟେ । ଭଲ ହେଲା ତୁ ମୂଳରୁ ଜାଣିଗଲୁ । ଦିନାକେତେ ପାଇଁ ସିନା ଦୁଃଖ ଲାଗିବ······ ଭାଗ୍ୟ···ଭଗବାନ······

ଚନ୍ଦ୍ରାର କିନ୍ତୁ ରୁଦ୍ଧ ଅଭିମାନରେ ଅଧିକ ଲୁହ ବହିଲା । ତା' ଦୁଃଖକୁ ତପା କାହିଁକି ଅନୁଭବ କରୁନି । କେବଳ ତୁଳନା—ଆଉ ହଜାରେଟା ଜଣାଶୁଣା ଘଟଣା ସାଙ୍ଗେ ଓ ସାନ୍ତ୍ୱନା ! ଏ ସମବେଦନା ଯଥେଷ୍ଟ ନୁହେଁ । କ୍ଷୋଭରେ ଚନ୍ଦ୍ରା ଲୁହ ବନ୍ଦକଲା, ଏଇ ଆଶାରେ ଯେ ତପା ବି ତା'ର ଅର୍ଥହୀନ କଥା ବନ୍ଦ କରିବ ।

ଝଡ଼ ଥମିଯିବା ପରେ—

ତପା ଆକାଶକୁ ଲକ୍ଷ୍ୟ କରୁଥିଲା ଓ ବିସ୍ମିତ ହେଉଥିଲା । ଚନ୍ଦ୍ରା ଆକାଶକୁ ନିରେଖୁଥିଲା ଓ ହତାଶାରେ ଚାହୁଁଥିଲା ।

ଆକାଶଟା ସାରା କେତେ କୁନି କୁନି ତାରା କେତେ ଲଗାଲଗି । ଅଥଚ ପ୍ରତି ତାରା ଭିତରେ ଅନେକ ଅନେକ ଆଲୋକ ବର୍ଷର ଦୂରତ୍ୱ ।

କେତେ ଶାନ୍ତ, କେଡ଼େ ଶୀତଳ ଆଲୁଅ ସେମାନଙ୍କର ! କେଡ଼େ ଉତ୍ତପ୍ତ, ଉତ୍‌କ୍ଷିପ୍ତ ଭିତର ।

# ପ୍ୟାଟର୍ଣ୍ଣ

ସବିତା ଉଲ୍‌ବୁଣା ବନ୍ଦକରି ପୁଣି ଥରେ ଝୀନାକୁ ଡାକିଲେ । ଟେବୁଲ୍‌ରେ ଖାଇବା ବଢ଼ା ହୋଇଗଲାଣି ।

ଝୀନା ତରବରରେ ପୁଚୁଣା ଉତ୍ତର ଦେଲା—ଯାଉଛି ମା' । ପର ମୁହୂର୍ତ୍ତରେ ତା'ର ବାପାଙ୍କ ସହ ପୁଣି ଆଲୋଚନା ଚାଲିଲା ।

ସବିତା ଓଠ ଚିପିନେଇ ପୁଣି ବୁଣାରେ ମନ ଦେଲେ । ଅଭ୍ୟସ୍ତହାତ, ଷ୍ଟିଚ୍ ପରେ ଷ୍ଟିଚ୍ ଖସିଯାଉଛି ମସୃଣ କଣ୍ଟାରେ ।

ଡ୍ରଇଂ ରୁମ୍‌ରୁ ଝୀନାର ଉତ୍ତେଜିତ ଗଳା ଶୁଭୁଛି । ରମେଶ ବାବୁଙ୍କର ବୁଝେଇଲା ଗଳା, ସାମାନ୍ୟ ବିରକ୍ତିର ଆଭାସ—ବୁଝିଲୁ ମା, ତେବେ ଆପତ୍ତି କରିବାର ଗୋଟିଏ ଧରଣ ଅଛି ।

ଝୀନାର କଲେଜ ଷ୍ଟ୍ରାଇକ୍ ବିଷୟ ସମ୍ଭବତଃ । ଯୁକ୍ତିତର୍କ ଶୁଣିବାରେ ଆଗ୍ରହ ସବିତାଙ୍କର ନାହିଁ ।

ଏ କଣ୍ଟାରୁ ସେ କଣ୍ଟା । ଷ୍ଟିଚ୍ ସବୁ ଖସୁଛି ଆପେ ଆପେ । ପ୍ୟାଟର୍ଣ୍ଣଟା ଥରେ ଅଭ୍ୟାସରେ ପଡ଼ିଗଲେ ଆଉ ଭାବନା ବା ଚେଷ୍ଟା ଦରକାର ହୁଏ ନାହିଁ । ଚିକ୍‌କଣ କଣ୍ଟାରେ ଉଲ୍ ଖସି ଖସି ଚାଲେ ।

କୁକୁରଟା ଭୁକୁଛି । ଗୋପାଳ ତାକୁ ଖାଇବାକୁ ଦେଇନି ଏ ଯାଏ । କ'ଣ ଯେ ସେ କରୁଥାଏ !

ରମେଶ ବାବୁଙ୍କ ସାମାନ୍ୟ ଚଡ଼ିଗଲା --ଆମ ଆନ୍ଦୋଳନକୁ ତୁମେ ସବୁ ଆଜକାଲର ମାମୁଲି ଷ୍ଟ୍ରାଇକ୍ ସାଙ୍ଗେ ତୁଳନା କରୁଛ ? ଆମର ଯେଉଁ ଲକ୍ଷ୍ୟ ଥିଲା, ସେଥିରେ ଯେଉଁ ବିଶ୍ୱାସ ଥିଲା, ନିଷ୍ଠା ଥିଲା, ତମେମାନେ ଧାରଣା କରି ପାରିବ ?

ରମେଶ କହେ— ଜାଣ ସବିତା, ଆମ ଦେଶ ସ୍ୱାଧୀନ ହେବ । ସବିତାର ଆଖିରେ ଅବିଶ୍ୱାସ । ବିଶ୍ୱାସ ହେଉନି ? ସ୍ୱାଧୀନତା ଆମେ ନିଜେ ଆଣିବୁ ଆମର ରକ୍ତଦେଇ । ଆଉ ବେଶିଦିନ ନାହିଁ, ତମେ ଦେଖିବ—

ସବିତାର ଭୟ ହୁଏ । ରମେଶ କିନ୍ତୁ ଭୟ କ'ଣ ଜାଣେନି । ଦେଶପାଇଁ ଲଢ଼ିବାରେ ଭୟ ପୁଣି କ'ଣ ?

—ବାପା ତମେ ଆଦୌ ବୁଝିବାକୁ ଚେଷ୍ଟା କରୁନ । ଗୀତାର ଗଳାରେ ଅଧୈର୍ଯ୍ୟ ହେବାର ଆଭାସ ।

ରମେଶ ଅନେକ କଥା କହେ—ଦେଶ ସ୍ୱାଧୀନତା, ଗାନ୍ଧିଜୀ । ଅନେକ ସଭାରେ ରମେଶ ବକ୍ତୃତା ଦିଏ, ହିପ୍‌ନୋଟାଇଜଡ଼୍ ହେଲାପରି ସବିତା କେବଳ ଶୁଣେ, କେବେ ପ୍ରଶ୍ନ କରେନି । ମତାମତ ଦେବାର ପ୍ରଶ୍ନ ଉଠିନି । ସବିତା ଜାଣେ ରମେଶ ଯାହା କହେ ସବୁ ଠିକ୍, ଯାହା ଭାବେ ସବୁ ଠିକ୍ ।

ଷ୍ଟିରିଓଟା ଏ ଖସି ଯାଇଚି, ଯାଃ ।

କାଲି ଗୋପାଳ କହୁଥିଲା ପୀତାମ୍ବର ବାବୁଙ୍କ ପୁଅକୁ ପୋଲିସ୍ ଏରେଷ୍ଟ କରିଛି । ଆଜକାଲିକାର ପିଲାଗୁଡ଼ାକ କାହିଁକି ଏମିତି ହୋଇଗଲେ ମିଛଟାରେ ?

ରମେଶ ଦେଶପାଇଁ ଲଢ଼ୁଥିଲା । ରମେଶ ଜେଲ୍ ଯାଇଥିଲା ।

—କାହା ବିରୁଦ୍ଧରେ ତମର ଏ ଅଭିଯାନ ଶୁଣେ ? ପାଠ ନ ପଢ଼ି ଜେଲ୍ ଯିବାକୁ ମଜା ଲାଗୁଚି, ଦେଖାଣିଆ ନେତାଗିରି କରିବାକୁ । ଏ ପିଲାଗୁଡ଼ା ଯଦି ଜାଣନ୍ତେ ଆମବେଳେ ଜେଲ୍ ଯିବା କ'ଣ ଥିଲା !

—ଶୁଣ ବାପା ! ତମ ଆମ ଜେନେରେସନ୍ ଭିତରେ ଏତେ ତଫାତ୍ ରହିଯାଇଚି, ଆମ ଭିତରେ ବୁଝାମଣା ଏକଦମ୍ ଅସମ୍ଭବ ହୋଇଯାଇଚି ।

ସୀନା ପୁଣି ବୁଝୋଉଚି ରମେଶଙ୍କୁ । ସବିତାଙ୍କର ହାତବୁଣା ଟିକେ ଅଟକିଗଲା ।

—ସୀନା, ଖାଇବା ବେଳ ହେଲା ନି ?

—ଏଇ ଗଲି ମା' ।

କଥାବାର୍ତ୍ତା ପୂର୍ବପରି ଚାଲିଲା । ସବିତା ଉଲ୍ ବୁଣିଲେ ।

ରମେଶ କବିତା ଲେଖେ । ଅଦ୍ଭୁତ ତରଳ ମ୍ୟାଜିକ୍ । ସବିତା ନ ପଢ଼ିଲେ କବିତା ସବୁ ଅସମ୍ପୂର୍ଣ୍ଣ ରହିଯାଏ ।

ବାଜେ ଉଲ୍—ମଝିରେ ହଜାର ଗଣ୍ଠି । କୋଳରେ ଉଲ୍ ରଖିଦେଇ ସବିତା ହାଇ ମାରିଲେ । ଘୁଅରେ ଅନେକ ଗୁଡ଼ାଏ । ଅନେକଦିନୁ ସଫା କରାଯାଇନି ।

ଡ୍ରଇଂରୁମ୍ ପର୍ଦ୍ଦା ଫାଙ୍କରୁ ରମେଶ ବାବୁଙ୍କ ହାତ ଦି'ଟା ଦିଶୁଛି । କିଛି ବୁଝାଉଛନ୍ତି ବୋଧେ, ହାତ ଦି'ଟାରୁ ଅନୁମାନ କରି ହେଉଚି । ତା' ସାଙ୍ଗେ କେବଳ ଅର୍ଥହୀନ ଶବ୍ଦଗୁଡ଼ାଏ ଶୁଭୁଛି ।

ବିବାହପରେ ବି ରମେଶ ସେମିତି ଥିଲା, ଆଦୌ ବଦଳିନି । ସବୁବେଳେ ନୂଆ କଥା, ନୂଆ ଚିନ୍ତା, ନୂଆ ସ୍ୱପ୍ନ । ସବିତାର ଚିନ୍ତା କରିବାର ଆବଶ୍ୟକତା କେବେ ହୋଇନି । ସବିତା ତ ଜାଣିଥିଲା, ତା' ହାତ ଧରି ଖଡ଼ିରେ ଅ ଆ ବୁଲେଇ ଦେବାରେ ରମେଶର ଚରମ ତୃପ୍ତି । ତା'ର ସମ୍ମତିର ଆଶ୍ରୟ ନେଇ ରମେଶ ମନର ଟେଣ୍ଡ୍ରିଲ ସବୁ ଶୂନ୍ୟକୁ ହାତ ବଢ଼ାଇ ଆହୁରି ସ୍ୱପ୍ନ ଖୋଜନ୍ତି ।

କୋଳରୁ ଉଲ୍ ଉଠାଇଲେ । ନାଃ, ଇଚ୍ଛା ହେଉନି । ହାତ ଅଣ୍ଡା ହେଲଣି । ସେ ଘରୁ ମିଳିତ ସ୍ୱରର ଶବ୍ଦ ଶୁଭୁଚି ଏଯାଏଁ । ଟେବୁଲ ଉପରେ ଉଲ୍ ଥୋଇ ମାରିବି ନ ହେଲେ ମରିବିର ସଂକଳ୍ପ ନେଇ ସବିତା ଉଠିଲେ ।

—ସୀନା—

—ଯାଉଛି ମା, ଏଇ ଯଷ୍ଟ୍—

—କିଛି ଦରକାର ନାହିଁ । ଗୋପାଳକୁ କହୁଛି ସେ ନେଇଯାଉ—

—ଏଇ ଆମେ ଗଲୁ ମା, ପ୍ଲିଜ୍—

ବାପ ଝିଅ ଆସିଲେ । ସବିତା ଆଦୌ ଆଖି ଉଠେଇଲେ ନ ।

— ବାପ୍ ରାନା, ତୋ ମା'ଙ୍କ ଫିଭର୍ ଭଲ୍ ହୋଇଛି ।

ସବିତା ସେମାନଙ୍କର ଉଚ୍ଛ୍ୱସିତ ହସର ପ୍ରତ୍ୟୁତ୍ତର ଦେବାକୁ ଚେଷ୍ଟା କଲେ ।

ମୋ ଫିଭର୍ କାହିଁକି ଭଲ୍ ହବ ମ । ଏବେ ଖାଇଲାବେଳକୁ ତୁମ ମୁଣ୍ଡ ଠିକ୍ ରହିବନି ହେଲେ । ସିଏ ଆଉ ସତ ହେଇ ଅଛି ସେ—

—ହେଲା ଏବେ, ଦୁଇଟାଏ ଅଣ୍ଡା ଖାଇଦେବା ।

—ଦୁଇଟାଏ ନୁହେଁ ତ ଆଉ କ'ଣ । ତମର ବଢ଼ିଆ ଆଲୋଚନା ସବୁ କର ମୁଁ ମନା କରୁନ ସେ, ଆଗେ ଖାଇ ନେଇ ତା'ପରେ ଗପକଲେ କ୍ଷତିଟା କ'ଣ ହୁଅନ୍ତା ?

—ହଉ, ହଉ, ଆରେ ଏ ଗୋଲାପଟା ଫୁଟିଲାଣି, କଏ ହ୍ୱାକୁ ଆଣିଲା ?

—ମୁଁ, କାଲୁ ବାପା ଆମ ଡାଳିଆ ଏ ବର୍ଷ ମୋଟେ ଭଲ ହେଲାନି । ପଟ୍ଟନାୟକ ବାବୁଙ୍କ ଘର ଦେଖିଚ, କେତେ ବଡ଼ ବଡ଼ ହୋଇଚି ?

କ'ଣ କରିବା, ଆମେ ତ ଡେରି କରିଦେଲୁ । ଗୁଡ୍ ତ ଭଲ କୋଉଠି ମିଳିଲା ?

ଗଛ, ଗୁଡ୍, ବଗିଚ୍ଚ । କିଛି ସମୟପାଇଁ ଏଇଠି ଟପିକ୍‌ଟା ଥିବ । ଖିଅ ହରେଇଲେ ଯାଏ ଆସେ ନାହିଁ ।

—କୋଉ ଗୋଟାକ କରିବା ?

ରମେଶ ବାବୁଙ୍କ ପ୍ରଶ୍ନ । ସବିତା ମୁହଁ ଟେକି ଚାହିଁଲେ । ନାଃ, ରହା, ତାଙ୍କୁ ନୁହେଁ, ରାନାକୁ ପ୍ରଶ୍ନ କରାଯାଇଛି । ବଗିଚ୍ଚ ଓ ଗୁଡ଼ଗଛରୁ ବହୁପୂର୍ବରୁ

ଆଗେଇଲାଣି ନିଶ୍ଚୟ । ତେଣୁ ବର୍ତ୍ତମାନ ସବିତାଙ୍କର ମତାମତ ଦରକାର ହେବାର ଆଦୌ ସମ୍ଭାବନା ନାହିଁ । ଆଉ ଉଟୋ ମାରିବାର ଧୈର୍ଯ୍ୟ ବି ସବିତାଙ୍କର ନାହିଁ ।

କିନ୍ତୁ ଗିନା—ଆଶ୍ଚର୍ଯ୍ୟ ଲାଗେ । ଗିନା ତ ତାଙ୍କର ସୃଷ୍ଟି, ତାଙ୍କର ଆଖି ଆଗରେ ମଣିଷ ହୋଇଛି, ତାଙ୍କର ହାତରେ । ସେ କାହିଁକି ମୁଣ୍ଡ ଟେକିବାକୁ ଶିଖିନ ?

ଗିନା ତେବେ କ'ଣ ସତରେ ମଣିଷଟିଏ ? ସବିତା କେବଳ ଉଟୋ ? କାହିଁକି ତେବେ ରମେଶ ତାଙ୍କୁ ଏତେ ବିଶ୍ୱାସ କରୁଥିଲେ, ତାଙ୍କ ଉପରେ ଏତେ ଆସ୍ଥା ରଖିଥିଲେ ?

ଥାଳରୁ ମୁହୂର୍ତ୍ତକପାଇଁ ସବିତା ଆଖି ଉଠେଇଲେ । ଅନେକ ଦୂରରେ ଟେବୁଲ୍ ଆରପାଖରୁ ରମେଶ ବାବୁଙ୍କର ସାର୍ଟ ଦେଖାଯାଉଛି । ଏକା ଟେବୁଲ୍‌ରେ ଖାଇବା ଭଳି ଅଭ୍ୟାସରେ ପଡ଼ି ଯାଇଥିବା ଜୀବନର କେତେକ ଅଂଶକୁ ବାଦ ଦେଲେ, ରମେଶବାବୁ ଓ ସବିତାଙ୍କର ଦୁନିଆଁରେ କୌଣସି ସାଧାରଣ ବନ୍ଧ ନାହିଁ । ପରସ୍ପର ସାଙ୍ଗେ କଥାବାର୍ତ୍ତା କରିବାକୁ ହେଲେ ସେମାନେ ନିଜ ନିଜ ଘରଧି ବାହାରେ କୌଣସି ଅସ୍ଥାୟୀ ପୁଟ୍ ହୋଲ୍ଡ୍ ଖୋଜନ୍ତି । ପରିଶ୍ରମ-ସାପେକ୍ଷ ।

ରୁମ୍‌ରେ ଅର୍ଥହୀନ ଶବ୍ଦଗୁଡ଼ିକର କଳରବ । ଏଥର ଖାଲିଗୁଡ଼ିଏ ଉଚ୍ଛ୍ୱସିତ ସ୍ୱର—ବାପ ଝିଅ ହସୁଛନ୍ତି ଖୁବ୍ ତାନେ । ସବିତା ସାମାନ୍ୟ ଅପ୍ରସ୍ତୁତ ହୋଇ ଗୃହିଁଲେ ।

—ତୋ ମା' ଖାଇଲାବେଳେ, ତାଙ୍କୁ ଦୁନିଆଁ ବିଷୟ ମାଲୁମ୍ ନ ଥାଏ ।

ସମ୍ଭବତଃ ଗିନା ତାଙ୍କୁ କିଛି ପ୍ରଶ୍ନ କରିଥିଲା ।

—ଆଚ୍ଛା, ତମେ କେମିତି ସ୍କୁଲ ଯାଉଥିଲ ବାପା ?

—ଗ୍ଲଲି ଗ୍ଲଲି ।

—ଗ୍ଲଲି ଗ୍ଲଲି ? କେତେ ବାଟ, ତିନି ଗ୍ଲରି ମାଇଲ ହେବ ତ ?

—ବେଶି । ଆମେ କ'ଣ ଆଜକାଲି ତମମାନଙ୍କ ଭଳି ସୁକୁମାର ଥିଲୁ । ଟିକେ ପରିଶ୍ରମକୁ ଡର ! ଘୋର୍‌ରୁ ଉଠି ଅନ୍ଧାର ଥାଉ ଥାଉ ଯିବାକୁ ହୁଏ । ଏକା, ଜଙ୍ଗଲ୍ ରାସ୍ତା । ଶୀତଦିନ ହୋଇଥିଲେ ଫେରୁଫେରୁ ଅନ୍ଧାର ।

—ତମେ ଏକା ଯାଅ ? ଡର ଲାଗେନି ?

—ଲାଗେ, ସେଠୁ କ'ଣ କରେ ଜାଣୁ, ପାଟି କରି ଗୀତ ବୋଲେ । ନହେଲେ ମିଛଟାରେ ଡାକେ ବଡ଼ ପାଟିକରି । ପାହାଡ଼ ପାଖରୁ ମୋ ଆୱାଜ୍ ଫେରିଆସେ, ନିଜ ସ୍ୱର ନିଜେ ଶୁଣିଲେ ମନରେ ଟିକିଏ ଦମ୍ଭ ଆସିଯାଏ, ପୁଣି ଚାଲେ ।

ରାନା ହସୁଥିଲା ।

—ତମକୁ ପରି ସାଙ୍ଗ କେହି ମିଳନ୍ତି ନି ? ଏମିତି ମିଛିମିଛିକା ନିଜ ସ୍ୱର ଶୁଣ ସବୁଦିନେ ?

—ନା, ପରେ ପୁଣି ସାଙ୍ଗ ଜୁଟିଗଲେ ଯେ, ଆଉ ତା'ଛଡ଼ା ବଡ଼ ହୋଇଗଲା ପରେ କ'ଣ ନିଜ ସ୍ୱର ସାହସ ଦିଏ !

ସବିତାଙ୍କୁ ସାମାନ୍ୟ ହସ ଲାଗିଲା ବୋଧେ । ଅଳ୍ପ ଟିକିଏ କୋହ ଉଠିଲା । ସବିତା କଥାର ଖିଅ ହଜେଇବାକୁ ଚେଷ୍ଟାକଲେ । ଖିଅ ରଖି ଲାଭ ନାହିଁ । ରମେଶ ଭାବୁଛି ସେ ବଡ଼ ହୋଇଯାଇଛି । ରମେଶ ବଡ଼ ହୋଇ ଯାଇଛି ? ରାନା କିନ୍ତୁ ଭାବୁଛି ତା' ବାପା ଅଜାଣତରେ ବୁଢ଼ା ହୋଇ ଯାଇଛନ୍ତି ।

ହଠାତ୍ ସବିତାଙ୍କର ଖିଆଲ୍ ହେଲା, ରାନା ପାଚେରୀରେ ଅଲଗା ମଣିଷଟିଏ, ନା, ଆମ୍ପ୍ଲିଫାୟାର୍‌ରେ ସ୍ୱରଟା ଅଲଗା ଶୁଭୁଛି ?

ସବିତାଙ୍କର ସିନା ଖାଲି ବୟସ ବଢ଼ିଲା । ରମେଶ ତ ପ୍ରତିଥର ନୂଆ କୋଣରୁ ନିଜ ସ୍ୱର ଶୁଣିଲେ ଚିହ୍ନି ପାରିବ ନି ।

# ଆଶ୍ୱିନ କାହାଣୀ

ଗାଧୁଆଘର ପାହାଚରୁ ଗୋଡ଼ ଲମ୍ବା ଦେହଟିଏ । ଦୁଆରର ଖରାକୁ ତାଙ୍କ ଓଦା ପାଦରେ ଶୀତଳ କରି ମଣିମୁକ୍ତା ଝଟକୁଥିବା ବାଳକୁ ପଛକୁ ଗୁଣ୍ଠି ଝୁନୁଅପା ପଦେ ପୁରୁଣା ଗୀତର ସୁର୍ ଦୋହରାଉଥିଲେ । କାନ୍ଥ ପାଖେ ପାଖେ ସଜନାଗଛର ବନ୍ଦ ବନ୍ଦ ଖରାଗୁଛଇ ତାଙ୍କ ପାଦଆଡ଼େ ଲହଡ଼ି ଭଳି ଅଧି ପୁଣି ଫେରିଯାଉଥିଲା ।

ପେନ୍ ପଛଟାକୁ ଦାନ୍ତରେ କାମୁଡ଼ି ଅମର କିଛି ଭାବୁ ନଥିଲା । ଓଦା ଲୁଗାଟା ତାର ଉପରେ ଟାଣୁ ଟାଣୁ ଝୁନୁଅପା ମଳ୍ଲୀ ଉପରେ ଚଢ଼ୁଥିଲେ ବୋଧେ । ମୁହଁରେ ନଡ଼ିଦେନିଆ ହାଲ୍କା ବରଫ—ସେଥିରେ ସେ ଆହୁରି ନିଜର ଦେଖାଯାଆନ୍ତି, ପୁରୁଣା ଗୀତର ସୁର୍ ଭଳି । ପୁଅ କାନ୍ଦୁଛି ଭିତର ଘରେ । ମାଳ୍ଲୀର ସଫେଇ – ସେ କାମ କରୁଥିଲା, ଏଣୁ କାନ୍ଦ ଶୁଣିନି । ମାଉସୀ— ଝୁନୁଅପାଙ୍କ ମା'— ସେପେଇ ଘରେ ବ୍ୟସ୍ତଥିବେ ନିଶ୍ଚୟ । ଅମର କାହିଁକି କୁନାର କାନ୍ଦ ଆଗରୁ ଶୁଣିନି ? ଅଥଚ ଝୁନୁଅପା ନିଜେ ତ ଗୁଣୁଗୁଣୁ ଗୀତ ଗାଉଥିଲେ ।

ସତର୍କ ହୋଇ କୁନାକୁ ବିଛଣାରୁ ଉଠାଇଲାବେଳେ ଅମର ଝୁନୁଅପାଙ୍କ ହସ ଶୁଣିଲା । ଓଦାବାଳ ଝାଡ଼ୁ ଝାଡ଼ୁ ସେ ରୁଣୁଝୁଣୁ କାଚଚୁଡ଼ି ଭଳି ହସୁଥିଲେ । ଭାଙ୍ଗି ଯିବରେ ଅମର, କାଚ ଯେ—

ଅମର କୁନାକୁ ନେଇ ବାହାରି ଯାଉ ଯାଉ ଫେରିପଡ଼ି କହିଲା—ଶୀଘ୍ର ଖାଇନିଅ, ଡେରିକଲେ ମୁଁ ଚାଲିଯିବି ଘରକୁ ।

--ଆରେ ବାପ୍‌ରେ ବାପ୍ ! ବାବୁଙ୍କର କ ଦମାକ୍—

ବାହାରେ ପବନ । ଭିତରୁ ଝୁନୁଅପାଙ୍କ ରୁମ୍‌ଝୁମ୍ ହସ । ଗ୍ଲାସ ଜାନାଲାରେ ବର୍ଷାଭିଜା ବଗିଚାରେ ଗୋଲାପ, ଘାସ, ପ୍ରଜାପତି, ଚଢ଼େଇ, ଆକାଶ—

ଦେଖ୍ କୁନା ! ଆକାଶର ଗୋଟାଏପଟ ଘଷି ହୋଇ ଆସୁଥିଲା । ଘୁରି ଅସୁଥିବା କଳା ମେଘକୁ ଅମର କୁନାକୁ ଦେଖାଉଥିଲା ।

—ହେଇ ଚଢ଼େଇ ଦେଖ୍, ଚଢ଼େଇ । ତୁ ଉଡ଼ିବୁ ଚଢ଼େଇ ପରି ? କୁନାକୁ ଦୁଇ ହାତରେ ଟେକି ଆକାଶକୁ ଫିଙ୍ଗିଦେବାର ବାହାନା । କୁନାର ଚିକ୍‌କଣ ଗାଲରେ ଝୁନୁଅପାଙ୍କ ହସର ଭଉଁରୀ ହୁଏ; ସନ୍ଧ୍ୟା ଅନ୍ଧାରର ମଲ୍ଲୀଫୁଲ ପରି । କୁନାକୁ ଜବରଦସ୍ତ ଚୁପି ଧରିଲେ ଝୁନୁଅପାଙ୍କ ଦେହର ବାସ୍ନା ଆସେ ।

ଅମରର ମନେ ପଡ଼େ । ପିଲାଦିନେ ଦୁଇବାହୁ ମୂଳକୁ ଧରି ଝୁନୁଅପା ଚକାଚକା ଭଉଁରୀ ଖେଳାନ୍ତି, ମାଟିରେ ପାଦ ଲାଗେନି, ଶୂନ୍ୟରେ ନୀଳ ସବୁଜ ଫେଣ୍ଟାଫେଣ୍ଟି ଅସରନ୍ତି ସୁଅ । ଚିହ୍ନା ଦୁନିଆଟା ଭିତରେ ପୁଣି ଗୋଟିଏ ନୂଆ ଦୁନିଆ ।

—ଅମର, ଆଜ ମ୍ୟାଚ୍ ପାଇଁ ଟିକେଟ୍ କରିବ ?

ଗୋଟିଏ ପାଦରେ ସାଇକେଲ୍ ଅଟକାଇ ରାସ୍ତାରୁ ଅଜିତ୍ ଡାକୁଚି ।

—ମ୍ୟାଚ୍ ? ନା—ଥାଉ, ତୁ ଯା । ଆଜ ଯିବିନି ।

—କାହିଁକି ?

—କାମ ଅଛି, ବୋଉର ଦେହ ଭଲ ନାହିଁ ।

—ବୋଉର ଦେହ ନା କୁନାକୁ ଖେଳାଇବୁ ?

ଅମରର କାନ ମୂଳକୁ ରକ୍ତ ଉଠିଲା । —ମୋ ଇଚ୍ଛା, ମୁଁ ଯିବିନି ।

କୁନା ହାତ ବଢ଼ାଉଚି ଫୁଲ ଆଡ଼େ । ମୁହଁରେ ଝୁନୁଅପାଙ୍କ ପରି ହସ । ବୋଉର ଦେହ ଭଲ ନାହିଁ । ଏତେବେଳେ ମୁଁ ଯିବି ମ୍ୟାଚ୍ ଦେଖିବାକୁ ! କ'ଣ ଜାଣନ୍ତି ଏମାନେ ? ଘରେ କେତେ କାମ । ବୋଉର ଦେହ କେତେବେଳେ ଭଲ ନ ଥାଏ । ଏମାନେ ହସିଦେଲେ କି ଚିଡ଼ାଇଲେ ମୋର କ'ଣ ଯାଏ ଆସେ ?

—ଅମର, ଆ ତାସ୍ ଖେଳିବା । ଝରକାରୁ ଝୁନୁଅପା ଡାକୁଛନ୍ତି । ଅମର ଓଠ ଶୁଖି ଚୁପ୍ ରହିଲା । ନା ମୁଁ ଯିବିନି; କିନ୍ତୁ ଝୁନୁଅପାଙ୍କ ଓଠରୁ ଶବ୍ଦ ସବୁ ମିଠା ସ୍ୱର ହୋଇ ପବନରେ ମିଶିଯିବାର ସେ ଦେଖିଲା ଓ ପୂର୍ବ ମୁହୂର୍ତ୍ତରେ କ'ଣ ସବୁ ଭାବୁଥିଲା, ଭୁଲିଗଲା । ଝରକା ରେଲିଂ ପାଖରୁ ଝୁନୁଅପା ଦୁଇ ହାତ ବଢ଼ାଇ ଡାକୁଛନ୍ତି—ଆ !

କୁନା ହାତ ବଢ଼ାଇ ସିଧା ଝରକା ଉପରକୁ ଲମ୍ଫ ଦେବାର ଉଦ୍ୟମ କରୁଥିଲା । କୁନା, ଝୁନୁଅପାଙ୍କୁ ଡାକିବା କରେ ? ଝୁନୁଅପା, ଘର ଭିତରେ ଦମ୍ ଅଟ୍‌କିଯାଏ । ଆସନା, ଫର୍ଦ୍ଦା ଆଲୁଅକୁ, ଖୋଲା ପବନକୁ !

—ଜଲ୍‌ଦି ଆ, ଅମର ।

ପର୍ଦ୍ଦାଟା ପଡ଼ିବା ଆଗରୁ ଅମର ଶକ୍ତି ସଞ୍ଚୟ କଲା—କାଲି ଖେଳିବା । ଆଜି ଟିକେ କାମ ଥିଲା ।

ପର୍ଦ୍ଦା ପୁଣି ଉଠିଲା—କି କାମ ଶୁଣେ ? ଏବେ ପରା କହୁଥିଲୁ—

—ଭାଇ କହୁଥିଲେ ଶୀଘ୍ର ଏପ୍ଲାଏ ନ କଲେ ଡେଟ୍ ଚାଲିଯିବ । କଲେଜରୁ ଫର୍ମ ଆଣିବାର ଅଛି ।

—ଫର୍ମ ଆଣିବାର ଅଛି ! ଝୁନୁଅପା ଖତେଇ ହେଲେ । —ଆଜି ରବିବାର ।

ଝୁନୁଅପା ଝଙ୍କା ପର୍ଦ୍ଦାଟାକୁ ପକାଇ ଦେଇ ଚାଲିଗଲେ । ଚିଡ଼ିଲେ ବୋଧେ । ଝୁନୁଅପା କାହିଁକି ଚିଡ଼ୁଛନ୍ତି । ସେ କ'ଣ ଜାଣନ୍ତି ଅଜାଡ଼ୁ, ବାଜୟୁ ଚିଡ଼ାନ୍ତି ମୁଁ କୁନାକୁ ଖେଳାଏଁ ବୋଲି । ସମରେ କହିଲା ମାଇଚିଆ, ସ୍କୁଲ ଛାଡ଼ିବା ପରେ ବି କଲେଜ ଟିଲ୍ଲଙ୍କ ଭଳି ରାସ୍ତାରେ ନ ବୁଲି ସେ ଝୁନୁଅପାଙ୍କ ସଙ୍ଗେ ତାସ୍ ଖେଳେ ଦ'ପହର ସାରା ।

କୁନା ଶୂନ୍ୟକୁ ହାତ ଦେଖାଇ ହସୁଛି । ଅମର ତା ଦେହରେ ମୁହଁ ଲଗାଇ ବେଶି ହସାଇଲା । କୁନାର ଟ୍ରୋଟ ଟ୍ରୋଟ ଡେଉର ହସ ଭିତରେ ସେ କହିଲା—ବାହାରେ ଏତେ ପବନ, ଏତେ ଛୁଇ, ଆଉ ତୋ ମିଠାହସ ଭିତରେ ବି ଏତେ ଦୁଃଖ, ଦମ୍ ବନ୍ଦ ହେବାର ଓଜନ କାହିଁକି ଲାଗେ କହ ତ ?

ତାସ୍‌ମୁଠା ନେଇ ଖଟରେ ବସିଲା ଅମର । ଝୁନୁଅପା ସିଲେଇ କରୁଥିଲେ ଘଡ଼ିକର । —ଝୁନୁଅପା, ଆସ ତାସ୍ ଖେଳିବା ।

—ମୋର ଗୁଡ଼ାଏ ସିଲେଇ ବାକି ଅଛି ।

ଝୁନୁଅପା ରାଗିଛନ୍ତି, ସେ ତାସ୍ ଖେଳିବାକୁ ମନାକଲା ବୋଲି । ତଣ୍ଟି ପାଖେ କୋଉଠି ରୁନ୍ଧ ହେଇଗଲା ଭଳି ଲାଗୁଛି, ହସିବାକୁ ଇଚ୍ଛା ହେଉଛି ନା କାନ୍ଦିବାକୁ ?

ହଠାତ୍ ବିଛଣାରୁ ଉଠିପଡ଼ି ସେ ଘୋଷଣା କଲା—ଠିକ୍ ଅଛି । ମୁଁ ଦି'ଟା ମିଠା ପାନ ନେଇଆସେ, ତମେ ଶୀଘ୍ର ତମ କାମ ସାର ।

କେତେ ଦିନ ପରେ ।

ଟେବୁଲ ଉପରେ ମାଗାଜିନ୍‌ଟାଏ ଖୋଲି ଅମର ବସିଥିଲା । ଭିତର ଘରେ ଝୁନୁଅପା ବାକ୍‌ସ ସଜାଡ଼ୁଥିଲେ । ସୂର୍ଯ୍ୟଭାଇ ଆସିଛନ୍ତି ଝୁନୁଅପାଙ୍କୁ ନେବାକୁ । ଆଜି ସନ୍ଧ୍ୟା ଛ'ଟା ଟ୍ରେନ୍‌ରେ ସେମାନେ ଯିବେ । ଅମର କାହିଁକି ଏଠି ବସିଛି ? ଝୁନୁଅପା ବ୍ୟସ୍ତ ଅଛନ୍ତି । ଘରେ ବୋଉର ଦେହ ଭଲ ନାହିଁ । ଅମର ଲମ୍ବା ନିଃଶ୍ୱାସ ଟାଣିଲା । ଗୁଡ଼ିଏ ଭିତରଟା ଭାରି ଓ ମୁଣ୍ଡଟା ଫମ୍ପା । ବୋଉର ଦେହ ଆଦୌ ଭଲ ନାହିଁ, ଅପରେସନ୍ ହେବାର ଅଛି । ସେ ଝୁନୁଅପାକୁ କହି ଘରକୁ ଚାଲିଯିବ । କହିଦେଇ ଯିବ ସେ ସନ୍ଧ୍ୟାରେ ଦେଖା କରିବାକୁ ସେ ନ ଆସିପାରେ । ଘରେ ତା'ର କାମ ଅଛି । ଝୁନୁଅପା, ମୁଁ ଯାଉଛି । ହଉ ଯା—ଭିତରୁ ଝୁନୁଅପା ଜବାବ ଦେବେ । ବାସ୍ ।

ଝୁନୁଅପାଙ୍କୁ କହିବା ଦରକାର ନାହିଁ, ଚାଲିଗଲେ ଚଳିବ । ଝୁନୁଅପା କାହିଁକି ଝୁନୁଅପା ହେଲେ ? ଝୁନୁଅପା ନ ଥିଲେ ଭଲା କ'ଣ କ୍ଷତି ହୋଇଥାନ୍ତା ? ଝୁନୁଅପା ନଥିଲେ ଦୁନିଆଟା କେମିତି ଦିଶିଥାନ୍ତା ?

—କିରେ ଅମର, ଚୁପ୍‌ଚାପ୍ ବସିଚୁ ସେଠି । ଆ, ବେଡ଼ିଂଟା ବାନ୍ଧି-ଦେବା । ସୂର୍ଯ୍ୟ ଭାଇ ଡାକିଲେ । ଝୁନୁଅପା ଦୁଇହାତ ଲୁଗା କାନିରେ ପୋଛୁ ପୋଛୁ ଆସିଲେ ଓ ସୂର୍ଯ୍ୟ ଭାଇଙ୍କୁ କହିଲେ—ତମେ ଯାଅ, ମିନି ମାଉସୀ ସଙ୍ଗେ ଦେଖାକରି ଆସିବ । ତମେ ଆସି ତା' ସାଙ୍ଗେ ଦେଖାକରିନ ଜାଣିଲେ ସେ ମନ ଖରାପ କରିବ । ମୁଁ ଅମର ସଙ୍ଗେ ବେଡ଼ିଂଟା ବାନ୍ଧିଦେବି ।

ଝୁନୁଅପା ଆଣ୍ଠୁ ହାତ ଲଗେଇ ସାଧ୍ୟମତେ ବେଡ଼୍‌ଂରେ ଘୂପ ଦେଉଥିଲେ । ଅମର ଆଣ୍ଠୁ ମାଡ଼ି ବେଲ୍‌ଟା ଟାଣି ଲଗାଉଥିଲା ।

—ତୋ ରେଜଲଟ୍ ବାହାରିଲେ ଖବର ଦେବୁ, ବୁଝିଲୁ !

ଅମର ଦାନ୍ତ ଚୁପିଦେଲା, ମୁହଁଟା ଗରମ ।

—କ'ଣ ହେଲା କରେ ତୋର ? ମନ ଭଲ ନାହିଁ ?

ଅମର ବେଡ଼୍‌ଂରେ ବେଲ୍‌ଟ ଭିଡ଼ୁଥିଲା ଜୋର୍ ଦେଇ ।

—ଅମର ?

ଅମର ଆଖି ଉଠାଇଲା । ଦାନ୍ତ ଚୁପିବାସତ୍ତ୍ୱେ ଓଠ ଥରସାମ୍ୟ ରଖୁନା ।

—କ'ଣ ହେଲା ?

ଝୁନୁ ଅପାଙ୍କ ମହମହାତ ତା ମୁହଁ ଆଡ଼କୁ ଉଠି ଆସୁଛି । ତଳେ ବସି ବେଡ଼ଂ ଉପରେ ଝୁନୁଅପାଙ୍କ ହାତ ପାପୁଲିରେ ମୁହଁରଖି ଅମର କାନ୍ଦୁଥିଲା । ଝୁନୁଅପା ବମୂଢ଼ ହେଲେ । ଏତେ ବଡ଼ ପିଲାଟାଏ, ଏମିତି କାନ୍ଦୁଛି ? ଅମର ମୁଣ୍ଡରେ ହାତ ବୁଲାଇ ସେ ପଚାରିଲେ– ଅମର ମୋ ସୁନାଭାଇଟା, କହ ତୋର କ'ଣ ହୋଇଛି ?

ତମେ ଏଠୁ ଯାଅନା ଝୁନୁଅପା ! ତମେ ଏଠୁ ଯାଅନା ! ବହୁ କଷ୍ଟରେ ପାପୁଲି ଉପରୁ ଭଙ୍ଗା ଗଳାରେ ଅମର କହିଲା—ବୋଉର ଦେହ ଭଲ ନାହିଁ । ଅପରେସନ୍ ହେବ ।

ପୁଣି କୋହର ଢେଉ । ଝୁନୁ ଅପାଙ୍କ ଆଖି ବି ଛଳଛଳ ହେଲା । ଗ୍ରେଟ ଛୁଅାଙ୍କପରି କାନ୍ଦୁଛି ପିଲାଟା । ପିଲାଦିନେ ଝୁନୁଅପାଙ୍କ ଫ୍ରକ୍‌ରୁ ସେ ଝୁଲିପଡ଼େ ଦୋଳି ଖେଳାଅ ବୋଲି । ଅମରର ମୁଣ୍ଡ ବେକରେ ହାତ ବୁଲାଇ ସେ କହିଲେ—ବୋଉ ଦେହ ଭଲ ହେଇଯିବନି ? ଏମିତି ବ୍ୟସ୍ତ ହୁଅନ୍ତି ? ଛି—

କ'ଣ ହେଲା ? କବାଟ ପାଖରୁ ସୂର୍ଯ୍ୟ ବାବୁଙ୍କର ଆଶ୍ଚର୍ଯ୍ୟ ସ୍ୱର ।

—ଯାଦ ମାଉସୀଙ୍କ ଦେହ ଭଲନାହିଁ । ଭଲ ହେଇଯିବେ ମ, ଗୋପାଳବାବୁ କହୁଥିଲେ ଯେମିତି କଷ୍ଟ ନୁହେଁ । ସେଇଥିପାଇଁ ଏ ଟୋକା ବ୍ୟସ୍ତ ।

—ଆରେ, ଅମର, ଏତେ ବଡ଼ପିଲା ହୋଇ ଏମିତି ବ୍ୟସ୍ତ ହୁଅନ୍ତ ଏତିକ କଥାରେ ?

ସାର୍ଟ ବୋତାମ ଦେଉ ଦେଉ ସୂର୍ଯ୍ୟବାବୁ ବାହାରିଗଲେ ଦାଣ୍ଡଦୁଆର ଦେଇ । ଅମର ହଠାତ୍ ଅନ୍ୟମନସ୍କ ହେଲା ଓ ତା'ର କୋହ ଅଟକିଗଲା । ବୋଉର ରୁଗ୍ଣ ମୁହଁ ମନେ ପକେଇବାକୁ ଚେଷ୍ଟାକଲା । ବୋଉର ଦେହ ଭଲ ନାହିଁ—ଆଦୌ ଭଲ ନାହିଁ । ବୋଉର ଦେହ ଭଲ ନାହିଁ—ବୋଉ—ବୋଉ !

ଅମର ଲୁହଭିଜା ମୁହଁ ଟେକିଲା । ସାମ୍ନାରେ ଝିଲ୍ ମିଲ୍ ଝୁନୁଅପା । ହାଲୁକା ମେଘ ଖଣ୍ଡେ । ଗୋରା ଲମ୍ୱା ହାତ, ସୁନାଚୂଡ଼ି, ନରମ ପାପୁଲି । ବେଡ଼ିଂ ।

ଆରେ ଆରେ ଅମର—ପୁଣି ? ଛି—

ଝୁନୁଅପାଙ୍କ ହାତତଳେ ଅମରର ହାତ, ପାପୁଲିରେ ଅମରର ଗରମ କୋହ ଓ ଆଙ୍ଗୁଠିରେ ଅମରର ଚିବୁକ ଏତେ ରୁକ୍ଷ ?

ନିଜର ଅସ୍ୱସ୍ତି ସତ୍ତ୍ୱେ ଝୁନୁଅପା ବିବ୍ରତ ହେଲେ । ମୁହୂର୍ତ୍ତିକ ପାଇଁ ସେ ନିଜ ହାତଟା ଟାଣି ଆଣିବାର ଚିନ୍ତା କଲାପରେ, ହାତଟାର ଅବସ୍ଥିତି ସମ୍ପର୍କରେ ଅଚେତନ ରହିବାକୁ ସେ ମନସ୍ଥ କଲେ ।

ସାମ୍ନା କାନ୍ଥରେ ଚୂନ ଖସିପଡ଼ିଚି ଗୋଟାଏ ଜାଗାରେ, ଭିତରୁ ଇଟା ସବୁ ଦାନ୍ତ ଦେଖାଉଚନ୍ତି । ଝୁନୁଅପା ନିଜେ ପସନ୍ଦ କରିଥିବା ନୂଆ ପର୍ଦ୍ଦାଆଡ଼େ ଗୃହିଁଲେ ।

ଝୁନୁଅପା ସୁସ୍ଥ, ସୁନ୍ଦର । ତାଙ୍କ ଦୁନିଆଁ ସୁସ୍ଥ, ସୁନ୍ଦର । ଅମରର ବୋଉର ଦେହ ଭଲ ନାହିଁ ।

ମନ୍ଦିର କି ପାର୍କ ଯିବା ରାସ୍ତା କଡ଼ରେ ଭିକାରୀଙ୍କ ଭିକାରି ଥିଲେ, ତାଙ୍କ ଦୃଷ୍ଟି ସେଆଡ଼େ ଯାଏ ନାହିଁ ମୋଟେ ।

# ସମୟରୁ ଭାଗେ

ତରବରି ଆଈ ବଖାଣୁଥାଏ । ତା' ଗେଲବସର ଝିଅବେଳର କଥା, ଭୂଆସୁଣୀ ବେଳର ଦୁଃଖ କଥା, ବୈରାଗୀ ସ୍ୱାମୀଙ୍କ ଅଲୌକିକ ଦିବ୍ୟଜୀବନ କଥା, ନାନା କଥା । ଖରାଦିନ ରାତି, ମଧୁ ପିଉସାଙ୍କ ନୂଆ କୋଠାଘର ଛାତ ଉପରେ ବାହାଘର କୁଣିଆଙ୍କ ଭିତରୁ ଯିଏ ଆଗତୁରା ପାରିଲେ ଜାଗା ଖଣ୍ଡିଏ ଲେଖାଁ ଦେଖି ବିଛଣା ପାରିଦେଇଥାନ୍ତି । ବୁଢ଼ିଆଡ଼େ ନିପଟ ମଫସଲର ନିର୍ଭେଜାଲ୍ ଚୋରା ଜହ୍ନରାତି ।

ଆଈକୁ ଘେରି ତା'ର ସବୁବେଳର ପରିବେଶ—ନାତିନାତୁଣୀଙ୍କ ମେଳ । ତାଙ୍କ ଭିତରେ ମୁଁ ବି । ସେ କୌଣସି ଲେଖା ଯୋଖାରେ ବି ବୋଧହୁଏ ମୋର ଆଈ ସମ୍ପର୍କରେ ଆସିବ ନାହିଁ । ତାକୁ ଆଗରୁ ମାତ୍ର କେତେଥର ମୁଁ ଦେଖିଛି, ଏମିତି ବିବାହ, ବ୍ରତ ଘଡ଼ିମାନଙ୍କରେ ଅଜସ୍ର ନାତିନାତୁଣୀଙ୍କ ମେଳରେ । ପ୍ରାୟ ନାତୁଣୀଙ୍କ ସଂଖ୍ୟା ବେଶି—ଅତି ସାନ ଝିଅଙ୍କଠୁ ଭୂଆସୁଣୀ ଝିଅ ବୋହୂଙ୍କ ଯାଏ, ପୁଅପିଲା ପ୍ରାୟ ଆଠ ଦଶ ବର୍ଷ ବୟସରୁ ଅଧିକ ନ ଥାନ୍ତି ସେ ମେଳରେ । ସମସ୍ତେ ଡାକନ୍ତି ତରବରି ଆଈ—ସମ୍ଭବତଃ ତା'ର ଅନର୍ଗଳ ଗପିବାରେ ଅଦ୍ଭୁତ ଦକ୍ଷତା ଯୋଗୁ । ଆଜି ମଧ୍ୟ ତା'ର ଚାଲିଚଳଣ ଓ ସ୍ୱଭାବରେ ଗୋଟିଏ ତରବରିଆ ଭାବ ସୁସ୍ପଷ୍ଟ ଥାଏ—ତା ବୟସ ସତ୍ତ୍ୱେ ।

ଜଣେ ଜଣେ ଢୁଳେଇଲେଣି । ଆଈର କାହାଣୀରେ କିନ୍ତୁ ପୂର୍ଣ୍ଣଚ୍ଛେଦ ପଡ଼ିବାର ନୁହେଁ—ମାର୍ଗଶିରର ଗୁରୁବାର ଦିନ ବଡ଼ିଭୋର ଅନ୍ଧାରରୁ ସେ ଆଉ ତା ଶାଶୂ ପୋଖରୀରୁ ଗାଧୋଇ ଫେରୁଥାନ୍ତି । ଅଳ୍ପ ଦୂରରେ ଦି'ଚାରି ହାତ ଛାଡ଼ି କୁହୁଡ଼ିଆ ଅନ୍ଧାରରେ ଧଳାଛାଇଟିଏ ଚାଲିଥାଏ ତାଙ୍କ ସଙ୍ଗେ ସଙ୍ଗେ । ଶାଶୁଙ୍କ

ଆଖିକୁ ସେତେ ଭଲ ଦିଶୁନାହିଁ, ସେ କହିଲେ ଦେଖିଲୁ ବୋଧେ, ସେଇଟା ଗାଈଟିଏ ନା ମଣିଷଟିଏ । ମୁଁ ଭାବିଲି ଗାଈ ତ ନୁହେଁ, ଏ ଧୋବ ଧାଉଳ ମଣିଷ ବି ନୁହେଁ । ସେଦିନ ମାଣବସା ଗୁରୁବାର, ମା' ଲକ୍ଷ୍ମୀଙ୍କୁ ସୁମରି କହିଲି—କିଏ ତୁ ଦେଖା ନା ମାନିଆ ଫିଟାଇ କହ ।

ହଠାତ୍ ମାରିବିତା ତଥା ରସଭଙ୍ଗ କରି ଆମ କଲେଜ ପଢ଼ୁଆ ନାଲି କହିଲା—ହଁ, ସେତେବେଳକୁ କଳିଯୁଗ ପୂରା ଆସି ନ ଥିବ ତ । ଦେବୀମାନେ ବି ବେଳେ ବେଳେ ଏମିତି ଅବତରି ଧାଇଁରେ ବୁଲୁଥିବେ, ନୁହେଁ ? ଆଜିକାଲି ଦେଖିଲେ ସିଧା ଜାଣିବ ଭୂତ ।

ହାସରୋଳ ଭିତରେ ଆଉ ଜଣେ କିଏ ଆଣ୍ଠପଟିଆ ହୋଇ କହିଲା—ହଁ ସତ କଣ ମ, ଆଈ ଯେଉଁ ଯୁଗର ମଣିଷ, ସେତେବେଳର କିଏ ଅଛି ଯେ କହିପାରିବ, କଣ ସବୁ ସତରେ ଘଟୁଥିଲା ସେତେବେଳେ ?

କେତେ ହେବ ତୋ ବୟସ କହିଲୁ ଆଈ ?

ତା' କାହାଣୀର ଗମ୍ଭୀର ବିଷୟବସ୍ତୁ ହଠାତ୍ ହାଲୁକା ହୋଇ ଯାଇଥିବା ଯୋଗୁଁ ଅନେକ ଟିକେ ଗଡ଼ିଯାଇ ଶୋଇବାର ବନ୍ଦୋବସ୍ତ ଆରମ୍ଭ କରି ଦେଇଥିଲେ, ପ୍ରଶ୍ନରେ ପୁଣିଥରେ ସଗର୍ବ ଉତ୍‌ଫୁଲ୍ଲ ହସ ହସି କହିଲା—କେଜାଣି କେତେ ହେବ ଲୋ ମା, ହୋଇଥିବଣି ପାଞ୍ଚକୋଡ଼ି କି ଛଅକୋଡ଼ି କି କେତେ ।

—ଜମା ? ନାଇଁ ମ ଆଈ, କାଲି ପରା କହୁଥିଲୁ ସାତକୋଡ଼ି ବୋଲି ?

ଆଈ ଉତ୍ତର ଦେଲା—କେଜାଣି ହୋଇଥିବ ଲୋ ମା, ଆଜିକାଲି ମୋର ଆଉ କିଛି ମନେ ରହୁନି । ତେବେ ଏଇ ଯେଉଁମାନେ ଏବେ ବୁଢ଼ାବୁଢ଼ୀ ହୋଇ ନଇଁଗଲେଣି, ମୋ ବାହାଘରବେଳକୁ ସେମାନେ ଲଙ୍ଗଳା ହୋଇ ଦାଣ୍ଡରେ ଖେଳୁଥିଲେ ।

ନାଲି ପୁଣି କହିଲା—ଭଲକରି ମନେ ପକେଇଲୁ, ପ୍ରାୟ ଶହେ ବର୍ଷ ତଳେ ମଙ୍ଗଳଗ୍ରହରୁ ଦି'ଟା ଉଡ଼ନ୍ତା ଥାଳିଆ ଆସିଥିଲା । ସେଇଥିରୁ ଗୋଟିକରେ କାଳେ ତୁ—

ହେଁ ହାଲା ! କଏ ଜଣେ ତାକୁ ଚୁପ୍ କରେଇଲା ।

ପୁଣି ଜଣେ କଏ ନଚ୍ଛୋଡ଼ବନ୍ଧା ସେଇ ବୟସ କଥାଟାକୁ ଫେଣେଇ ଗୁଲାଲ୍—ଆଈ ଏବେ ସଧବା, ଜାଣିଚ ନା ମିନନାଣ୍ଟ ? ଅଜା ତ ତୋଠୁ ବୟସରେ ବାପ ଭଳି ବଡ଼ ଥିଲେ, ନା ଆଈ ? ତାଙ୍କୁ ଏବେଲେ ଆଠକୋଡ଼ି ବୟସ ହେବଣି ନୁହେଁ ?

ଆଦୌ ଅପ୍ରତିଭ ନ ହୋଇ ଆଈ ମୁରୁକେଇ ହସି କହିଲା—ବିଧିର ଇଚ୍ଛା ମୁଁ ମଲାଯାକେ ସଧବା ରହିବି, ତମେ ସବୁ ଏତେ ଅଧୈର୍ଯ୍ୟ କରୁଚ କାହିଁକି ?

ଆଈ ସାତବର୍ଷ ବୟସରେ ବିଭା ହୋଇଥିଲା, ଏଗାର ବର୍ଷରେ ଶାଶୁ-ଘରକୁ ଆସିଲା । ସେତେବେଳକୁ ତୋଳବର ପଢ଼ ତା'ର ଗୁରୁଟି ପିଲାର ବାପ । ଆଈର ଦୁଇ ଝିଅ ହେଇଥିଲେ, ତା' ସ୍ୱାମୀଙ୍କର କେଉଁ ଦଳେ ଗାଁ ଲୋକଙ୍କ ସଙ୍ଗେ ତୀର୍ଥରେ ଯିବାକୁ ମନେହେଲା । ସେଇ ଯେଉଁ ଗଲେ ଆଉ ଫେରନାହାନ୍ତି, ବୃନ୍ଦାବନ କି ଋଷିକେଶ କେଉଁଠି ରହିଗଲେ କାଳେ । ଆଜି ଯାକେ ତାଙ୍କ ସଠିକ୍ ଖବର କେହି କହିପାରନ୍ତି ନାହିଁ । ତେବେ ଆଈର ଅଟଳ ବିଶ୍ୱାସ ତା ଜାତକରେ ବିଧବା ଯୋଗ ନାହିଁ । ମଝି ମଝିରେ ତାକୁ ଅନେକ ଜ୍ୟୋତିଷ, ବାବାଜୀ କହନ୍ତି, ତା ସ୍ୱାମୀ ଅମୁକ ଜାଗାରେ ଅଛନ୍ତି, ଅମୁକ ସନ୍ନ୍ୟାସୀଙ୍କ ଶିଷ୍ୟ ହେଇ । ଅନେକ ସମୟରେ ନିଜେ ତା' ସ୍ୱାମୀ ଆଈକୁ ସ୍ୱପ୍ନ କିମ୍ବା ନଖ ଦର୍ପଣରେ ଦେଖାଦଅନ୍ତି । ଜଣେ ବଡ଼ ସନ୍ନ୍ୟାସୀ ଅନେକ ଶିଷ୍ୟଙ୍କ ଦ୍ୱାରା ପରିବେଷ୍ଟିତ ହୋଇଅଛନ୍ତି । ହିମାଳୟରେ ଯାଇ ତପସ୍ୟା କଲେ ବୟସ ବା କି ଛାର କଥା, ଯମ ଦେବତା ତ ଡରରେ ପାଖ ମାଡ଼ିବେ ନାହିଁ । ଆଈର ସାବତ ପୁଅମାନେ, ଦୁଇ ଭଉଣୀଙ୍କ ବିବାହ କାମ ତୁଲାଇଲେ । ଝିଅ ଦୁହେଁ ଆଉ ପ୍ରାୟ ବାପଘର ମାଡ଼ନ୍ତି ନାହିଁ । ଆଈ ତା'ର ନିଜ ବଖରାଟିରେ ରହେ, ବୋହୂମାନେ ପାଳିକରି ଖାଇବାକୁ ଦଅନ୍ତି । ନାତି ଅଣନାତିଙ୍କୁ ଖେଳାଏ ।

ଆଜି ସକାଳେ ଆଈର ନାତି ବୋହୂଠାରୁ ଏସବୁ ଜୀବନୀ ସଂଗ୍ରହ କରୁଥିଲି, ହଠାତ୍ ଆଈ ହାତରେ ପିତଳ ଦନାଟିଏ ଧରି ଖଦାଶାଳଆଡ଼ୁ ବାହାରି ଆସିଲା । ନାତିବୋହୂ ତରତର କରି ପୁଅର ଖାଇବା ଥାଳି ଉପରେ କାନି

ଘୋଡ଼େଇ ଦେଲେ, ମୋ କାନରେ ଭୁନଭୁନ କରି କହିଲେ—ବୁଢ଼ୀର ଦୃଷ୍ଟି ଭାରି ଖରାପ । ଆଈ ମୋଠୁ ଖଣ୍ଡେ ଦୂରରେ ଜାକିଜୁକି ହୋଇ ବସି ସାବଧାନରେ ଗୋଲପଜାମୁ ଦନାଟି ତଳେ ରଖୁରଖୁ କହିଲା—ଖନ୍ଦାଶାଳ ଆଡ଼େ ଯାଇଥିଲି ଦେଖିବାକୁ । ଆମ ହରିଆ ଯେମିତି ମୋତେ ଦେଖିଚି, ହାତରେ ଏତକ ଧରେଇ ଦେଇ କହିଲା, ଆଈ ତୁ ତ ଆଉ ପିଠା କ ମିଠେଇ ଖାଇପାରିବୁ ନାହିଁ, ଏଗୁଡ଼କ ଗୁଲୁଗୁଲିଆ ହୋଇଚି, ନେ ଖାଇଦେ ।

ତା ଅଣନାତି ଆନନ୍ଦ ଚହିଁକି ଉଠିଲା—ହିଁ, ହରିଆ ଦେଲା ନା ନିଜେ ଉଠେଇ ଆଣିଚୁ କରେଇରୁ ? ଶୁଣିଲୁ ପଚାରିବା ହରିଆନନାଙ୍କୁ ?

ତା ମା'ଠୁ ଧମକ ପାଇ ଆନନ୍ଦ ଅବଶ୍ୟ ଚୁପ୍‌ହେଲା, ତା'ର ଲୋଭିଲା ଆଖି କିନ୍ତୁ ଚରି ଯାଉଥାଏ ଦନାର ଗୋଲ ଗୋଲ ଖଇରିଆ ମିଠାଗୁଡ଼ିକ ଉପରେ । ବୁଢ଼ୀ କୁଆଡ଼କୁ ନ ଚାହିଁ ମନଧ୍ୟାନ ଦେଇ ପାକୁଳଉଥାଏ ।

ରାତିରେ ଆଈ କେତେବେଳଯାଏ ଗପିଲା କେଜାଣି, ମୁଁ ମୋ ବିଛଣାରେ ଥାଇ ଶୁଣୁ ଶୁଣୁ କେତେବେଳେ ଶୋଇପଡ଼ିଥିଲି । ନିଦ ଭାଙ୍ଗିଲା ଗୋଟାଏ ଘାଘଡ଼ା ଗଳାର ନିରନ୍ତର ନାକୁଆ ସ୍ୱରରେ । ମଣିଷ ସ୍ୱର ବୋଲି ବାରିଲା ପରେ ହଠାତ୍ ଗୁଜୁଁକନି ଲାଗିଲା କିଏ ବାହୁନୁଚି କି । ଦେଖେ ତ ଆଈ ଗୀତ ବୋଲୁଚି । ଅଧରାତି, ଜହ୍ନ ଗୋଟାଏ ପଟକୁ ଢଳିଗଲାଣି । କାନ୍ଥକୁ ଆଉଜି ବିଛଣାରେ ଗୋଡ଼ ଲମ୍ବାଇ ବୁଢ଼ୀ ସ୍ୱର ମେଲିଚି ମଗ୍ନ ଭାବେ ।

ଚିଡ଼୍ ଚିଡ଼୍ ହୋଇ ଅଧାନିଦରେ ଜଣକେତେ କଡ଼ ମୋଡ଼ିଲେ, ଆପତ୍ତି ଶୁଭିଲା—ହେ ଆଈ, ଶୁଅ ମ, ପିଲାମାନେ ଉଠି ପଡ଼ିବେ ।

—ଉଃ, ଦିନସାରା ଧୋ ଧା ପରେ ଟିକେ ଶାନ୍ତିରେ ଶୋଇଲା ବେଳକୁ—

ନିଜ ନିଦୁଆ ଗଳାରେ କହିଲି—ଆଈ ଶୋଇପଡ଼, କାଲିକି ଗୋଟେ ଭଲ ଆଧୁନିକ ଶିଖାଇ ଦେବି, ବୋଲିବୁ ।

ଆଈ କିନ୍ତୁ ଶୂନ୍ୟକୁ ଅନେଇ କେଉଁ ଜଣାଣଟିଏ ଲମ୍ବେଇଥାଏ ତା'ର ଘାଘଡ଼ା ସ୍ୱରରେ । କୌଣସି ଆଡ଼କୁ ତା'ର ନିଘା ନାହିଁ । ତା' ଚାରିପାଖେ ବିଛୁଡ଼ି ହୋଇ ଶୋଇଚନ୍ତି ତା ବୋହୂ, ନାତିବୋହୂ, ପଣନାତି, ନାତୁଣୀମାନେ ।

ସେଇଠି କିନ୍ତୁ ବସି ସେ ମନେହେଉଛି ଏକୁଟିଆ ଅଲଗା ଆଉ ଗୋଟିଏ ଦୁନିଆଁରେ ବସିଛି। ସତେ ଅବା କାଲି କି ବୁଲୁ ଥିବା କଳ୍ପନାର ସେ ଦ୍ୱାପର ଯୁଗରେ ମଣିଷଟିଏ କମ୍ବା ଆଉ କେଉଁ ଉପଗ୍ରହରୁ ଖସି ଆସିଛି। ଶୋଇବା ପୂର୍ବରୁ ସେ ତା'ର ଗୋଟି ଗୋଟି ହୋଇ ଢୁଳେଇ ଶୋଇ ପଡ଼ୁଥିବା ନାତି ନାତୁଣୀଙ୍କୁ ଦେଖେଇ କହୁଥିଲା—ଏଇମାନଙ୍କ ମାୟା ଡୋର ବୁଝିଲ, କାଟି ପାରୁନାହିଁ ଏଯାକେ। ଏବେ କିନ୍ତୁ ସେମାନଙ୍କ ପ୍ରତି ତା'ର ମୋଟେ ଦୃଷ୍ଟି ନାହିଁ। ସତେ ବା କିବଡ଼ ଚୁମ୍ବକୀୟ କ୍ଷେତ୍ରଟିଏ ଭିତରେ ଗୃହଆଡ଼ୁ ଟାଣିହୋଇ ଶୂନ୍ୟରେ ଝୁଲା ରହିଛି ସେ, କାହା ସଙ୍ଗେ କିଛି ଲାଗିନାହିଁ, କାହାକୁ ଛୁଉଁନାହିଁ। ଗୃହଆଡ଼େ ବନ୍ଧାହୋଇ ବି ସେ କାହାରି ନୁହେଁ କି କେହି ତା'ର ନୁହନ୍ତି।

ଭାବିଲି ତା ନାତି ନାତୁଣୀଙ୍କ ମେଳରେ ଥିଲାବେଳେ ଆମ ଯୁଗ ଓ ଦୁନିଆରୁ ଏତେଗୁଡ଼ିଏ ଲୋକ ହାଉପାଉ ହେଉଥାଉ ସେ ତା ସମୟର ଏକୁଟିଆ ସାକ୍ଷୀଟିକୁ କେହି ବିଶ୍ୱାସ କରୁନାହିଁ, ସମ୍ପର୍କ ବି ରଖୁନାହିଁ। ଏମିତି ରାତି ଅଧରେ ତା ଦେବଦେବୀଙ୍କୁ ସ୍ମୃତି କରି ତା ସ୍ୱପ୍ନ ଓ ନଖ ଦର୍ପଣର ଚରିତ୍ର-ମାନଙ୍କୁ ନେଇ ସେ ଅବା ବଞ୍ଚୁଥିବ। ନ ହେଲେ ରହନ୍ତା କେମିତି ଭଲା ଏତେ ଅପରିଚିତ ନୂଆ ଲୋକଙ୍କ ଭିତରେ ଦିନଦିନ ଧରି ? ତାକୁ ଘେରି ରହିଥିବା ଭିଡ଼ମାନଙ୍କ ଆଖିରେ ଅବିଶ୍ୱାସ ଓ କୌତୁକ ବ୍ୟତୀତ ଆଉ କିଛି ନ ଥାଏ, ତା' ତ ତାର ପାଞ୍ଚକୋଡ଼ି ବୟସର ଅଭିଜ୍ଞତା ଭଲକରି ବୁଝୁଥିବ। ତେଣୁ ତା' ମନ ଭିତରୁ ମୁହଁ ବାଟେ ଦେଇ କାହାଣୀମାନ ଝରିଲାବେଳେ ସତ ସଙ୍ଗେ କେତେ କଳ୍ପନା ମିଶେ, ବର୍ତ୍ତମାନ ପାଇଁ ତାର ଈର୍ଷା ଓ ଅବଜ୍ଞା ପୁଣି ତା ସଙ୍ଗେ କେତେ ଅନୁପାତରେ ଫେଣ୍ଟି ହୋଇଯାଏ, ସେ କଥା କିଏ କହିବ !

ବୁଢ଼ୀର ଗୀତ ଥମି ଯାଇଥିଲା ଓ ସେ ବସି ବସି ଢୁଳଉଥିଲା। ଏତେ କଷ୍ଟ କରି ବସି ବସି ଢୁଳଉଛି, ଶୋଇପଡ଼ୁନାହିଁ କାହିଁକି ? କିଏ ଦେଖୁଛି ସେ ଚେଇଁଛି ଏଡ଼େ କଷ୍ଟରେ; କିଏ ଶୁଣୁଛି ଭଲ ତା ଗୀତ, କେଉଁ ଦେବୀ ନା ମାନସୀ ? କେଉଁ ସନ୍ତୋଷ ତାକୁ ମିଳୁଛି ସମସ୍ତଙ୍କ ଅବହେଳାରେ ଏତେ କଷ୍ଟ ପାଇ ଚେଷ୍ଟା କରି ଚେଇଁ ରହିବାରେ ?

ପରଦିନ ସକାଳେ ବୋହୂ ଆସିଲା। ବରଯାତ୍ରୀ ବିନା ନିସ୍ତେଜ ହୋଇ ପଡ଼ିଥିବା ବାହାଘର ସମାଗମ ନୂଆ ଉତ୍ସାହ ଉଦ୍ଦୀପନାରେ ଫାଟି ପଡ଼ିଲା।

ବୋହୂ ଯେତେବେଳେ ଘରେ ପଶିଲା, ଚାରିଆଡ଼େ ଉତ୍ସୁକ ହସକୁରି ଝଡ଼ ବର୍ଷଣଟି ଉପରେ ମାଡ଼ ପଡ଼ୁଥାଏ । ଜଣେ ବୟସ୍କା ନିର୍ଦ୍ଦେଶ ଦେଲେ—ସେଇଟି ତରବରି ଆଈ, ଯା ତାଙ୍କ ପାଦତଳେ ପଡ଼ । ସବୁଠୁ ବୁଢ଼ୀଲୋକ, କଲ୍ୟାଣ ପାଇଥା । ଆଜି ଜଣଙ୍କ ସ୍ୱର—ମୁଣ୍ଡିଆ ମାରିଥାଅ ଭଉଜ । ଆଈ ଏ ଯାକେ ସଧବା । ତମେ ବି ରହିବ ଛଅକୋଡ଼ି ବୟସ ଯାକେ ।

ଟାଙ୍କିଡ଼ୁଙ୍କି ହେଇ ବୋହୂ ଭୂଇଁରେ ମୁଣ୍ଡ ଲଗାଇ ପ୍ରଣାମ କଲା । ଆଈଙ୍କ ପାକୁଆ ପାଟି ଲୋମ୍ବକୋମ୍ବ ମୁହଁ ପାରିରୁ ଉଚ୍ଛୁଳି ଆସୁଚି ହସ । ମଳିଚିଆ ଆଖି ପାଣି ପାଣି ଦିଶୁଚି ।

—ଅହ୍ୟ ସୁଲକ୍ଷଣୀ ହେଇଥା ମାଆ, ଠାକୁରେ କୋଟି ପରମାୟୁ ଦିଅନ୍ତୁ, ଅଣନାତି, ପଣନାତି ଦେଖ୍, ପାଚିଲା ବୁଢ଼ୀ ଡୋକରି ହୁଅ ।

—ଆଈ ତୋ ପରି, ନୁହେଁ ?

କେତୋଟି ଅପ୍ରସ୍ତୁତ ହସ ଯେମିତି ଆଟେଦୀ ଆଈ କାନରେ ପଡ଼ନାହିଁ । ସ୍ନେହ ସନ୍ତୋଷ ଉଚ୍ଛୁଳି ପଡ଼ୁଥିବା ଗଳାରେ କହିଲା—ହଁ ଲୋ ମା, ମୋ’ରି ପରି ବୁଢ଼ୀ ହ ।

ଦେଖିଲା ଆଈଙ୍କ ମଳିଲଣ ଆଖିରେ ଦୀର୍ଘ ଜୀବନ ଜୀଇଁଥିବାର ସନ୍ତୋଷ । ସେ ଫୁଆରି ତଳେ ବାବାଜୀ ପରି—ଯାବତ ପୁଅଜନିତ ଦୁଃଖ କଷ୍ଟର ଚିହ୍ନ ନାହିଁ । ଅଚିହ୍ନା ନୂଆ ଦୁନିଆଁର ଅବୁଝାମଣାର ସବୁ କ୍ଲେଶ ବୁଡ଼ିଯାଇଚି । ଆଶୀର୍ବାଦ ସାରି ସେଇ ଲୋମ୍ବ ଚମ ଓହଳି ପଡ଼ିଥିବା ଭ୍ରୂଲତା ତଳୁ ଆଈ କନ୍ଲୁ ଯେତେବେଳେ ତା ଚାରିପାଖ ସମସ୍ତଙ୍କୁ ଅନେଇ ହସିଲା, ସେ ଦୃଷ୍ଟିରେ କେବଳ ନିରୋଳା ସନ୍ତୋଷ ନୁହେଁ, ଚିହ୍ନା ପଡ଼ୁଥିଲା ଅବଜ୍ଞା ଓ ଚ୍ୟାଲେଞ୍ଜ୍ । ଦୁନିଆଁରେ ପାଦଦେଲା ପରେ ବଞ୍ଚି ରହିବାକୁ ଧରାପରା ଅଣନିଃଶ୍ୱାସୀ ଦୌଡ଼ ଭିତରେ ସେ ସବୁଠୁଁ ଦୂର ଦୌଡ଼ିପାରିଚି, ବାକି ତମେମାନେ ସବୁ ନୂଆ ଦୌଡ଼ାଳୀ, ନୂଆ ଗୋଡ଼ରେ ଜୋର୍ ଅଛି ବୋଲି ହସୁଚ, ଉଚ୍ଛୁଳୁଚ । ଦେଖିବାନି କିଏ କେତେଦୂର ଧାଇଁବ !

ମୁଁ ଦୂରରୁ ବାରିଲି । ନିର୍ଲିପ୍ତ ଢାଳେଇଥିବା ବସ୍ତୁତ ସମୟରୁ କାଣିଗୃଏ କାଣିଗୃଏ କରି ଶୋଷି ତରବସ୍ତି ଆଣି ନିଜ ଜୀବନ ପରିସର ଭିତରକୁ ଜାକି ନେଉଚ, ମହୁ ଶୋଷିଲି ପରି । ମୋ ଯୁଗର ଅନ୍ୟମାନେ ପାଦବଢ଼େଇ ପାରି ନଥିବା ଏଇ ନିଷିଦ୍ଧ ଦୂର ମୁହୂର୍ତ୍ତମାନଙ୍କୁ ନିଜର କରି ପାରିବାରେ ଯେଉଁ ଆନନ୍ଦ, ତମେ ପିଲିମାନେ କଣ ବୁଝିବ ! ତମେ ତ ଏବେ ଭାବୁଥିବ ଅନନ୍ତ ସମୟ ତମ ପାଦତଳେ ଲୋଟୁଚି ।

# ଚିହ୍ନା ପବନ

ନମିତା କବାଟ ଖୋଲି ଦେଖିଲା ସାମ୍ନାରେ—ରଣଜିତ୍ । ନିଦରୁ ଉଠିଥିବା ଅଳସଭାବଟା ହଠାତ୍ କଟିଗଲା; ହାଇଟା ବି ରହିଗଲା ଅଧାରୁ ।

—କ'ଣ ଚିହ୍ନି ପାରୁନ ?

—ପାରୁଚି ।···ରଣଜିତ୍—?

ରଣଜିତ୍ ହସିଲା । ଚିହ୍ନା ହସ—"କ'ଣ ଏମିତି ବାହାରେ ଠିଆକରି ରଖିଥିବ ?"

—ଆରେ ଆସ ! ଭିତରକୁ ଆସ !

ନିଜେ ପଛେଇ ଯାଉ ଯାଉ ନିଜ ଡ୍ରଇଂ ରୁମ୍‌ଟାକୁ କେଣେଇ ଥରେ ଦେଖିନେଲା ନମିତା । କ'ଣ କହିବ ଭାବୁଥିଲା, ଏତେଦିନ ପରେ ଏମିତି ହଠାତ୍— କ'ଣ କୁହାଯାଏ ?

—ବସ । ଏତେଦିନ ପରେ—

—ଚିହ୍ନି ପାରିଲ ନି ପ୍ରଥମେ ନା ?

ନା' ତ । ମାନେ—ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲି । ଏମିତି ହଠାତ୍—

ରଣଜିତ୍ ତାକୁ ବାକ୍ୟ ପୂରା କରିବାକୁ ସମୟ ଦେବାସତ୍ତ୍ୱେ ନମିତା ଶେଷ କେମିତି କରିବ ଠିକ୍ କରି ନ ପାରି ସାମାନ୍ୟ ଅପ୍ରସ୍ତୁତ ହୋଇ ହସିଲା ।

—କନ୍ଥି କାମରେ ନୁହେଁ, ଏମିତି ଆସିଗଲି । ଆଶ୍ଚର୍ଯ୍ୟ ହେଉଛ, ନୁହେଁ ? ନମିତାର ଆପତ୍ତି ବାକ୍ୟରେ ରୂପ ନେବା ଆଗରୁ ସେ କହି ଗ୍ଲାଲା—ଆଜ ଅଫିସ୍‌ରୁ ଟିକେ ଚଞ୍ଚଳ ଫେରିଲି । ତମର ଏଇ ଘରଟା ବୋଲି ଜାଣିବାପରେ ଆଜ ହଠାତ୍ କେମିତି ଇଚ୍ଛା ହେଲା—ଟିକେ ଦେଖିଆସେ, ଏତେଦିନ ପରେ ।

କିଛି ନୀରବତା । କଥା ଖୋଜୁଥିଲେ ଦୁହେଁ । ତା'ପରେ ରଣଜିତ୍ ପ୍ରଶ୍ନକଲା—ଦୀତାନୁଗତିକ କୁଶଳ ସମାଗ୍ଚର । ନମିତା ଉତ୍ତର ଦେଲା ଓ ତା' ପାଳିରେ ପ୍ରଶ୍ନକଲା । ରଣଜିତ୍ ନମିତାର ସଂସାର ସମ୍ବନ୍ଧରେ ଆଗ୍ରହ କିଛି ପଚାରିଲା ଓ ତା' ପାଳିରେ ଦୁଇହାତ ଟେକି ଗୋଟାଏ ନାଟକୀୟ ଭଙ୍ଗୀରେ କହିଲା—ଆରେ ବାବା ! ରକ୍ଷା—ଏ ଯାଏଁ ସଂସାର ଆରମ୍ଭ କରିନି । ନିକଟ ଭବିଷ୍ୟତରେ ଗ୍ଚାନ୍‌ସ ବି ନାହିଁ ।

—କାହିଁକି ?

ଉତ୍ତର ଲୋଡ଼ା ନାହିଁ । ଦୁହେଁ ଖୋଲାହସ ହସିଲେ । ହସ ଥମିବା ପରେ ନମିତା ନିଜ ହାତ ନଖକୁ ଲକ୍ଷ୍ୟକଲା—ଦୈନନ୍ଦିନ ପରିବା କଟାରେ ଧାର ସବୁ କଳା ପଡ଼ିଛି । ଏଥର ଟିକେ ସହଜଗଳାରେ ରଣଜିତ୍ କହିଲା—ତମେ ତ ବେଶ୍ କିଛିଦିନ ହେଲା ଏଠି ଅଛ ବୋଧେ ? ତୁମକୁ ଥରେ ମାର୍କେଟ୍‌ରେ ଦେଖିଲାଭଳି ମନେହେଲା ।

ସତେ ? ଅଥଚ, ଦେଖାକରିନ ?

ନମିତା ବି ଆଗରୁ ରଣଜିତ୍‌କୁ ନ ଦେଖିଚି ତା ନୁହେଁ, ଷ୍ଟୋର୍‌ରୁ ବା ସିନେମା ହଲ୍‌ରୁ ବାହାରୁ ବାହାରୁ । ଦୁହେଁ ଜାଣିଥିଲେ ସେମାନେ ବେଶ୍ କିଛିଦିନ ହେଲା ଗୋଟିଏ ସହରରେ ଅଛନ୍ତି ଓ ଦୂରରୁ ପରସ୍ପରକୁ ଦେଖିଛନ୍ତି । ପାଖକୁ ଆସି କଥାବାର୍ତ୍ତା କରିବା କଥା ଏ ଯାଏଁ କାହାର ଖିଆଲ ହୋଇ ନ ଥିଲା । ନମିତା ଉଠିଲା —

—"ତମେ ଟିକେ ବସ, ମୁଁ ଆସେ ।"

ନମିତା ଗଲା ଓ ରଣଜିତ୍ କାନ୍ଥ କ୍ୟାଲେଣ୍ଡରରେ ଥିବା କୌଣସି ଶୀତପ୍ରଧାନ ଦେଶର ତୁଷାରାବୃତ ଗିରିଶୃଙ୍ଗ ଓ ଥୁଣ୍ଟା ଗଛଗୁଡ଼ିକର ଛବି ଓ ଥାକର ଖେଳନାଗୁଡ଼ିକୁ ଗ୍ଚାହିଁଲା । ଥାକରେ ନମିତାର ଫେମିଲି ଫଟୋ ଓ

ଆରକଣ୍ଡକୁ ନମିତାର ସିଙ୍ଗିଲ୍ ଫଟୋ—କଲେଜ ଦିନର ବୋଧେ । ଫଟୋରେ କଲେଜ-ଦିନର ନମିତା ହସୁଛି—କଲେଜ ବାରଣ୍ଡାର ଜୀବନୋଚ୍ଛଳ ନମିତା, କ୍ଲାସରେ ଆଖି ମିଣିପିବାର ଚମକବିଆ ନମିତା, ସରସ୍ୱତୀ ପୂଜାବେଳର ପ୍ରଗଳ୍‌ଭ ନମିତା ।

ନମିତା ଗ୍ଲ’ ପାଣି ବସାଇ ବେଡ୍‌ରୁମ୍‌କୁ ଆସିଲା । ଡ୍ରେସିଂ ଟେବୁଲ ସାମ୍ନାରେ ଠିଆହେବା ପରେ ହଠାତ୍ କେମିତି ଗୋଟେ ଲଜ୍ଜିତ ଓ ହତାଶ ଭାବ ତାକୁ ଆଚ୍ଛନ୍ନ କଲା । ରଣଜିତ୍ ଲକ୍ଷ୍ୟ କରିଥିବା ତା’ର ଚର୍ବିଳ ଦେହ ଓ ମଳିନ ମୁହଁ-ସବୁ ? ଏତେଦିନ ପରେ ତପାତ୍‌ଟା ଖୁବ୍ ଜୋର୍‌ରେ ଜଣା ପଡ଼ିଥିବ ? ମୁଣ୍ଡରେ ପାନିଆଟା ଅଳ୍ପ ଚଳେଇ ମୁହଁରେ ପାଉଡରର ପଫ୍‌ଟା ବୁଲେଇ ଆଣିଲା । କପାଳରେ ନାଲି ଅସ୍ପଷ୍ଟ ଟୋପାଟା ଟିକେ ଗାଢ଼ କରିନେଇ ଶାଢ଼ୀକୁଞ୍ଚଟା ସଜାଡ଼ ନେବାପରେ ବି ସନ୍ତୋଷ ଲାଗିଲାନି । କିଛି ସମୟ ନିଜ ମୁହଁକୁ ବିଭିନ୍ନ କୋଣରୁ ଲକ୍ଷ୍ୟ କଲାପରେ ନମିତା ଓଠ ଚିପି ସାମାନ୍ୟ ହସିଲା—ହସଟା ଏବେ ବି ତା’ର ସୁନ୍ଦର ।

—କ’ଣ ଦେଖୁଛ ସେଠି ?

ରଣଜିତ୍ ବୁଲିପଡ଼ିଲା । ଗ୍ଲ’ ନେଇ ଥୋଉ ଥୋଉ ହସୁଛି ନମିତା, ପୁରୁଣା ଫଟୋର ହସ, କଲେଜ ବାରଣ୍ଡାରେ ଆଖି ମିଣିପିବାର ହସ ।

—‘ତମ ଫଟୋ ଦେଖୁଥିଲି ।’

—‘ହୁଁ ।’ ଆଉ ଟିକେ ହସ ।

—‘ତମେ ଖୁବ୍ ବଦଳି ନ, ଜାଣ ନମିତା ! ତମର—’

ଟିକଏ ଅପ୍ରସ୍ତୁତ ହୋଇ ସଂଯତ ହେବା ଭଙ୍ଗୀରେ ରଣଜିତ୍ ସୋଫାରେ ବସିଲା ।

“ହୁଁ, କ’ଣ ମୋର—କହୁଥିଲ ?” ହାତକୁ ଗ୍ଲ’ ବଢ଼ାଇ ଦେଉ ଦେଉ ସହଜ ଗଳାରେ ନମିତା କହିଲା ।

ଓଠରେ ଏବେ ବି ସାମାନ୍ୟ ହସ ।

—'ତମ ହସଟା—ଏବେ ବି ଠିକ୍ ସେମିତି । ଚେହେରା ବିଶେଷ ବଦଳି ନି ।'

—"ଆଚ୍ଛା !" ଏଥର ହସିଲା ନମିତା । ପ୍ରସ୍ତୁତ ହସ ନୁହେଁ, ଖୋଲା, ସ୍ୱତଃସ୍ଫୂର୍ତ୍ତ ହସ ।

କିଛି ନୀରବତା । ଅସହଜ ଭାବ କଟିଯାଇଛି । ଏ ନୀରବତାରେ କଥା ଖୋଜିବାକୁ ହେଲା ନାହିଁ, ସେମାନେ ନୀରବରେ ଯା' ଖାଉ ଖାଉ କିଛି ବର୍ଷ ଆଗକୁ ଘୁଞ୍ଚିଗଲେ ।

—'କେତେଦିନ ହେଇଗଲାଣି, ନୁହେଁ ?' ପଛକୁ ଆଉଜି ନମିତା କହିଲା—'କଲେଜ ଛାଡ଼ିବା ପରେ ମୁଁ ଆଉ ଥରେ ବି କଲେଜଆଡ଼େ ଯାଇନି । ବେଳେବେଳେ ଇଚ୍ଛାହୁଏ—ସୁବିଧା ହୁଏ ନି । ତମେ ତ ଯାଉଥିବ ମଝିରେ ମଝିରେ—'

—'ନାଃ—ଇଚ୍ଛା ହୁଏନି । ଚଟ୍‌କିନି ଉତ୍ତରଦେଲା ରଣଜିତ୍ । ଟିକିଏ ରହି ପୁଣି କହିଲା—ତମେ ସୁଯୋଗ ପାଇନି ଭଲ ହେଇଛି ନମିତା । କଲେଜ ଆଡ଼େ ଗଲେ ଜାଗାଟା କେମିତି ନୂଆ ନୂଆ ଖାପ୍‌ଛଡ଼ା ଲାଗେ । ସେଇ ଜାଗା—ଏତେ ପୁରୁଣା ଅଥଚ ନୂଆ । କେହି ଚିହ୍ନା ନ ଥିବେ, ନମସ୍କାର କଲାବେଳକୁ ଜଣେଅଧେ ପୁରୁଣା ଲେକ୍‌ଚରରର ନିର୍ଲିପ୍ତ ପ୍ରଶ୍ନ ପଚାରୁଥିବେ—କ'ଣ କରୁଛ ଆଜିକାଲି ? ତମ ଉତ୍ତରରେ ତାଙ୍କର ଯାଏଆସେ ନାହିଁ । କେମିତି ଗୋଟେ ହତାଶା, ଫାଙ୍କା ଫାଙ୍କା ଲାଗେ । ତା'ପରେ ମନେହୁଏ ତମେ ଯେମିତି ଧୋକା ପାଇଯାଇଚ—ତମେ ଚିହ୍ନୁଛ ଅଥଚ ସେ ଚିହ୍ନୁନି । ଟିକିଏ ଦମ୍ ନେଇ ପୁଣି ସେ ଭାବପ୍ରବଣ କଣ୍ଠରେ କହିଲା—'କଥା କଣ ଜାଣ ନମିତା, ସ୍ମୃତି ଜିନିଷଟାରେ ତ ନ ଥାଏ, ସ୍ମୃତି ଥାଏ ମଣିଷଙ୍କଠି । ସେଇଠି—ଯେଉଁଠି ନିଜ ସ୍ମୃତିର ପ୍ରତିଫଳନ ଦେଖିହୁଏ ।'

ନମିତାର ଆତ୍ମସଚେତନ ଭାବ ଏତେବେଳକୁ କଟିଯାଇଥିଲା ଓ ସେ ରଣଜିତ୍‌ର ମୁହଁରେ ନିଜ ସ୍ମୃତିର ପ୍ରତିଫଳନ ଦେଖୁଥିଲା ।

ହ୍ୱ' କପ୍ ଥୋଉ୍ ଥୋଉ୍ ରଣଜିତ୍ ନୂତନ ପ୍ରଶ୍ନକଲା—ତମେ ଆଜକାଲ ଗୀତ ଗାଉଛ ନମିତା ?

ନମିତା କ'ଣ ଉତ୍ତର ଦେବ ଠିକ୍ କରିପାରିଲାନି । ଅପ୍ରତ୍ୟାଶିତ ଏକ ରୁଦ୍ଧ ଯନ୍ତ୍ରଣା । ହସିବାକୁ ଚେଷ୍ଟାକରି କୌଣସିମତେ ଉତ୍ତରଦେଲା—'ନାଁ ! ସେ ସବୁର ଏବେ ଆଉ କିଛି ମାନେ ନାହିଁ ।'

—'ମାନେ ନାହିଁ ଫେର୍ କ'ଣ ? ଅବାକ୍ ସ୍ୱରରେ ରଣଜିତ୍ କହିଲା । ତା'ପରେ ପୁଣି ଗମ୍ଭୀର କଣ୍ଠରେ ରହି ରହି ନିଜ ସ୍ୱରକୁ ଅନୁଭବ କଲାପରି ସେ କହିଲା, 'ଅଭ୍ୟାସଟା ଛାଡ଼ନି ବୁଝିଲ ? ଗୀତ ଗାଇବାଟା ଛାଡ଼ନି ମୋଟେ । ସମସ୍ତଙ୍କର ସେ ଟାଲେଣ୍ଟ୍ ନ ଥାଏ । ତା'ଛଡ଼ା···ମ୍ୟୁଜିକ୍ କେବଳ ଅନ୍ୟମାନଙ୍କୁ ନୁହେଁ, ନିଜକୁ ବି ଅନେକ ଆନନ୍ଦ ଦିଏ – ଅନେକ ଡେସୋଲେଟ୍ ମୁହୂର୍ତ୍ତରେ— ତମେ ତ ନିଜ ଅନୁଭୂତିରୁ ଜାଣିଥିବ ନିଶ୍ଚୟ, ମୁଁ ଆଉ କହିବି କ'ଣ ? ଆଉ ବି ତମର ଏତେ ସୁନ୍ଦର ଗଳା—ମୋର ପରିଷ୍କାର ମନେ ଅଛି । ଆମ ଏନୁଆଲ୍ ଫଙ୍କ୍ସନ ଦିନ ତମେ ଯେଉଁ ଗୀତଟା ଗାଇଥିଲ ତମର ମନେଅଛି ? (ଗୀତରୁ ପଦେ ମନେ ପକାଇବାକୁ ଯାଇ ବିଫଳ ହେବାରୁ) ମୋର ଏବେ ବି ପରିଷ୍କାର ମନେ ଅଛି । ତମେ ଆଦୌ ଛାଡ଼ ନି ଅଭ୍ୟାସଟା, ବୁଝିଲ ?

ନିରବତା । ନମିତା କିଛିଟା ଅଭିଭୂତ ହେଇଥିଲା । ରଣଜିତ୍‌ର ଅନ୍ୟମନସ୍କତାର ସୁଯୋଗ ନେଇ ନମିତା ତା'ର ମୁହଁକୁ ଲକ୍ଷ୍ୟକଲା—ଏତେ ସାଧାରଣ ଚେହେରା ତଳେ ଏତେ ସୂକ୍ଷ୍ମତାର ଅନୁଭୂତି ସବୁ ! କଲେଜ ଜୀବନରେ କିଛିଦିନ ରଣଜିତ୍‌କୁ ଖୁବ୍ ଭଲ ଲାଗିଥିଲା, କିଛିଟା ଘନିଷ୍ଠ ବି ସେମାନେ ହେଇ ଆସିଥିଲେ । ତା'ପରେ ଅବଶ୍ୟ ଅଜୟ ଆସିଲା (ଅଜୟ ସଙ୍ଗେ ତା'ର ପରିଚୟ, ନିର୍ବାଚନ ସରିଲା ପରେ ହେଲା) ଓ ରଣଜିତ୍ ଆଉ ମନେ ପଡ଼ନି; ଅଥଚ ରଣଜିତ୍ କ'ଣ·····

—'ଆଚ୍ଛା ମୁଁ ଯାଏଁ ନମିତା ।'

ନମିତା ଅଟକେଇଲା– ଇଏ ଆସନ୍ତୁ, ମୁଁ ପରିଚୟ କରେଇଦେବି । ରଣଜିତ୍ ଘଡ଼ି ଦେଖିଲା, ତା'ର ଆଜି ଗୋଟେ ଜାଗାରେ କାମ ଥିଲା, ଆଉ ଦିନେ ଆସିଲେ ନମିତାର ମିଷ୍ଟରଙ୍କ ସଙ୍ଗେ ଦେଖାକରିଯିବ ଓ ତା'ର ପୁଅ

ଝିଅଙ୍କୁ ବି ଦେଖିପିବ । ବାରଣ୍ଡାକୁ ବଳେଇ ଦେବାକୁ ଯାଉ ଯାଉ ନମିତା ପୁଣି ଥରେ କହିଲା; ଆଉ କେବେ ଆସିବାକୁ ଓ ରଣଜିତ୍ ଏଥର ପ୍ରଶ୍ନ କଲା— 'ଲୌକିକତାରେ କହୁଛ ନା ଇଚ୍ଛା ଅଛି, ମୁଁ ଆଉ ଥରେ ଆସେ ?'

—ମୋର ଇଚ୍ଛା ଥିଲେ ଆସିବ ଆଉ ଥରେ ?—ଗୋଟେ ଖିଆଲରେ ନମିତା କହିଲା ।

ନିଶ୍ଚୟ ଆସିବ; କିନ୍ତୁ ତୁମେ କାହିଁକି ଯେ ମୋତେ ମନେ ପକେଇବ ! ଆମର ସିନା ନିଃସଙ୍ଗ ଜୀବନ !!'

ରଣଜିତ୍‌ର ଆଖିକୁ ଚାହିଁ ନମିତା କହିଲା— 'ମୋର ବି ଏକ ରକମ ନିଃସଙ୍ଗ ଜୀବନ । ଏମିତି ଦ୍ୱିପ୍ରହରବେଳେ ମୋର ବି ପୁରୁଣା ସାଙ୍ଗ ମନେ ପଡ଼ନ୍ତି ।'

ରଣଜିତ୍ ହସିଲା, ସ୍ୱୀକୃତି ଓ ଆତ୍ମବିଶ୍ୱାସର ହସ । ଗେଟ୍ ବନ୍ଦ କଲାବେଳେ ରଣଜିତ୍ ପୁଣି ଥରେ ବିଦାୟସୂଚକ ମୁଣ୍ଡ ଟୁଙ୍ଗାଇ ହସିଲା ଓ ନମିତା ଭାବିଲା ରଣଜିତ୍‌ର ବି ହସଟା ସୁନ୍ଦର । କେମିତି ଗୋଟାଏ ସ୍ୱଚ୍ଛ ହସ ।

ଅପସ୍ରିୟମାନ ରଣଜିତ୍‌କୁ ଦେଖି ନମିତା ଭାବୁଥିଲା, ପୁଣି ସେମାନେ ପରସ୍ପର ସଙ୍ଗେ ଯୋଗାଯୋଗ ହରାଇବେ ହୁଏତ—ଅନିର୍ଦ୍ଦିଷ୍ଟ ସମୟ ପାଇଁ । କେମିତି ଦିନ କଟାଉଥିବ ରଣଜିତ୍ କେଜାଣି । ଏ ଯାଏ ଅବିବାହିତ ଅଛି ସେ । କଲେଜ ଜୀବନରେ ସମସ୍ତ ବିଶେଷରେ ବିଭିନ୍ନ ଝିଅଙ୍କ ସାଙ୍ଗେ ପ୍ରେମରେ ପଡ଼ୁଥିଲା ରଣଜିତ୍ । ସମସ୍ତଙ୍କ ସାଙ୍ଗେ କଥାବାର୍ତ୍ତାରେ ତା'ର ଗୋଟାଏ ଆତ୍ମୀୟତା ଥାଏ, ସେଥିପାଇଁ ସମସ୍ତଙ୍କର ବା... ସେ । ଠିକେ ଘନିଷ୍ଠ ହେଇ ଆସିଲେ ରଣଜିତ୍ ... ଦେଖାଯାଏ ।

ରଣଜିତ୍ ରାସ୍ତାରେ ମିଳେଇଗଲା । ଦିନପରେ ଦିନ ଫାଙ୍କା ଦ୍ୱିପ୍ରହରରେ ପିଲାଦିନ ଓ କଲେଜ ଦିନ କଥା ଭାବିବା ପରେ ସେସବୁ ମିଶି ଗୋଟାଏ ବିରାଟ ସୁନ୍ଦର ପେଣ୍ଟିଙ୍ଗ୍‌ରେ ପରିଣତ ହେଇଯାଇଛି । ରଣଜିତ୍ ଓ ବାକି ସମସ୍ତେ (ଆଉ ସମ୍ପର୍କ ନ ଥିବା ବନ୍ଧୁମାନେ) ଗୋଟାଏ ଗୋଟାଏ ଛବି । କବାଟ ବନ୍ଦ

କରୁ କରୁ ନମିତାକୁ ଅଦ୍ଭୁତ ମନେ ହେଉଥିଲା, ଏଇ ରଣଜୟର ଅକସ୍ମାତ୍ ଛବିରୁ ଜୀବନ୍ତ ପାଲଟିଯିବା କଥା ।

× × ×

—'କ'ଣ ଆଜ ଘର ଖୁସ୍ ଅଛ ଯେ ?' ଟାଇ ନଟ୍ ଖୋଲୁ ଖୋଲୁ ଅଜୟ ମନ୍ତବ୍ୟ ଦେଲା । ଜଳଖିଆ ସଜାଡ଼ୁ ସଜାଡ଼ୁ ନମିତା ନିଜ ଅଜାଣତରେ ଗୀତ ଗାଉଥିଲା । ଗୀତ ବନ୍ଦକରି ସେ ଉଚ୍ଛ୍ୱସିତ ଗଳାରେ ଉତ୍ତର ଦେଲା—'ରହନା ! ତମ ଲାଗି ବଡ଼ିଆ ସର୍‌ପ୍ରାଇଜ୍ ସବୁ ରଖିଛି ।'

—'କ'ଣ ? ଭଲ ଜଳଖିଆ କିଛି ଗୋଟାଏ କରିଚ ନିଶ୍ଚୟ ।'

—'ହଁ, ତା'ତ । ଆହୁରି ବି—'

—'କ'ଣ ?'

—'ବାବୁଲର ରେଜଲ୍ଟ ବାହାରିଛି । ସେ କ୍ଲାସ୍‌ରେ ଫାଷ୍ଟ ହେଇଚି ।'

ଅଜୟର ଓଠକୁ ହସ ସଂକ୍ରମିତ ହେଲା । ଗର୍ବୋତ୍‌ଫୁଲ୍ଲ ଗଳାରେ ସେ ବାବୁଲ ଉଦ୍ଦେଶ୍ୟରେ ଡାକ ଛାଡ଼ିଲା ।

ଜଳଖିଆ ପରେ ସକାଳର ପୁରୁଣା ଖବରକାଗଜ ଓଲଟାଇଲା ଅଜୟ । ଗୁଣୁ ଗୁଣୁ ଗାଇ ଡ୍ରଇଂ ରୁମ୍‌ର ଥାକ ସଜାଡ଼ି ଦେଉ ଦେଉ ନମିତା ନିଜ କଲେଜ ଦିନର ଫଟୋକୁ ଚାହିଁଲା । ଓଠରେ ଜୀବନ୍ତ ସବୁଜ ହସ । ଅଜୟ ହାତରୁ କାଗଜଟା ଟାଣିନେଇ ମୋଡ଼ି ରଖୁ ରଖୁ ଆଶ୍ଚର୍ଯ୍ୟ ଅଜୟର ମୁହଁକୁ ଚାହିଁ ନମିତା ଅଳ୍ପ ହସି କହିଲା—'ସେ କାଗଜ ତମର ସକାଳୁ ପଢ଼ା ସରିଛି । ଚାଲନା ଆଜ ଗୋଟେ କିଛି ସିନେମା ଯିବା । ଡେରି ତ ହେଇନ ।

ଅଜୟ ଟିକେ ଆଶ୍ଚର୍ଯ୍ୟ ହେଉ ହେଉ ଖୁସି ହେଲା ।

—'କ'ଣ ବାବୁଲର ରେଜଲ୍ଟ ପାଇଁ ଏତେ ଖୁସି ?'

—'ନିଶ୍ଚୟ । ସେ ଦୁହିଁଙ୍କୁ ବି ଆଜ ନେଇଯିବା । ତମେ ଉଠିଲ !'

ଲୁଗା ବଦଳୁ ବଦଳୁ ଅଜୟ କହିଲା, 'ତମେ ବଡ଼ ମୋଟା ହେଲଣି ନମିତା, ଏଥର ଟିକେ ଡାଏଟିଂ କର ।'

—'ଇସ୍ ! ତମେ ତ ଏକଦମ୍ ଏଭରଗ୍ରୀନ୍ ଅଛ !'

ତା' ବର୍ଦ୍ଧିଷ୍ଣୁ ଦେହ ନେଇ ମନ୍ତବ୍ୟ ଦେଲେ ନମିତା ଏମିତି ଉଚ୍ଛ୍ୱସିତ ଉତ୍ତର ଦିଏନା । ଆଜି ସେ ଖୁସି ଅଛି ।

—ତମ ହସଟା କିନ୍ତୁ ଏବେ କି ସୁନ୍ଦର ନମି !

ପ୍ରତ୍ୟୁତ୍ତରରେ ଆହୁରି ହସ ।

ସିନେମାରୁ ଫେରିଲାପରେ ଖାଉ ଖାଉ ହଠାତ୍ ନମିତା କହିଲା— 'ଆରେ ହଁ, ଏକଦମ୍ ଭୁଲି ଯାଇଛି । ଆଜି ରଣଜିତ୍ ଆସିଥିଲା ।'

—'କୋଉ ରଣଜିତ୍ ?'

—'ରଣଜିତ୍ ମୋର କ୍ଲାସମେଟ୍ ଥିଲା । ଭଲ ସ୍ପୋର୍ଟସ୍‌ମ୍ୟାନ୍ । ତମକୁ ଥରେ ଚିହ୍ନେଇ ଦେଇ ନ ଥିଲି !'

—'ମନେ ପଡୁନି ।' ନମିତାର ବାକ୍ୟ ପୂରା ନ ହେଉଣୁ ଅଜୟ କହିଲା ପାଟି ଭର୍ତ୍ତିକରି—'କାହିଁକି ଆସିଥିଲା, କିଛି କାମରେ ?'

—'ନା, ଏଠିକି ନୂଆ ଆସିଛି ତ । ଦେଖା କରିବାକୁ ଚାଲି ଆସିଲା । ତମ ସାଙ୍ଗେ କାହିଁକି ଦେଖା କରିବାକୁ ଚାହୁଁଥିଲା, ତା'ର କ'ଣ ଡେରିହେଲା । କହିଲା, ଆଉଦିନେ ଆସିବ । ଆଉ ଟିକେ ତରକାରି ଦିଏ ? ମିତା, ତୁ ଟିକେ ?'

ନମିତାର ମୁହଁରେ ପୁରୁଣା ପେଣ୍ଟିଂରୁ ରଙ୍ଗ କିଛି ଛିଟିକି ଆସିଥିଲା ।

× × ×

ହୋଟେଲରୁ ଖାଇ ଫେରିଲାପରେ ରଣଜିତ୍ ଚେୟାର୍‌ରେ ବସି ଟେବୁଲ୍ ଉପରକୁ ଗୋଡ଼ ଲମ୍ବେଇ ଅନ୍ଧାର ରୁମ୍‌ରୁ ଝରକା ବାହାରର ପୁରୁଣା ସହରକୁ ଚାହିଁ କ'ଣ ଭାବୁଥିଲା । ସନ୍ଧ୍ୟାବେଳୁ କେମିତି ଗୋଟେ ଫାଙ୍କା ଲାଗୁଛି,

ଯଦିଓ ନମିତା ଘରୁ ଫେରିଲାବେଳେ ସେ ଖୁସିଥିଲା । ଅନ୍ଧାରରେ ମଶାମାନଙ୍କ ଗୁଞ୍ଜନ ଶୁଭୁଛି । ଝରକା ଆରପଟେ ସହର । ଏକୁଟିଆ ଲାଗୁଛି ।

କଲେଜ ଦିନରେ ଏକୁଟିଆ ତାକୁ ଲାଗେ ନାହିଁ କେବେ । ନମିତାକୁ କେବେ ଏକୁଟିଆ ଲାଗେ ? ଆଜି ଦ୍ୱିପ୍ରହରେ ତାକୁ କାହିଁକି ଏକୁଟିଆ ଲାଗୁଥିଲା । ନମିତାର ଫେମିଲି ଫଟୋ—କୋଳ ବଗିଚାରେ, ଗ୍ରୁପ୍ ଝିଅଟିକୁ ଅଳପ୍ପ ଟେକି ଧରିଛି, ନମିତା ଓ ତା'ର ଗ୍ରୁପ୍ ପୁଅଟିର ଦୃଷ୍ଟି ସେଇ ଝିଅଟି ଉପରେ । ସମସ୍ତଙ୍କ ମୁହଁରେ ଉଚ୍ଛୁଳା ହସ । ନମିତା ମୋଟୀ ହୋଇଯାଇଛି । ଅନେକ ବଦଳି ଯାଇଛି । କଲେଜ ଜୀବନରେ ନମିତାକୁ ବେଶ୍ ଭଲ ଲାଗୁଥିଲା, ଯଦିଓ ତାକୁ ବିବାହ କରିବା କଥା ସିରିୟସ୍‌ଲି ସେ କେବେ ଚିନ୍ତା କରିନି । କଲେଜ ଜୀବନରେ ଶେଷ ବେଳକୁ ପ୍ରୀତିଲତା ତାକୁ ସବୁଠୁଁ ବେଶି ଆକୃଷ୍ଟ କରିଥିଲା । ପ୍ରୀତିଲତା କିନ୍ତୁ ଅତି ଶାଏ, ତାକୁ କେମିତି ପ୍ରେମ ନିବେଦନ କରିବ ରଣଜିତ୍ ଭାବିପାରୁ ନ ଥିଲା । ପରୀକ୍ଷା ପୂର୍ବରୁ ସେ ବାହା ହୋଇଗଲା ।

—ରଣଜିତ୍‌କୁ କାର୍ଡ଼ ଖଣ୍ଡେ ବି ଦେଇନି । ନମିତା—ସ୍ମାର୍ଟ, ଗୀତଗାଏ, ସ୍ୱିମିଂ ଥିଲା । ଏବେ ବି ଅଛି, କିଛି କିଛି, ଏବେ ବି ନମିତା ନିର୍ଜନ ଦ୍ୱିପ୍ରହରେ ତାକୁ ମନେପକାଏ । ବାଜେ କଥା । ଫଟୋରେ ସେ ତା'ର କୁନି କୁନି ପୁଅଝିଅଙ୍କ ସାଙ୍ଗେ ହସୁଥିଲା । ସୋଫା କଡ଼କୁ ତା' ଝିଅର ନରମ ରଙ୍ଗଛଡ଼ା କଣ୍ଢେଇ ପଡ଼ିଥିଲା । ଦ୍ୱିପ୍ରହରେ କିନ୍ତୁ ତା' ସ୍ୱାମୀ ଅଫିସ୍ ଯାଆନ୍ତି ଓ ପିଲାମାନେ ସ୍କୁଲ୍ । ନିର୍ଜନ ଏକାକୀ ଦ୍ୱିପ୍ରହର । ପୁରୁଣା କଲେଜଦିନ ମନେ ପଡ଼ିବା ଅସ୍ୱାଭାବିକ ନୁହେଁ ।

ଟେବୁଲ ଲ୍ୟାମ୍ପର ସୁଇଚ୍ ଟିପିଲା ରଣଜିତ୍ । ଟେବୁଲ ଓ ରୁମ୍‌ର କିୟଦଂଶ ଆଲୋକିତ ହେଲା ଓ ଝରକା ବାହାରର ସହର ଅସ୍ପଷ୍ଟ ହେଲା । ଲଫାପାଟି ନେଇ ରଣଜିତ୍ ଫଟୋଟିଏ କାଢ଼ିଲା । ଝିଅଟି ମନ୍ଦ ନୁହେଁ ଦେଖିବାକୁ, ଲମ୍ବା ଭ୍ରୂ, ହସଟା ମିଠା ମିଠା । ନାକଟା ସେତେ ସୁନ୍ଦର ନ ହେଲେ ବି ମୁହଁଟା ମନ୍ଦନୁହେଁ । ରଙ୍ଗ ଗୋରା ହୋଇଥିଲେ, ସୁନ୍ଦରୀ ବି ହୋଇଥାଇ ପାରେ । ସେକେଣ୍ଡ୍ ଇଅର୍‌ରେ ପଢ଼ୁଛି । ନମିତାଠାରୁ ଢେର୍ କମ୍ ବୟସ । ଦେଖିବା ଦରକାର ନାହିଁ, ଏଇଠି ରାଜି ହୋଇଗଲେ ଯାଏ ।

ମାନସୀର ଫଟୋକୁ ଡ୍ରୟାରରେ ରଖି କାଗଜଟିଏ ଟାଣି ପେନ୍ ଖୋଲିଲା ସେ ।

# ବହୁବର୍ଣ୍ଣ

ଝରକାଟା ଖୋଲି ବାହାରକୁ ଚାହିଁଲେ ଖରା, ପ୍ରଚଣ୍ଡଖରା । କମ୍ପାର୍ଟମେଣ୍ଟ ବାହାରେ ଯେତେଦୂର ଆଖିପାଉଛି, ଖରାରେ ବାଷ୍ପାକୁଳ ପାହାଡ଼, ପର୍ବତ, ଗଛବୁଦା ଧାଇଁଛନ୍ତି ଊର୍ଦ୍ଧ୍ୱଶ୍ୱାସୀ ହୋଇ—ଧାଇଁ ଧାଇଁ ଅଦୃଶ୍ୟ ହୋଇ ଯାଉଛନ୍ତି । ସବୁ ଆକୃତି, ସୀମାରେଖା କେମିତି ଅସ୍ପଷ୍ଟ, ଧୂଆଁଳିଆ ଦିଶୁଛି, ଆଖିଝଲସା ଖରାରେ ।

ଝରକା ବନ୍ଦକରି କମ୍ପାର୍ଟମେଣ୍ଟ ଭିତରକୁ ଚାହିଁଲେ—ନର୍ଦ୍ଧସ୍ତ କାଠ-ସିଟ୍‌ମାନଙ୍କରେ ଜକାଜକି ଲୋକ । ଉପର ବର୍ଥରେ ବି ବାକ୍ସ ବେଡ଼ିଂ ମଝିରେ ଜାଗାଦେଖି ଲୋକ ଶୋଇଯାଇଛନ୍ତି । ବିଭିନ୍ନ ଆକାର ପ୍ରକାରର, ସଫା ମଇଳା ସାର୍ଟପେଣ୍ଟ ଧୋତି ଲୁଙ୍ଗୀ ପିନ୍ଧା ଗତାନୁଗତିକ ଲୋକ । ସାମ୍ନା ସିଟ୍‌ରେ କମ୍ପାର୍ଟମେଣ୍ଟର ଏକମାତ୍ର ନାରୀ, ବିଗତ ଯୌବନା, ଏକାନ୍ତ ଅନାକର୍ଷଣୀୟା । ମାଗାଜିନ୍ ଖଣ୍ଡେ ବି ନାହିଁ । ମୋ ପାଖ ମାରୁଆଡ଼ୀ ଭଦ୍ରଲୋକ ତାଙ୍କ ସାଧାରଣ ଜାତିଗତ ଆକାର-ପ୍ରକାର-ଗୁଣଗ୍ରାମ ନେଇ ବସିଥିଲେ, ମୋ ଉପରେ ଶରୀର ଢାଳି ଢୁଳାଉଥିଲେ ଓ ମଝିରେ ମଝିରେ ମୋର ବିବ୍ରତ ଆପତ୍ତିରେ ନିଦ ଢୁଳୁଢ଼ୁଳୁ ଆଖି ମେଲି ମୃଦୁହସି କ୍ଷମାପ୍ରାର୍ଥନା କରିନେଉଥିଲେ । କେତେବେଳେ ଅବା କମ୍ପାର୍ଟମେଣ୍ଟରେ ସିଟ୍ ନେଇ କାହାର ଗୋଟିଏ ଅଧେ ଆସନ୍ନସମ୍ଭାବି ଝଗଡ଼ା ଶାନ୍ତ ପଡ଼ିଗଲା ପରେ ସେ ହସିହସି ଦାର୍ଶନିକ ଭଙ୍ଗୀରେ ମନ୍ତବ୍ୟ ଦେଉଥିଲେ ରାସ୍ତାରେ ଗଲାବେଳେ ଝଗଡ଼ା କଣ ? ତମେ ଯାଉଚ, ଆମେ ଯାଉଚୁ, ଝଗଡ଼ା କିସ୍‌ଲିଏ ? ନିଜ ଉକ୍ତିରେ ସନ୍ତୁଷ୍ଟ ହୋଇ ପୁଣି ଢୁଳାଉଥିଲେ ।

ସାମ୍ନା ସିଟ୍‌ର ଭଦ୍ରମହିଳା— ପ୍ରୌଢ଼ ସ୍ୱାମୀ ଓ ଚାରି ପାଞ୍ଚୋଟି ସନ୍ତାନ— ଅସ୍ୱଚ୍ଛଳ ପରିବାର, ଦରିଦ୍ର ଯନ୍ତ୍ରବତଃ । ସେମାନଙ୍କ ପାଖକୁ ସଫାସୁତୁରା ବେଶ-ପୋଷାକ ଯୁବକ ଜଣେ । ସେ କଣ ଏକୁଟିଆ ସିଟ୍‌ରେ ମୋଟା ହୋଇ ଚନ୍ଦା

ଭଦ୍ରଲୋକ ପ୍ରତି ଷ୍ଟେସନରେ ନିଦରୁ ଉଠି କିଛି ନା କିଛି ଖାଦ୍ୟ କ୍ରୟ କରି ଝଡ଼ିଦାଳରେ ବାନ୍ଧୁଥିଲେ ଓ ବଳକା ରେଜା ପଇସା ସଯତ୍ନେ ଗଣି ପକେଟ୍‌ରେ ରଖୁଥିଲେ ।

ଆଦ୍ୟ—ମଧ୍ୟାହ୍ନର ପରିଚୟ ଆଦାନ ପ୍ରଦାନ ଓ ଖୁସିଗପର ଉଲ୍ଲାସ କମି ଯାଇଥିଲା । ଯେ ଯାହାର ଭୋଜନର ବ୍ୟବସ୍ଥା କରି ଏବେ ଘଣ୍ଟେ ହେବ ନିଜ ନିଜ ଜାଗାରେ ଆଖିବୁଜି ଜପକଲା ଭଳି ବସିଯାଇଥିଲେ ଓ ଟ୍ରେନ୍‌ର ତାଳେ ତାଳେ ଝୁଲୁଥିଲେ । ମୁଁ ହିଁ ଏକୁଟିଆ ବାରମ୍ବାର ଆଖିବୁଜି ଜପିବାକୁ ଚେଷ୍ଟାକରି ପରାସ୍ତ ହେଉଥିଲି ଓ ନାନାଦି ଚିନ୍ତା ତଥା ଗରମରେ ଛଟପଟ ହେଉଥିଲି । ଖରାଲାଗି ସବୁ ଝରକା ପ୍ରାୟ ବନ୍ଦ । ତରବରରେ ଆସିଲାବେଳକୁ ମାଗାଜିନ୍ ଖଣ୍ଡେ ଆଣିବାକୁ ବି ଭୁଲିଯାଇଛି । ଏତେ କମ୍ ସମୟ ଭିତରେ ଆସି ପାରିଲି ବଡ଼ କଥା, ଖାଲି ଭଗବାନଙ୍କ ଦୟାରୁ ସୁ ରୁଖୁ ରୁରେ ଇଣ୍ଟର୍‌ଭିଉଟା ଦେଇ ପାରିଲେ—! ଏତେବେଳେ ରହି ରହି କଥାଟା ମନେ ପଡ଼ୁଛି ।

ଲୋକଙ୍କୁ ଏତେ ନିଦ କିମିତି ଲାଗେ କେଜାଣି, ଏ ଗରମ, ଭିଡ଼, ଝାଳ ଗନ୍ଧରେ । ସାମ୍ନାର ପ୍ରୌଢ଼ ଭଦ୍ରଲୋକ, କୋଉଠିକାର ଦୁଃସ୍ଥ ସଙ୍ଗୀତ ଶିକ୍ଷକ ହେବେ ବୋଧହୁଏ, କିଛି ସମୟ ଆଗ ପର୍ଯ୍ୟନ୍ତ ବି ଝରକାରେ କହୁଣି ଓ କାନରେ ହାତ ପାପୁଲି ଦେଇ, ଆଖିବୁଜି ରେଖା-ବହୁଳ କପାଳକୁ ଆହୁରି କୁଞ୍ଚାଇ କି ଗୋଟାଏ ରାଗର ଲହରି ଧରିଥିଲେ ନିମ୍ନକଣ୍ଠରେ; ବାଁ ହାତ କ୍ରମାଗତ ସ୍ୱରର ଗତି ସୂଚେଇ ଦେଉଥିଲା । ତାଙ୍କ ରୁଗ୍‌ଣା ସ୍ତ୍ରୀ (ଭଦ୍ରଲୋକ ତେଣିରେ ବାହା ହୋଇଛନ୍ତି, ଅଥବା ଦ୍ୱିତୀୟା ପତ୍ନୀ) ସିଟ୍ ଉପରେ ଚକାମାଡ଼ି କୋଳରେ ପିଲାକୁ ଧରି ନିରୋଳର ମୁଖଭଙ୍ଗୀରେ ସ୍ୱାମୀଙ୍କ ଗୀତ ଅବା ଟ୍ରେନ୍ ଚକର ସଙ୍ଗୀତ ଶୁଣୁଥିଲେ ଓ ବେଳେବେଳେ ସନ୍ତାନମାନଙ୍କ ଆପତ୍ତି ଅଭିଯୋଗରେ ବ୍ୟତିବ୍ୟସ୍ତ ହୋଇ ସ୍ୱାମୀଙ୍କ ସାହାଯ୍ୟ ଭିକ୍ଷା କରୁଥିଲେ । ସ୍ୱାମୀ ତତ୍‌କ୍ଷଣାତ୍ ସମସ୍ୟାର ସମାଧାନ କରୁଥିଲେ—ସିଟ୍ ତଳୁ ଦରଭଙ୍ଗା ଟିଣବାକ୍ସ ଟାଣିଆଣି ଝିଅର ବସିବା ପାଇଁ ଜାଗା କରିଦେଇ ବା ଷ୍ଟେନ୍ନି ବର୍ଷର ପୁଅକୁ ବାଥ୍‌ରୁମ୍‌କୁ ନେବା ବଦଳରେ ଖୋଲା ଝରକା ପାଖରେ ବସାଇ ଦେଇ ଏବେ ସେ ସପରିବାର ସୁଷୁପ୍ତିରେ ମଗ୍ନ । ସଙ୍ଗୀତଜ୍ଞ ଉପରେ ନିଶ୍ଚେଷ୍ଟ, ପାଟି ଅଳ୍ପ ମେଲା ଓ ନୀରବ, ଆଖି ବନ୍ଦ ।

ବମ୍ପତା ମନେ ପଡ଼ୁଛି । ଆଃ, ବମ୍ପତା ହୁଏ ତ ଜାଣି ବି ନ ଥିବ ମୁଁ ଇଣ୍ଟରଭିଉକୁ ଆସିଛି ବୋଲି । ବମ୍ପତା ସଙ୍ଗେ ହୋଇଥିବା ଅଳ୍ପ କେତୋଟି ସାକ୍ଷାତ୍ (ପ୍ରାପ୍ତ ଘଟଣା ବନ୍ଧନ) କଥା ପୁଣି ଥରେ ମନେ ମନେ ଦୋହରାଇ ଗଲି ଦୃଶ୍ୟମାନ ଆଙ୍କି ଓ ଭବିଷ୍ୟତରେ ସମ୍ଭାବିତ ଘଟଣାମାନଙ୍କର ବି ଦୃଶ୍ୟ ଆଙ୍କିଲି । ତଥାପି ଏମିତି ଆଖି ବୁଜି ବେଶି ସମୟ ବସି ଥ୍ରେଟ ଆଟାଚି ଖୋଲି ଇଣ୍ଟରଭିଉ ଲେଟର୍‌ଟା ପୁଣି ଥରେ ପଢ଼ିଲି, ସାର୍ଟିଫିକେଟ୍ ଇତ୍ୟାଦି ଠିକ୍ ଅଛି କି ନାହିଁ ପରଖିନେଲି, ଲୁଗାପଟା ତଳୁ ବହୁ ପଠିତ ବମ୍ପତାର ଚିଠିକୁ ଥରେ ଦେଖିନେଇ ଆଟାଚି ବନ୍ଦକଲି । ଏଥର ଗ୍ଲୁକରଟା ହୋଇ ଯାଆନ୍ତା କି ପ୍ରଭୁ, ଯଥେଷ୍ଟ ଦଣ୍ଡ ମିଳିଲଣି । ଅନ୍ୟ ସବୁ କାତର ମୁହୂର୍ତ୍ତ ପରି ବିଶ୍ୱସ୍ତ ଦେବ-ଦେବୀମାନଙ୍କୁ ଭୋଗର ପ୍ରତିଶ୍ରୁତି ଦେଇ ବହେ ଡାକିଗଲି । ଭାଉଜ ନିର୍ଜଳା ଉପବାସ କରି ନିଷ୍ଠାରେ ପୂଜା, ବ୍ରତ କରୁଥିଲାବେଳେ ତାଙ୍କୁ ପୁରୁଣାକାଳିଆ ଇତ୍ୟାଦି କହି ଥଟ୍ଟା କରୁଥିବା ମନ କେଉଁ ଗହ୍ୱରରେ ଲୁଚିଥାଏ ।

ସାମ୍ନା ସିଟ୍‌ର ମହିଳାଙ୍କ କୋଳର ଛୁଆ ହଠାତ୍ ଉଠିପଡ଼ି ଡାକିଲା— ମାଆ-- ! ମା' ନିଦ୍ରାଗତା । ଛୁଆଟି ଦି' ଚାରିଥର ଡାକି ନିରୁତ୍ତର ନିଦ୍ରାଗତା ମା'କୁ ଆଶ୍ଚର୍ଯ୍ୟ ହୋଇ କ୍ଷଣେ ଚାହିଁଲା, ତା'ପରେ ବାପାକୁ, ପାର୍ଶ୍ୱବର୍ତ୍ତୀ ନିଦ୍ରାଗତ ଭାଇ ଭଉଣୀଙ୍କୁ ସାମ୍ନା ସିଟ୍‌ର ଘୁଙ୍ଗୁଡ଼ି ମାରୁଥିବା ମାରୁଆଡ଼ୀଙ୍କୁ, ତାଙ୍କ ପାଖେ ଗମ୍ଭୀର ହୋଇ ଚଷମା ଭିତରେ ଆଖି ବୁଜିଥିବା ଭଦ୍ରଲୋକଙ୍କୁ । ପିଲାଟି ବୋଧହୁଏ ଏକାବେଳକେ ଏତେଗୁଡ଼ିଏ ବଡ଼ ମଣିଷଙ୍କୁ ଦିନ ଆଲୁଅରେ ଆଖି ବୁଜି ନିଷ୍ଟୁପ୍, ନିଶ୍ଚଳ ହୋଇ ବସିଥିବାର କେବେ ଦେଖି ନ ଥିଲା, ହଠାତ୍ କିଛି ଗୋଟାଏ ଭୟାନକ ସତ୍ୟ ଉପଲବ୍ଧି କଲା ଭଳି ଆତଙ୍କିତ ଗଳା ଫଟାଇ ଚିତ୍କାର କରି କାନ୍ଦର ଲହରି ଛୁଟାଇଲା ।

ବପା, ମା' ଉଠିଲେ । ଆଉ କେତେକ ବି ଉଠି ଭିଡ଼ମୋଡ଼ ହେଲେ, ଗରମକୁ, ଟ୍ରେନ୍‌କୁ ଗାଳିଦେଲେ । ଛୁଆଟି ପ୍ରବୋଧନ ପାଇ ଚୁପ୍ ହେଲା । ପ୍ରୌଢ଼ ଝରକାର କାଠ ପରଦା ଉଠାଇ ବାହାରକୁ ଚାହିଁଲେ, ଝଲକାଏ ଖରାଧାସ ଭିତରକୁ ପଶି ଆସିଲା, ତା ସଙ୍ଗେ ସଙ୍ଗେ କିଛି ଗରମ ପବନ । ଅପରାହ୍ଣ ବଳବତ୍ତର ରହିଛି ।

ବଡ଼ ଗରମ, ଭିଡ ଓ ଟ୍ରେନର କ୍ରମାଗତ ଘର୍ଘର ବିରକ୍ତିକର । ଏ ଯାତ୍ରାର ଶେଷ କେତେବେଳେ ହେବ, ଖାଲି ଖିଆ ଟା ବି ତ କମି ପାରନ୍ତା । ମୁଁ ଚରମ ବିରକ୍ତିର ସିଦ୍ଧାନ୍ତରେ ପହଞ୍ଚିଲି—ମୋତେ ବିମଳା ଭଲପାଏ ନାହିଁ । ପାଏ ନାହିଁ, କେବେ ନୁହେଁ । ଭଲ ପାଉଥିଲେ ମୋ ମନରେ ସେ ବିଶ୍ୱାସ ଜନ୍ମାଇ ଥାଆନ୍ତା; ମନରେ ବିଶ୍ୱାସ ଥିଲେ ମୁଁ କାହିଁକି ତା କଥା ଭାବିଲାବେଳେ ଆଶଙ୍କିତ ହୋଇପଡ଼ୁଥାନ୍ତି, ଇଣ୍ଟରଭିଉକୁ ଗଲାବେଳେ ଆଜି ଏ ଯନ୍ତ୍ରଣା ଚିନ୍ତାରେ ଯାଉଥାଆନ୍ତି !

ମୁଁ ଆବିଷ୍କାର କଲି, କେତେବେଳୁ ହେଲା ଟ୍ରେନର ଗତାନୁଗତିକ ଘର୍ଘରକୁ ଅତିକ୍ରମି ଗମ୍ଭୀର ସ୍ୱର ଲହରୀ ଶୁଭୁଛି । ସାମ୍ନା ପ୍ରୌଢ଼ବ୍ୟକ୍ତି ପୁଣି ନମ୍ର ତାଳରେ ସଙ୍ଗୀତ ଲହରୀ ବୁହାଇ ଥିଲେ—ପୂର୍ବବତ୍ ଭାବଭଙ୍ଗୀରେ ସ୍ତ୍ରୀ ଚକାମାଡ଼ି ହାଉଁଆ ମୁହଁଟିକୁ ବିହ୍ୱଳ ଆଖିରେ ସ୍ୱାମୀଙ୍କ ମୁହଁକୁ ଅନେଇଥିଲେ ।

ମୁଁ ବିମୂଢ଼ ହୋଇ କିଛିକ୍ଷଣ ଚାହିଁଲି ଦୁହିଁଙ୍କୁ, ଆନନ୍ଦ ପାଇଲି ନାହିଁ । କିଛି ଗୋଟାଏ କରେଁ ଭାବି ପୁଣି ଆଟାଚି ଖୋଲିଲି ଓ ତଳୁ ବିମଳାର ଚିଠି କାଢ଼ି ପଢ଼ି ବସିଲି, ନୂତନ କିଛି ପ୍ରେରଣା ପାଇବା ଆଶାରେ । କି ସୁନ୍ଦର ଗୋଲ ଗୋଲ ଅକ୍ଷର ବିମଳାର ଓ କେଡ଼େ ସରଳ ସୁନ୍ଦର ଭାଷାରେ ସେ ଲେଖିପାରେ ମନକୁ ଛୁଇଁଲା ଭଳି ! ବିମଳା ମୋତେ ଭଲପାଏ, ଭଲପାଏ ନିଜକୁ ଆଶ୍ୱାସନା ଦେଉ ଦେଉ ଦୁଇ ତିନିଥର ପଢ଼ିଗଲି ଚିଠିଟି । ବିମଳାର ପ୍ରଥମ ଚିଠି । ମୁଖସ୍ଥ ହୋଇଗଲାଣି ପ୍ରତି ଧାଡ଼ି, ଶବ୍ଦ କମା, ପୂର୍ଣ୍ଣଚ୍ଛେଦ । ଖୋଲାଖୋଲି ପ୍ରେମ ବିଷୟରେ ଉଲ୍ଲେଖ କିଛି ନାହିଁ ଅବଶ୍ୟ । ତେବେ ଭଲପାଉନଥିଲେ ଏତେ ଆପଣାର ସ୍ୱରରେ ଚିଠି ଲେଖିବା ଅସମ୍ଭବ ।

କୌଣସି ଷ୍ଟେସନ୍‌ରେ ଟ୍ରେନ୍ ରହିଲା । ପ୍ରଚୁର ଗଣ୍ଡଗୋଳ ସମେତ ଅନେକ ଭିଡ଼ । ଆସିବା ପାଇଁ ଉଦ୍ଦିଷ୍ଟ ପଥ ତଥା ଝରକା ଦେଇ ପଙ୍ଗପାଳ ପରି ଲୋକ ମାଡ଼ିଆସିଲେ । ପ୍ରୌଢ଼ଙ୍କ ଗୋଡ଼ ପାଖେ ବସିଥିବା ଝିଅ ଅତର୍କିରେ ଉଠିପଡ଼ିଲା ଓ ଝରକା ଦେଇ ଆଗନ୍ତୁକର ଗୋଡ଼ ଦଦରା ଟିଣ ବାକ୍ସ ଉପରେ ପଡ଼ିଲା, ଗୋଟାଏ କର ଚେପିଯାଇ ଆରପାଖ କବଜାଟା ଭାଙ୍ଗିଗଲା ବୋଧେ । ସ୍ତ୍ରୀ ବିରକ୍ତ ଦୃଷ୍ଟିରେ ଚାହିଁଲେ । ସ୍ୱାମୀ ତାଙ୍କର ବିତୃଷ୍ଣା-ବିହ୍ୱଳତା ମିଶାମିଶି ମୁହଁରେ ବାକ୍ସଟିକୁ କଣ ତଳେ ଠିକ୍‌ଠାକ୍ କରିବାକୁ ଚେଷ୍ଟାକଲେ ଓ ପୁଣି

ସିଅଟିକୁ ବସିବାକୁ ନିର୍ଦ୍ଦେଶ ଦେଲେ । ଟ୍ରେନ୍ ଛାଡ଼ିଲାବେଳକୁ ଦଳେ ଭଦ୍ର ବେଶ ପୋଷାକ ଯୁବକ ଆମ ସିଟ୍‌ରେ ଆସର ଜମାଇ ସାରିଥିଲେ । ଜାକଜୁକ ବସିଥିବା ଲୋକଙ୍କୁ ଆହୁରି ଜାକି କେତେକ ନିଜପାଇଁ ଜାଗା ଠିକ୍‌କଲେ ଓ ଅନ୍ୟ କେତେକ ଟ୍ରଙ୍କ୍, ବେଡ଼ିଂ ମଝିକୁ ଟାଣିଆଣି କିଛିକ୍ଷଣ ମଧ୍ୟରେ ତାସ୍‌ରେ ନିମଗ୍ନ ହେଲେ । ଟ୍ରେନ୍ ଛାଡ଼ିଲାପରେ ଦଶ-ବାରବର୍ଷର ଗାୟକ ଭିକ୍ଷୁକଟିଏ ପ୍ଲାଟ୍‌ଫର୍ମରୁ ସଂଗୃହୀତ ତାର ବାଦ୍ୟଯନ୍ତ୍ର ନେଇ କଣ୍ଠର ସବୁ ଶକ୍ତି ଖଟାଇ ସିନେମା ଗୀତଟିଏ ଚିତ୍କାର କରି କରି ପହଞ୍ଚିଗଲା । ଯୁବକ ଦଳ ତାକୁ ଦେଖି ପରମ ଉତ୍ସାହରେ ତଳେ ବସିବାକୁ ନିର୍ଦ୍ଦେଶ ଦେଇ ଗୀତ ଫରମାସ୍ କଲେ ଓ ଦ୍ୱିଗୁଣ ଫୁର୍ତ୍ତିରେ ତାସ୍ ଖେଳିଲେ । ଟ୍ରେନ୍‌ର ଘର୍ଘର ଓ ଶ୍ରୋତାଙ୍କ ଉଲ୍ଲାସ ଧ୍ୱନିକୁ ଟପିବା ପାଇଁ ପିଲାଟିକୁ ପ୍ରାୟ ଉଚ୍ଚରେ ଫେନ୍‌କୁ ଛୁଇଁ ତାଳ ଘଣ୍ଟିକା ଦେଖାଇ ଚିତ୍କାର କରିବାକୁ ହେଉଥାଏ ।

ପୁରାତନ ଯାତ୍ରୀ ସବୁ ନିଦଭାଙ୍ଗି ନିରାସକ୍ତ ଭାବେ ବସିଥିଲେ । ପ୍ରୌଢ଼ ସଙ୍ଗୀତ ଚର୍ଚ୍ଚା ଛାଡ଼ି ବଡ଼ୁଆ-ବାହାନ ଆଖିକୁ ଅପେକ୍ଷାକୃତ ବେଶି ମେଲି ନବାଗନ୍ତୁକମାନଙ୍କୁ ଚାହିଁଥିଲେ ।

ବାଳକର ପ୍ରତିଗୀତରେ ଶ୍ରୋତାମାନେ ବେଶି ଉଲ୍ଲସିତ ହେଉଥିଲେ ଓ ଶ୍ରୋତାଙ୍କ କ୍ରମବର୍ଦ୍ଧିଷ୍ଣୁ ଉଲ୍ଲାସରେ ବାଳକ ବେଶି ଉତ୍ସାହିତ ହେଉଥିଲା । ଅବଶେଷରେ କୌଣସି ଏକ ଷ୍ଟେସନରେ ବାଳକ ତା'ର ପ୍ରାପ୍ୟ ମାଗି ମେଲାଣି ନେବାକୁ ଚାହିଁଲା ।

—ବସ୍ ବେ ! ଗା—ଗା—।

ପିଲାଟି ଆପତ୍ତି ଜଣାଇଲା । —ଯିବୁ ତ ଯା ଭାଗ୍, ପାଟି କାହିଁ କରୁଚୁ ? ପିଲାଟି ଏଥର ଦାବୀ ଜଣାଇଲା—ମୋ ପଇସା ? ସଙ୍ଗୀତ-ପ୍ରେମୀମାନଙ୍କ ଉଲ୍ଲାସ ସବୁ ମୁହୂର୍ତ୍ତକେ ବିରକ୍ତିରେ ରୂପାନ୍ତରିତ ହେଲା—କି ପଇସା ! ଯିବୁ ନା ଏଠୁ ଦେଖିବୁ ?

ମୁଁ ଭାବିଲି ପାଞ୍ଚପଇସିଟିଏ ଦିଆଯାଇ ପାରନ୍ତା, ତେବେ ଏ ଭଦ୍ର ଅଭଦ୍ରମି ସିନ୍ ଛାଡ଼ି — ! ଏ ପିଲାଟି କ୍ଷୁବ୍ଧ ମୁଖଭଙ୍ଗୀ କଲା ( ଏ କର୍କଶ ମଜଲିସ୍ ଭିତରେ ବି ମୁହଁଟି ଗୋଟିଏ ଅବୋଧ ବାଳକର) ଓ ଯାଉ ଯାଉ କହିଲା— ରହ ଯେ, ଯେ ଯେମିତି କରେ ତାକୁ ସେମିତି ଫଳ ମିଳିଯାଏ ।

ଏ ସାଧୁବାଣୀ ସେ କୋଉଠୁ ଶିଖିଲ୍ କେଜାଣି; କିନ୍ତୁ ଏଥିରେ ଖେଳାଳୀ-ମାନଙ୍କ ହୃତ-ଉଲ୍ଲାସ ସବୁ ଫେରିଆସିଲା । ପ୍ରୌଢ଼ ବି ସଙ୍ଗୀତ ଚର୍ଚ୍ଚାରେ ମନ ଦେଲେ । ମୁଁ ଭକ୍ତ ଅନ୍ତେବୃ ହୋଇ ନିର୍ଦ୍ଦିତ ମାରୁଆଡ଼ୀଙ୍କୁ କହୁଣୀରେ କୋଷ୍ଟିଲ ଓ ନିଷ୍ଫଳ କ୍ରୋଧରେ ବେକ ମୁହଁରୁ ଝାଳ ପୋଛୁ ଛଟପଟ ହେଲି । ପ୍ରୌଢ଼ ହଠାତ୍ ରାଗିଣୀ ବନ୍ଦକରି ମୋତେ ଉପଦେଶ ଦେଲେ—ହିନ୍ଦୀରେ । ଝରକାଟା ଖୋଲି ଦେଉନାହାନ୍ତି । ବେକାର୍ ଗରମରେ—

—ବାହାରେ ବ ଡ ଖରା, ଖୋଲି କଣଟା ହେବ ? ମୁଁ ନିଜ ସପକ୍ଷରେ ଯୁକ୍ତି କଲାଭଳି କହିଲି । ପତ୍ତିପତ୍ନୀ ଅବଲମ୍ବେ ସ୍ୱପ୍ନଜଗତକୁ ଫେରିଗଲେ ଓ ମୁଁ ଝର୍କା ଖୋଲିଲି । ଖରାଧାସରେ କମ୍ପାର୍ଟମେଣ୍ଟ ପୂରିଗଲା, ତା ସାଙ୍ଗକୁ ଗରମ ପବନ । ଜଣେ ଦି'ଜଣ କଏ ଆପତ୍ତି କଲେ, ପୁଣି ତୁନିଚାପି ହେଲେ ।

ବାହାରେ ଖରା, ପ୍ରଚଣ୍ଡ ଖରା । । ପାହାଡ଼ ପର୍ବତ, ଶୁଖା ଗଛ, ଶୁଖିଲା ନାଳ, ଟାକାର ପଡ଼ିଆ ଉପରେ ଛଳ ଛଳ କରୁଛନ୍ତି । ମଝିରେ ମଝିରେ ଆକାଶକୁ ମୁଠାଏ ଫଗୁ ଛାଟିଦେଲା ପରି ପଳାଶ ଗଛ । ଟ୍ରେନ୍ ଧାରେ ଧାରେ କୁରେଇ ବୁଦା—ଡାଳମାନ କେବଳ ଜ୍ୟୋତ୍ସ୍ନାମୟ ଧଳାଫୁଲ । ମୁଁ ବିମୂଢ଼ ହୋଇ ଭାବିଲି—ଉପରେ ଏ ଶ୍ମଶାନ ଭିତରେ ଏମାନେ ପ୍ରାଣୋଚ୍ଛଳତାରେ ଫୁଟିବାକୁ ସମୟ ପାଇଲେ । ସୂର୍ଯ୍ୟଆଡ଼ର ପୃଥିବୀ ନିଆଁରେ ଛଟପଟ ହୋଇ ଧାଉଁଥିଲାବେଳେ ଏଇ କେତୋଟି ଏ ଜୀବନ ସଙ୍ଗୀତ କାହୁଁ ଶିଖିଲେ କେଜାଣି । ମୁଁ ଆବଦଅନ୍ତ କିଛି ପାଇଲି ନାହିଁ । ଝରକା କିନ୍ତୁ ଏଥର ଖୋଲା ରଖିଲି ।

# ଫଟୋ

ମୁଣ୍ଡ ଉପରେ ଘୁଁ ଘୁଁ ପଙ୍ଖା, ପୁଣି ଉଡୁନ୍ତା ମାଚ୍ଛିପଲଙ୍କ ସାଙ୍ଗକୁ ପ୍ରଣବରର ଅବିରତ ଗୁଣୁଗୁଣୁ ପଢ଼ା । ନିଘୋଡ଼ା ମନରେ କିଛି ଚିନ୍ତା ତ କରିହେବ ନି, ଠିକ୍ ଘୁଷୁରିଆ ପଡ଼ିଆ ମଲାବେଳକୁ ଘୁଁ ଘୁଁ ମିଶା ଗୁଣୁଗୁଣିଆ ଶବ୍ଦଟା ମୁଣ୍ଡ ଭିତରେ ପଶି ନିଦକୁ ଯେମିତି ଦୋହଲାଇ ଘଉଡ଼ି ଦେଉଛି । ଅଭିରାମ ମିଶ୍ରେ ଓଦା ଗାମୁଛାରେ ପିଠି ଉପରୁ ମାଛି ହୁରୁଡ଼ାଇ କହିଲେ— ଏତେ ବଡ଼ କଲେଜପଢ଼ା ପିଲାଟାଏ, ଗତ ବୋଲିଲା ପରି କ'ଣ ପାଠ ପଢ଼ୁଛୁ ?

ଅତି ବାଧ ପିଲା ପରି ପ୍ରଣବ ଗୁଣୁଗୁଣୁ ବନ୍ଦ କଲା । ଏଥର ମାଛି ଓ ପଙ୍ଖାର ଶବ୍ଦ ସତ୍ତ୍ୱେ ନିଶ୍ଚିନ୍ତ ହୋଇପଡ଼ି ବୁଢ଼ା କହିଲେ—ବିଶୁ ଆମର ପଢ଼ିବ ଯେ ମନେ ମନେ—ପିଲାଦିନୁ ସେମିତି । ବହିକି ଅନେଇଥିବ, ପୃଷ୍ଠାପରେ ପୃଷ୍ଠା ଓଲଟୁଥିବ । ଘଣ୍ଟାକରେ ବହି ଶେଷ । ମୁଁ ପଚାରିବ, କରେ ପଢ଼ୁଥିଲୁ ନା ବହିକି ଅନେଇଥିଲୁ ? ସେ କହିବ—

ପ୍ରଣବ ମଝିରୁ ବିରକ୍ତ ସ୍ୱରରେ କହିଲା—ଅଜା, ମୁଁ ମନେ ମନେ ପଢ଼ିଲାବେଳକୁ ତମେ ତ ଗପିବ ଯେ ପଢ଼େଇ ଦେବ ନାହିଁ ।

ଏଥର ଚଢ଼ା ସ୍ୱରରେ କଡ଼ ଲେଉଟାଇ ବୁଢ଼ା କହିଲେ—ହଉ ହଉ, ପଢ଼ । ଦେଖିବାନାଇଁ ପଢ଼ି କେମିତି ଦୁନିଆଁଟା ଓଲଟେଇ ଦେବୁ !

ପ୍ରଣବର ପାଠବହି ପଢ଼ୁନ ଥିଲା । ବିଜୟ ଘରୁ ଆଣିଥିବା ଇଂରାଜୀ ଫିଲ୍ମ ମାଗାଜିନ୍‌ଗୁଡ଼ିଏ ଜାଣିଶୁଣି ଗୁଣୁଗୁଣୁ ହୋଇ ପଢ଼ୁଥିଲା ଅଜାଙ୍କ ମନରେ ବିଶ୍ୱାସ ଜନ୍ମାଇବା ଲାଗି । ଗରମରେ ଅଜାଙ୍କୁ ନିଦ ହୁଏନାହିଁ । ପୁଅ ବିଦେଶରୁ

ପଠାଇଥିବା ମୋଟା ଗଦି ସ୍ପ୍ରିଙ୍ଗ୍ ଦିଆ ଖଟ କାନ୍ଥକଡ଼କୁ ଘଷା ହୋଇ ପଡ଼ି ରହିଥାଏ । ସକାଳୁ ପାଣି ଢଳାଯାଇ ଶୀତଳ କରାଯାଇଥିବା ସିମେଣ୍ଟ ଚଟାଣରେ ଶୋଇ ଅଜା ଏକଡ଼ ସେକଡ଼ ହୁଅନ୍ତି ଦ୍ୱିପହର ସାରା, ନାଲି ଗାମୁଛାରେ ବାରମ୍ବାର ପାଣି ଢାଳି ଓଦା କରନ୍ତି, ପଙ୍ଖାର ସ୍ପିଡ଼୍ ବେଶି କମ୍ କରନ୍ତି । ଅଜାଙ୍କ ଆଖି ବୁଜି ହୋଇଆସିବା ଦେଖି ପ୍ରବୀର ଏଥର ନିଶ୍ଚିନ୍ତରେ ଚନ୍ଦ୍ର-ତାରକାଙ୍କ ପ୍ଲାଷ୍ଟିକ୍ ଚକ୍କଣ ଦେହ ଦେଖିବାରେ ମନଦେଲା ।

ଆଇ. ଏ. ପରୀକ୍ଷାର୍ଥୀ ପ୍ରବୀର । ଟେଷ୍ଟ ପରବର୍ତ୍ତୀ ଫାଙ୍କା ଲମ୍ବା ଦ୍ୱିପ୍ରହର-ଗୁଡ଼ିକ କେମିତି ଘରେ କଟାଇବ ଜାଣିପାରେ ନାହିଁ । ବାପାଙ୍କ କଡ଼ା ତାଗିଦ : ଘରେ ବସି ପଢ଼ିବୁ । ଏଣେ ତେଣେ ଛତରା ଟୋକାମାନଙ୍କ ସାଙ୍ଗେ ବୁଲିବାକୁ ହେବନାହିଁ । ପରୀକ୍ଷା ଆଉ କେତେଦିନ ରହିଲା ?

ଜଏଣ୍ଟ୍ ଷ୍ଟଡ଼ି କରିବ ବୋଲି ବିଜୟ ଆସୁଥିଲା ଦିନାକେତେ । ତା'ର ବାପା ମନାକରି ଦେଲେ, କହିଲେ—ତେର୍ ବୁଝିଚି ସେ ବାଜୁଙ୍ଗା ଟୋକା ସାଙ୍ଗେ ମିଶି ଯାହା ପାଠ ପଢ଼ୁଥିବୁ । ଘଣ୍ଟାଏ ଖଣ୍ଡେ ଜବରଦସ୍ତି ବହି ପାଖରେ ବସିଲା ପରେ ପ୍ରବୀର ହାଇମାରି ଭିଡ଼ମୋଡ଼ ହୁଏ, ବାରିଆଡ଼ୁ ଘେରାଏ ବୁଲି-ଆସିବାପାଇଁ ଗୋଡ଼ ଦି'ଟା ଘୋଳେଇ ହୁଏ । ଅସମୟରେ ଚା' ମିଳିବନି, ସିଗାରେଟ୍ ପାଇଁ ପଇସା ନ ଥାଏ । କୂଅମୂଳେ ଏଣେତେଣେ ଅନେଇ ବଡ଼ଟିଏ ଟାଣେ । ଗଛର କଞ୍ଚା ଆମ୍ବକୁ ଟେକା ମାରେ । ରୋଷେଇଘର ଝରକା ପାଖରୁ ବୋଉର ଝାଇଁଝାଇଁଆ ଗଳା ଶୁଭେ—ଆରେ ବୀର, କାହିଁକିରେ ବାପା ଛୁଞ୍ଛାଟାରେ ଟହଲ ବୁଲୁଚୁ ? ତୋ ପରୀକ୍ଷା ପରା ମୁଣ୍ଡ ଉପରେ ? ଛୋଟ ପିଲା ହୋଇଚୁ ସେ କାନଧରି ଆକଟିବ ?

ପ୍ରବୀର ସେଇଠୁ ବହିପତ୍ର ଗୋଟେଇ କରି ବାହାରି ପଡ଼େ—ଯାଉଚି ବୋଉ, ମାମୁଁଘରେ ପଢ଼ିବ ପଙ୍ଖାତଳେ । ଏଠି ବଡ଼ ଗରମ, ପାଠଗୁଡ଼ା ଜମା ମୁଣ୍ଡରେ ପଶୁନି । କଲେଜରେ ଆମର ପ୍ରତି କ୍ଲାସ୍ ରୁମ୍‌ରେ ପଙ୍ଖା—ପାଠ ସବୁ ଆପଣା ଛୁଏଁ ମନେ ରହିଯାଏ ସେ ଥଣ୍ଡା ପବନରେ ।

ଘରୁ ବାହାରିବାବେଳେ ବୋଉର ଝାଇଁଝାଇଁଆ ଆଦେଶ ପୁଣି ଥରେ ଶୁଭେ—ମାମୁଁଘରକୁ ଯିବୁ ବୀର, ଏଣେତେଣେ ଯିବୁ ନାହିଁ କହିଦେଉଚି ।

ମାମୁଁଙ୍କ ଘର ବ୍ୟତୀତ ଏଣେ ତେଣେ ବର୍ତ୍ତମାନ ଯିବାର ସାହସ ଅବଶ୍ୟ ପ୍ରଭାକରର ନାହିଁ । ଘରୁ କୌଣସିମତେ ମୁକ୍ତ ପାଇବା ଲାଗି ସେ ମାମୁଁଙ୍କ ଘରକୁ ଯିବାର ଆକାଂକ୍ଷା କରେ—କିଛି ନ ହେଲେ ପଙ୍ଖା ପବନ ତ ଅଛି; କିନ୍ତୁ ଏଠି ସନ୍ଧ୍ୟାଠୁ ପରେ ପଙ୍ଖା ଲାଗିଥିବା ସେଇ ଗୋଟିକ କୋଠରୀରେ ସାଢ଼େ ଦଶଟାଯାକେ ଅଜା ଓ ସେ ସହାବସ୍ଥାନ କରିବା ଧୈର୍ଯ୍ୟସାପେକ୍ଷ—ଦୁହିଁଙ୍କ ପାଇଁ ।

ଅଭିରାମ ମିଶ୍ର କଡ଼ ଲେଉଟାଇଲେ । ନିଦ ସହଜରେ ଆସେ ନାହିଁ ଦ୍ୱିପ୍ରହରେ । ସ୍ୱଗତୋକ୍ତି କଲେ—ଶଳା ମାଛି, ମଣିଷକୁ ଶୁଆଇ ଦେଉନାହାନ୍ତି । ପଙ୍ଖା ପବନ ସତ୍ତ୍ୱେ ଗାମୁଛାରେ ବିଞ୍ଚି ହେଇପଡ଼ି ଯୋଗକଲେ—ଓହୋ ! ଆଜିଠୁ ଏ ଗରମ ! ଖରାଦିନଟା ସାରା ତ ଅଛି ।

ପ୍ରଭାକରଠାରୁ କୌଣସି ପ୍ରତିକ୍ରିୟା ପ୍ରକାଶ ପାଇଲା ନାହିଁ । ଅନ୍ୟ ଦିନ ତା ଗୁଣୁଗୁଣୁ ଶୁଭିବା ବନ୍ଦ ହେଲା ମାନେ ଟେବୁଲ୍ ଉପରେ ବହି ପୃଷ୍ଠାରେ ମୁଣ୍ଡରଖି ସେ ଶୋଇ ଯାଇଥିବ । ଆଜି କିନ୍ତୁ ଏକ ଲୟରେ ପିଇଯାଉଛି ସେ ବହିକୁ । ବୁଢ଼ାଙ୍କର ବିଶ୍ୱାସ ହେଲା ନାହିଁ । କଅଣ ପଢ଼ୁଛି ସେ ? କଅଣ ଟୋକାଟାର ମନ ଭିତରେ ଖେଳୁଛି ଭଗବାନଙ୍କୁ ଜଣା; ଏମିତି ପଢ଼ିବା ପିଲା ତ ସେ ନୁହେଁ । ତେବେ ବିନା କିଛି ପ୍ରମାଣରେ ତାକୁ ଆକଟିବେ ବା କେମିତି ? କହିଲେ—କିରେ ବାପା ଶର, ଆଜି କ'ଣ ପାଠରେ ଘରି ମନ !

ପ୍ରଭାକର ତତ୍‌କ୍ଷଣାତ୍ ଅନ୍ୟ ଲମ୍ବା ଖାତାଟାଏ ଟାଣି ଆଣିଲା, ସାମ୍ନାରେ ପଡ଼ିଥିବା ବହିର ଛବିମାନଙ୍କୁ ଢାଙ୍କିବା ଲାଗି । ଉତ୍ତରଟାଏ ଖୋଜି ବାଆଁରେଇ ଅଜାଙ୍କ ମୁହଁକୁ ଚାହିଁଲା—ନା, ରାଗ ବା ତାଚ୍ଛଲ୍ୟ କିଛି ଜଣାପଡ଼ୁନି । ଅଜା ବୋଧେ ଗପିବା ମୁଡ୍‌ରେ ଅଛନ୍ତି । ତେବେ ଅଜାଙ୍କ ଗପ ବା ତାଙ୍କ ରାଗଠୁ ପ୍ରଭାକରପାଇଁ କୋଉ ଅଧିକ ଶ୍ରେୟ ? ଏଥର ସେ ମୁହଁରେ ଏକାଗ୍ର ଭାବକୁ ଫୁଟାଇ ବହିକୁ ଚାହିଁଲା ।

ତଥାପି କିଛି ଉତ୍ତର ନ ପାଇ ବୁଢ଼ା ଏଥର ଅଧା ସାକୁଲେଇଲା, ଅଧା ଟିହାଇଲା ପରି କହିଲେ—ପଢ଼ ବାବା, ମନଦେଇ ପଢ଼ । ଏଇ ଘରେ ପାଠ ପଢ଼ି ମାମୁଁ କେତେବଡ଼ ମଣିଷ ହେଇ ବାହାରିଲା ଜୀବନରେ ! ମୋ'ଓର ଶାସନରେ ତ

ମଣିଷ ହେଲ । ତୋତେ ବି ମୁଁ ମଣିଷ କରିଦେବି । ପାଠ ପଢ଼ିଲେ ଭାଗ୍ୟ ଫିଟିଯିବ ଆପେ ଆପେ, ବୁଝିଲୁ ? ଆଉ ବାପ ପରି ଟାଉଟର ହେବୁ ତ କିଛି ହେବନାହିଁ ।

ପ୍ରବୀରର ବେଳେବେଳେ ମନେହୁଏ, ଅଜା ତାଙ୍କୁ ହିଁ ନିଜ ସମ୍ପତ୍ତିତକ ଦେଇପାରନ୍ତି—କେବେ ଉଇଲ୍ କରିବାକୁ ବସିଥିବା କଥା ଜଣା ନ ଥିଲେ ବି ବେଳଅବେଳରେ କଥାବାର୍ତ୍ତାରେ ସୂଚେଇ ଦିଅନ୍ତି; କିନ୍ତୁ ପ୍ରତିଥର କଥାଟା ତାଙ୍କ ମୁହଁକୁ ଆସିଲାକ୍ଷଣି କଣ ହୁଏ କେଜାଣି, ନିଶ୍ଚେ ତା' ବାପକୁ ଖୁଣ୍ଟା ଦେଲାପରି କଥାଟିଏ କହିବେ । ସେ ସେମିତି ଟେବୁଲ୍‌ରେ ମୁହଁପୋତି କହିଲା—ମାମୁଁଙ୍କ ପରି ପାଠ ଯଦି ପଢ଼ିବି, ଏଇଠି ପଡ଼ିରହିବି କାହିଁକି, ବିଲାତ ଆମେରିକା କୁଆଡ଼େ ଗୋଟାଏ ଯିବି ନା !

ପ୍ରବୀର ପିଲାଦିନୁ ତା' ମାମୁଁଙ୍କୁ ଦେବତା ପରି ଭାବେ, ତା' ଅଭିରାମ ମିଶ୍ର ଜାଣନ୍ତି; କିନ୍ତୁ ବିଲାତ ଯିବା କଥା ବି ତା'ମୁଣ୍ଡରେ ପଶିଲାଣି—ଥଟ୍ଟାମିଶା କରି କହୁ ପଛେ, ସେ ଶୁଣି ଅବାକ୍ ହେଲେ । ଟିକିଏ ରହିଯାଇ ଜଳିଲା ଆଖିରେ ତାଙ୍କୁ ଅନାଇ କହିଲେ—କ'ଣ ହେଲା ? ବିଲାତ ଯିବୁ ତୁ ? ତୋ' ମୁହଁରେ ଲାଜନାହିଁ ।

ପ୍ରବୀରକୁ ଚିଡ଼ ମାଡ଼ିଲା : ପ୍ରଥମତଃ ମାଗାଜିନ୍‌ର ଛବିଗୁଡ଼ା ଅକାରଣେ ତଙ୍କାହେଇ ପଡ଼ିଛନ୍ତି, ଆଉ ଦ୍ୱିତୀୟତଃ ଅଜାଙ୍କର ତା'ପ୍ରତି କଥା କଥାକେ ଏଇ ହେୟଜ୍ଞାନ । ତାଙ୍କ ଧାରଣା ବିଲାତ ଯିବା ବିଦ୍ୟାର୍ଜନ ତଥା ଅନ୍ୟାନ୍ୟ ଯୋଗ୍ୟତାର ଉଚ୍ଚତମ ସୋପାନରେ ପହଞ୍ଚିବାର ଶ୍ରେଷ୍ଠତମ ପ୍ରମାଣ । କହିଲା—ବିଲାତ, ଆମେରିକା ଖାଲି ଗୁଡ଼ାଏ ପାଠ ପଢ଼ିଲେ ହିଁ ଯାଇହେବ ବୋଲି ଭାବିଛ କି ଅଜା ? ପଲ ପଲ ଅଶିକ୍ଷିତ ପଞ୍ଜାବୀ ଦଳ ସେଠିଯାଇ ରହିଛନ୍ତି—ଆମେରିକାରେ ଯିଏ ସବୁ କଳକାରଖାନାରେ ମଜୁରିଆ କାମ କରନ୍ତି, ସେମାନେ କୋଠାରେ ରହନ୍ତି, ଗାଡ଼ି ଚଢ଼ନ୍ତି ।

ଏସବୁ ବୁଢ଼ାଙ୍କର ବିଶ୍ୱାସ ହୁଏନାହିଁ । ଶୁଣିଲେ ମନଟା ପିତା ହୋଇଯାଏ । ପ୍ରଭୁ, ମିଛ ହୋଇଥାଉ ଏସବୁ । ଆଲୋଚନାକୁ ଆଉ ବଢ଼ିବାକୁ ନ ଦେଇ କହିଲେ—ହଉ ହଉ, ଯା' ସେଇ କାରଖାନା ମଜୁରିଆ ହେବୁ ।

ଅଜା ଟିକିଏ ଚିଡ଼ିଗଲେ ତାଙ୍କ କଥାରେ ଯୁକ୍ତିଯୁକ୍ତତା ଆଉ କିଛି ରହିନାହିଁ । ବୁଢ଼ା ବି ପ୍ରଭାତର ଓଠ ଚିପି ଲୁଚୁଥିବା ହସକୁ ଦେଖିଲେ ଓ ଅନ୍ୟଆଡ଼େ ମୁହଁବୁଲାଇ, ଗୁମ୍ ହୋଇ, ତାଙ୍କର ଉଠି ଆସୁଥିବା ରାଗକୁ ହଜମ କରିବାକୁ ଚେଷ୍ଟାକଲେ । ପ୍ରଭାତକୁ ଦି'ପହରେ ଆସି ପଢ଼ାପଢ଼ି କରିବାକୁ ସେ ନିଜେ କହିଥିଲେ । ବିଶୁବୋଉ ତ ଫୁର୍ସତ୍ ପାଇଲେମାନେ କାହାସଙ୍ଗେ ଯାଇ ଗପ ଯୋଡ଼ିଥିବ । ଘରଟା ଦି'ପହରେ ବଡ଼ ନିଚ୍ଛାଟିଆ, ଖାଁ ଖାଁ ଲାଗେ । ହେଲେ ପ୍ରଭାତ ଟୋକାଟା ବେଳେବେଳେ ଏମିତି ଉପରମୁହାଁ, ବେଖାତିରିଆ କଥାବାର୍ତ୍ତା କରେ । ହେଲତ, ଆମେରିକା ସହରେ ଯିବ ବୋଲି କହୁନ ସେ ମାମୁଁଙ୍କୁ ତା'ର ଥଟ୍ଟା କରୁଚ । ପ୍ରଭାତ ପଢ଼ୁଥିବା ଟେବୁଲର ସାମ୍ନା କାନ୍ଥରେ ଥିବା ବିଶ୍ୱନାଥର ଫଟୋଆଡ଼େ ତାଙ୍କର ଦୃଷ୍ଟି ଚାଲିଗଲା । ସୁନ୍ଦର, ଟାଇ ପିନ୍ଧି ଗମ୍ଭୀର ହସରେ ସାହେବ ପରି ଦିଶୁଚି ତାଙ୍କ ପୁଅ । ଏ ଘର, ଏ ଚ୍ଛୋଟିଆ ଅସନା ସହର, ବିଶ୍ୱନାଥର ରହିବାପାଇଁ ଯୋଗ୍ୟ ଭଲା ? କୋଉ ଲୋଭରେ ଏ ଦେଶକୁ ଅବା ସେ ଫେରିଆସନ୍ତା ?

—ହରି ହେ, ପତିତପାବନ ! ଆଉ କେତେଦିନ ?

ବୁଢ଼ା ଅଭ୍ୟାସବଶତଃ କେତେପଦ ବୋହିଗାଇଲେ ଓ ଉଠି ପ୍ରଭାତକୁ ପଛକରି ବସି ସୁରେଇରୁ ପାଣି ଗଡ଼ାଇ ପିଇଲେ । ପ୍ରଭାତ କେତେବେଳୁ ଉପର ଖାତା ଘୁଞ୍ଚାଇ ମାଗାଜିନ୍ ପୃଷ୍ଠାର ଝଲମଲ ଦେହମାନଙ୍କରେ ବୁଡ଼ିଯାଇଥିଲା ।

ଅଭିରାମ ମିଶ୍ର ଦେଖିଲେ ଆଉ ଶୋଇବା କମ୍ବା ପ୍ରଭାତର ସାଙ୍ଗରେ ଖୁମ୍ପିଗପ ଯୋଡ଼ିବାର ଆଶା ବୃଥା । ସେ ଝୁଙ୍କିପଡ଼ି କାନ୍ଥର ତଳ ଥାକରୁ ବହୁ ବ୍ୟବହୃତ ତେଲଚିକଟା ଭାଗବତ ଖଣ୍ଡିକ ଟାଣିଆଣିଲେ । କାନ୍ଥକୁ ଆଉଜି ବସି ଖୋଲୁ ଖୋଲୁ ବହିରେ ପୃଷ୍ଠା ଚିହ୍ନକରି ରଖାଯାଇଥିବା ବିଶ୍ୱନାଥର ପୁରୁଣା ଚିଠିଟି, ଏଠି ବହିଟି ଖୋଲିଲା । ମନକୁ ମନ କହିଲେ—ବିଶୁଟା ବହୁତଦିନୁ ଚିଠି ଖଣ୍ଡିଏ ଦେଇନାହିଁ । ଜୁଲାଇବେଳକୁ ଆସିବ ବୋଲି ତ ଲେଖିଥିଲା ।

ପୁରୁଣା ଚିଠିଟା ଖୋଲି ଆଉ ଥରେ ପଢ଼ିଲେ ସେ । କେତେ ଭକ୍ତିରେ ସେ ଚିଠି ଲେଖା, କେତେ ମାର୍ଜିତ ତା'ର ଭାଷା ! ଲେଖିଚ ତା' ପୁଅ, ଝିଅ ପ୍ରଣାମ ଜଣାଇଚନ୍ତି, ତାଙ୍କର ବି ଚିଠି ଲେଖିବାର ଇଚ୍ଛା ଯେ ତାଙ୍କୁ ଓଡ଼ିଆ ଜଣାନାହିଁ । ବୁଢ଼ାଙ୍କ ଆଖି ପୂରି ଆସି ଚିଠି ଜାଲ୍‌ଜାଲୁଆ ଦେଖାଗଲା ।

ବିଶ୍ୱନାଥର ବାହାଘର କଥାଟା ସେ ଜଣାଶୁଣା ସମସ୍ତଙ୍କୁ ଶୁଣାଇ ସାରିଛନ୍ତି । ତଥାପି ସବୁକଥା ପୁଣି ଭାବିଗଲେ ଛୁଇଁ ଦୂରିଗଲା ପରି ଲାଗେ । ତା'ର ବିଦେଶ ଯିବାର ପାଞ୍ଚବର୍ଷ ପୂରି ଆସୁଥାଏ । ଯେତେ ଥର ଚିଠିରେ ସେ ବାହାଘର କଥାଟା ଉଠାନ୍ତି, ସେ ଲେଖେ—ବାପା, ଏତେ ତରବର କାହିଁକି, ପାଠ ତ ସରିନି, ଏବଂ ପାଠ ଯେତେବେଳେ ସରିଲା— ଭଲ ଷ୍ଟାଇପ୍ସୀ ଗୃହକର୍ତ୍ରୀଟିଏ ମିଳିଯାଉ । ବହୁତ ଲୋକ ଏଣିକି ତାଙ୍କୁ କହିବାକୁ ଆରମ୍ଭକଲେ—ପୁଅର ଆଶା ଛାଡ଼ିଦିଅ, ନିଶ୍ଚେ ଗୋରୀ ଟୋକୀଟିଏ ବାହାହୋଇ ରହିଗଲାଣି । ଆଜିକାଲି ପରା ବାହାସାହା ହୋଇ ପିଲାଛୁଆ ଛାଡ଼ି ଯାଇଥିବା ଲୋକ ଗୋରୀ ଝିଅଙ୍କ ପାଲରେ ପଡ଼ିରହି-ଯାଉଛନ୍ତି ସେଆଡ଼େ । ଆହୁରି କେତେକ କହିଲେ—କଟକର ଅମୁକ ବାବୁଙ୍କ ପୁଅ ଆମେରିକାରୁ ଫେରିଚି, ତମ ପୁଅ ଆଉ ଗୋରୀ ବୋହୂଙ୍କୁ ଦେଖି ଆସିଛି । ସେ ଶେଷକୁ ମନକଥା ସବୁ ଖୋଲି ବିଶୁକୁ ଲେଖିଲେ—ବିଶୁ, ସଫା ସଫା କହ, ତୋର ଫେରି ଆସି ଏଠି ବାହାସାହା ହେବାର ମନ ଅଛି ନା ନାହିଁ ? ବିଶୁ ଲେଖିଲା— ବାପା, ମୋର ଅତି ଭଲ ଗୃହକର୍ତ୍ରୀଟିଏ ହୋଇଯାଇଚି । ତମେ କହିବ ଯଦି ସବୁ ଛାଡ଼ିଛୁଡ଼ି ଏଇନା ଚାଲିଯିବି ତମ ପାଖକୁ; କିନ୍ତୁ ମୁଁ ଜାଣେ ମୋ' ପାଇଁ ତମ ମନରେ କେତେ ଆଶା, କେତେ ଗର୍ବ । ଆଜି ମୁଁ ଯାହା ହୋଇଚି କେବଳ ତମରି ଆଶୀର୍ବାଦରୁ । ତମେ କ'ଣ ମୋର ଆହୁରି ଉନ୍ନତି, ଖ୍ୟାତି ଚାହିଁବ ନାହିଁ ? ଏତେ ଯୋଗ୍ୟତା ଅର୍ଜନ କରି ଫେରିଯିବି ପୁଣି କୂଅବେଙ୍ଗ ହେବାକୁ ?

କେଉଁ ବାପ ଏଥି'ପରେ ଆହୁରି କହିବ 'ଶୀଘ୍ର ଫେରିଆ' ବୋଲି ? ଆହୁରି ଲେଖିଥିଲା—ତମେ ବୋହୂ ଦେଖି ଠିକ୍ କର, ଆଗରୁ ସମସ୍ତ ରଖି ଲଗ୍ନ, ବାର ଜଣାଇଲେ ମୁଁ ଛୁଟିନେଇ ଯିବି । ହଁ, ବୋଉକୁ କହିବ ପାଠପଢ଼ା ଝିଅଟିଏ ଦେଖନ୍ତା; ଯେମିତି ଏଇଠି ଚଳିବାକୁ ମୋର ସୁବିଧା ହୁଅନ୍ତା । ସେ ଆସି ବେଦିରେ ବସିଲାଯାକେ ହିଂସୁକ ଲୋକେ ବିଶ୍ୱାସ କରୁ ନ ଥିଲେ—ବେଦିଟି ରହିଯାଇଚି ଘର ସାମ୍ନାରେ, ବିଶ୍ୱନାଥର କର୍ତ୍ତବ୍ୟନିଷ୍ଠାର ସାକ୍ଷୀ ।

ତାଙ୍କ ପ୍ରରୋଚନାରେ ଥରେ ବିଶୁବୋଉ ପୁଅକୁ ପଚାରି ଥିଲେ—ଆମେ ମଲାପରେ ଶ୍ରାଦ୍ଧ କେମିତି ପ୍ରତିବର୍ଷ କରିବୁରେ ବାପା ? ସେଠି ବିଦେଶରେ ବ୍ରାହ୍ମଣ-ଭୋଜନ ପାଇଁ କ'ଣ ବ୍ରାହ୍ମଣ ମିଳିବେ ?

ବିଶ୍ୱନାଥ ହସି ଉତ୍ତର ଦେଉଥିଲେ—ଏତେ କଥା ଆଗରୁଇ ଭାବି ତୁ କାହିଁକି ବ୍ୟସ୍ତ ହେଉଛୁ ବୋଉ ? ମୁଁ କ'ଣ ଆମ ଦେଶରୁ ଏକୁଟିଆ ସେଠି ରହିବି ? ବିଦେଶରେ ମୋ'ପରି ବହୁତ ଲୋକ ଏଆଡ଼ୁ ଯାଇ ରହିଛନ୍ତି । ଖାଲି ଏତିକି ଜାଣିରଖ୍ ଯେ ତୋ ପୁଅ ତା' କର୍ତ୍ତବ୍ୟରେ ହେଳା କେବେହେଲେ କରିବ ନାହିଁ, ଯେଉଁଠି ଥିଲେ ବି ବାପ, ମା'ଙ୍କୁ ଭୁଲିବ ନାହିଁ ।

କାହିଁକି କେଜାଣି ବିଶୁବୋଉ ଏତିକିରେ କାନ୍ଦ ପକାଉଥିଲେ ।

ଖାଲି ସେତିକି ନୁହେଁ, ଗତ କେତେ ବର୍ଷ ହେଲା ସେ ଅନେକ ଥର କହିଲଣି, ବାପା ଖାଲି ଘରୁ ବାହାରିବାକୁ ରାଜି ହେଲେ ସେ ତାଙ୍କୁ ଉଡ଼ାଜାହାଜରେ ବସାଇ ନେଇ ଦେଶ ବିଦେଶ ବୁଲାଇ ଦେଖାଇ ଦିଅନ୍ତା । ତାଙ୍କ ଶ୍ୱାସର ଚିକିତ୍ସା ବି ବିଦେଶରେ ହୋଇପାରିବ । କେତେ ଜନ୍ମର ପୁଣ୍ୟରେ ଏମିତି ପୁଅ ମିଳେ ?

ତେବେ ତା' ସାଙ୍ଗେ ବିଦେଶ ବୁଲି ଯିବେ ବୋଲି ଭାବିଲା ମାତ୍ରେ ସେଇ ଗୋଟିଏ କଥା ହାତୁଡ଼ି ପାହାର ପରି ଦାଉଁକିନା ମନଭିତରେ ବାଡ଼େଇ ହୁଏ—ଯାଇଥିଲାବେଳେ ତାଙ୍କର ଯଦି କିଛି ହୋଇଯାଏ ? ସମ୍ପତ୍ତିର ତ କିଛି ଗୋଟାଏ ବ୍ୟବସ୍ଥା କରିଦେଇ ଯିବା ଦରକାର; କିନ୍ତୁ ଅଜାଗା ଘା' ପରି ଏଇ ଚିନ୍ତା ବିଷୟରେ ସେ ବିଶୁକୁ କହିବେ କେମିତି ଯେ ସେ ଆଉ କାହା ନାଁରେ ସମ୍ପତ୍ତିତକ କରିଦେବାକୁ ଚାହୁଁଛନ୍ତି ? ବିଶୁର ଯେ ଏ ସମ୍ପତ୍ତି ଉପରେ ଆଦୌ ଲୋଭ ନାହିଁ, ସେ ଜାଣନ୍ତି; କିନ୍ତୁ ତାଙ୍କ ମଲାପରେ ତାଙ୍କୁ ବିଶୁ ଭୁଲି ବୁଝିବ ନାହିଁ ତ ?

ଆଉ ତା'ପରେ ପ୍ରଶ୍ନ ହେଲା, ତେବେ କାହାକୁ ? ଶ୍ରୀଧରକୁ କି ?

ଅନେକ ଦିନ ତଳେ ପ୍ରଭାତ ତାଙ୍କୁ ପଚାରିଥିଲା—ଅଜା, ସମ୍ପତ୍ତିସବୁ କାହା ନାଁରେ କରିବ ?

—କ'ଣ କହିଲୁ ? ଅଷ୍ଟମ ଶ୍ରେଣୀ ପଢୁଆ ପ୍ରଭାତ ମୁହଁରୁ ଏକଥା ଶୁଣି ସେ ଅବାକ୍ ହେଲେ ।

—କାହା ନାଁରେ କରିବି ? କାହା ସମ୍ପତ୍ତି କି ଏସବୁ ? ତୋ ମାମୁଁର ନୁହେଁ କି ?

ପ୍ରଭାର ଶନାଦ୍ୱିଧାରେ ତାଙ୍କୁ ବୁଝାଇଲା ପରେ କହିଲା—ମାମୁଁଙ୍କର ଯେ, ସିଏ କ'ଣ ଆମେରିକାର ତାଙ୍କ ଏତେ ଆଉ୍‌ଡ଼ା, ଆରାମ ଛାଡ଼ି ଏଇଠି ରହିବାକୁ ଆସିବେ ? ତାଙ୍କ ପ୍ରୋଜେକ୍‌ଟର ଫଟୋରେ ଦେଖିନ, ତାଙ୍କ କୋଠା, ଗାଡ଼ି, ରାସ୍ତା—କି ସୁନ୍ଦର ସବୁ ସିନେମାଠୁ ବଳି । ସେ ସବୁ ଛାଡ଼ି ସେ ଆଉ ଏଠି ରହିବାକୁ ଆସିବେ ?

ବାପୁବୋଉ ଯେମିତି ଅତି ସହଜରେ ଉତ୍ତର ଦେଇଥିଲେ—ତା ମନକୁ ନ ପାଇଲେ ନାହିଁ, ବିକି ଭାଙ୍ଗିଦେଇ ସେଇଠିକି ଚାଲିଯିବ । ତା' ସମ୍ପତ୍ତି ତା' ହାତକୁ ଆସିଲେ ତେଣିକି ସେ ଯାହା କରୁ ।

ଅଭିରାମ ମିଶ୍ରଙ୍କର କଳ୍ପନା ଗଳା ରୁନ୍ଧି ଯାଇଥିଲା । ପ୍ରଭାର ପୁଣି ଗଡ଼ଗଡ଼ କରି କହିଗଲା -ଅଜା, ଏତେ ସମ୍ପତ୍ତି ତମେ ନିଜେ ହାତରେ ପରା କଲ, ତମ ପୁରୁଣା ଗାଁରୁ ଉଠିଆସି ? ଏଡ଼େ ବଡ଼ କୋଠା, ପୋଖରୀ—

ପ୍ରଭାର ଠିକ୍ ସେଇଠି କଥା ବନ୍ଦ କରିଥିଲା ଅଜାଙ୍କ ମୁହଁକୁ ଦେଖିଦେଇ —ହଠାତ୍ ପେଟ କାମୁଡ଼ିଲେ ମଣିଷ ଯେମିତି ବିଚକଟିଆ ମୁହଁ କରେ । ପ୍ରଭାରର ଆଶ୍ଚର୍ଯ୍ୟ ମୁହଁକୁ ଫୋପାଡ଼ିଲା ପରି କହିଲେ—ଯା' ପଢ଼ିବୁ ଯା । ତୋ' ମୁଣ୍ଡ କାହିଁକି ଏତେ ବଥଉଚି ? କୁଳାଙ୍ଗାର—

ପ୍ରଭାର ଅବଶ୍ୟ ସେଦିନ ସମ୍ପୂର୍ଣ୍ଣ ନୂଆ ଭାବନାଟାଏ ତାଙ୍କୁ ଦେଇ ଯେ ଚମକାଇ ଦେଇଥିଲା, ତା ନୁହେଁ । ବହୁତ ଥର କଥାଟା ତାଙ୍କ ମନକୁ ଆସି ସାରିଥିଲା, ଆଉ ସେ ଚପାଇ ଦେଇଥିଲେ ଯୋଳଟିଏକୁ ପଥର ବାନ୍ଧି ଗଭୀର ପାଣିରେ ବୁଡ଼ାଇ ଦେଲାପରି । ପ୍ରଭାରର ପରିଷ୍କାର କଥା ବାଟୁଳି ପରି ଯାଇ ସେ ବନ୍ଧା ଡୋର ଛିନ୍ଦାଇଦେଲା ଓ ଯୋଳଟି ଫକ୍ କିନା ଉଠିଆସି ପାଣି ଉପରେ ।

ସମ୍ପତ୍ତି କରିବାକୁ ତାଙ୍କୁ ଜୀବନସାରା ମେହେନତ ଲାଗିଗଲା—ସେଇ ଭିତରେ ଝିଅ ଦୁହିଁଙ୍କ ବାହାଘର ଖର୍ଚ୍ଚ ତାଙ୍କ ମୂଳଦୁଆ ଦୋହଲାଇ ଦେଇଥିଲା, ତା' ଉପରେ ପୁଣି ପୁଅର କଲେଜ, ହଷ୍ଟେଲ ଖର୍ଚ୍ଚ । ଜୀବନ ସରିଆସିଲାବେଳକୁ ପୁଅ ମଣିଷ ହେଇଛି, ସମ୍ପତ୍ତି ବି ହୋଇଯାଇଛି ନିଜ ଜୀବନରେ ସନ୍ତୁଷ୍ଟ ହେଲାଭଳି । ସମସ୍ତେ କହନ୍ତି—ଯା' ହେଉ, ପୁଅକୁ ଏଡ଼େ ବଡ଼ ମଣିଷ କଲ,

ତା'ପାଇଁ ସମ୍ପତ୍ତି ବି ଯଥେଷ୍ଟ ରଖିଦେଇ ଯିବ; କିନ୍ତୁ ସେ ଜାଣନ୍ତି ବଶୁ ଆଖିରେ ଏ ସମ୍ପତ୍ତି କିଛି ନୁହେଁ । ସେ ମଲାପରେ କିମ୍ବା ଦାନଧର୍ମ ଯଦି ନ କରିଦିଏ, ସବୁକିଛି ବିକିଦେଇ ତାକୁ ଟଙ୍କାରେ ପରିଣତ କରିଦେଲାବେଳେ ତା' ମନରେ ଟିକିଏ ହେଲେ ଖଟ୍‌କା ଲାଗିବ ନାହିଁ । ଏତେ କଷ୍ଟରେ ଗଢ଼ା ତାଙ୍କ ଦୁନିଆଁ— ଆଖି ପିଛୁଳାକେ କେଇ ବିଡ଼ା କାଗଜ ନୋଟ୍ । ଏ ସହରରେ 'କିଛି ନୁହେଁ'ରୁ ଉଠି ସେ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ହୋଇଥିଲେ । ବିନୁ ଟଙ୍କା କେତେଟା ନେଇ ଗ୍ଲଲିଯିବ, ତାଙ୍କ ଅସ୍ତିତ୍ୱ ଲିଭିଯିବ ଏଇ ଶିଳ୍ପା ସଂସାରରୁ । ଆଉ କାହାକୁ ନ ପାଇ ଦି'ପ୍ରହରେ ବେଳେବେଳେ ପ୍ରବୀରକୁ ସେ କହନ୍ତି ତାଙ୍କ ମନର ଆଶଙ୍କା କଥା । ଭାବ ଚିନ୍ତ ସମାଧାନଟିଏ କଲାଭଳି ଥରେ ପ୍ରବୀର କହିଥିଲା ସାନ୍ତ୍ୱନାଦିଆ ସ୍ୱରରେ—ମାମୁଁ, ତମ ନାଁରେ କିଷ୍ଟେ ସ୍କୁଲ୍ କି ପାଠାଗାର କି କ'ଣ ଗୋଟାଏ କରିବେ ଅଜା । ବୁଢ଼ା ଚିଡ଼ି ଉଠିଥିଲେ– ସେସବୁ ମୋର ଦରକାର ନାହିଁ । ପାଠାଗାରଟିର ନାଁ ମୋ ନାଁ ରଖିଲେ ମୋତେ କ'ଣ ମିଳିବ ? ବହି ପଢ଼ିଲା ଲୋକେ କ'ଣ ମୋତେ ମନେ ପକାଇ ପଢ଼ୁଥିବେ ? ବାଜେ କଥା—

କାହାକୁ ସେ ସମର୍ପି ଦେଇ ଯାଇ ପାରନ୍ତେ ବିଶ୍ୱାସ କରି—ଯିଏ ତାଙ୍କୁ, ତାଙ୍କ ହାତଗଢ଼ା ଦୁନିଆଁକୁ ଜୀଆଇଁ ରଖନ୍ତା ସ୍ନେହରେ, ସମ୍ମାନରେ, ଦାୟିତ୍ୱରେ ? ସତେ କି ମଲାପରେ ବି ତାଙ୍କର ନାଡ଼ ଗ୍ଲଲୁଥାନ୍ତା ଏଇ ଘର ବଗିଚ୍ଚ ଦେଇ ।

ପ୍ରମିଳା, ବିମଳା ତାଙ୍କର ଦୁଇ ଝିଅ । ତେବେ ଝିଅମାନେ ସିନା ତାଙ୍କ ନିଜର, ତାଙ୍କୁ ଦେଲେ ସେମାନଙ୍କ ହାତରେ ତ ଆଉ ସମ୍ପତ୍ତି ରହିବ ନାହିଁ ! ଆଉ ଏତେ ମେହେନତ୍ କରିଥିଲେ କ'ଣ ଜୋଇଁ ଦୁହିଁଙ୍କ ପାଇଁ—ଯେଉଁ ଜୋଇଁ ଦୁହେଁ ନିଜ ନିଜ ଧନ୍ଦାରେ ବ୍ୟସ୍ତ ଥିଲେ ସେ ହାଡ଼ଭଙ୍ଗା ଖଟିଲାବେଳେ ?

ଥରେ ଅଧେ ସମସ୍ୟାଟି ଉଠେଇଚନ୍ତି ବଶୁବୋଉଙ୍କ ଆଗରେ । ସେ ତାଙ୍କଠି କିଛି ପାଗଳାମି ଆବିଷ୍କାର କଲାପରି କହନ୍ତି—କ'ଣ କହିଲ ? ନିଜ ପୁଅ ଥାଉ ଥାଉ କାହାକୁ ସମ୍ପତ୍ତି ଦେବ ଭାଲି ହେଉଚ ? ପୁଅ ତମର କି ଦୋଷ କଲା ? ଏ କଥା ଲୋକେ ଶୁଣିଲେ କ'ଣ କହିବେ ?

ବୁଢ଼ା ଟିକଏ ଦବଯାଇ ନିଜ ସପକ୍ଷରେ ଓକିଲତି କଲାପରି ଆରମ୍ଭ କରନ୍ତ—ତୁମେ ବୁଝୁନ । ବଶୁର ଦୋଷ ବାଛି ମୁଁ ତାକୁ କାଟି ନ ଦେବି ସେ କଥା ନୁହେଁ......

ବାକ୍ୟଟି ପ୍ରାୟ ସେଇଠି ମିଳେଇଯାଏ । ବଶୁବୋଉଙ୍କୁ ସେ କଥାଟା ବୁଝାଇ ପାରିବେ ନାହିଁ । ନାନା ରୋଗ ସବୁଦିନେ ଭୋଗୁଥିବାରୁ ଯଦିଓ ସେ ଆଗ ଚାଲିଯିବେ ବୋଲି ବୁଢ଼ାଙ୍କର ମନେହୁଏ, ତାଙ୍କ ନିଜର ସେଥିକି ଚିନ୍ତା ନଥାଏ—କେଉଁ ଅପୂର୍ବ ବଳରୁ କେଜାଣି ? ସମ୍ପତ୍ତି କାଗଜକୋଠ୍ ଧୋଇଯିବା କଥା ଶୁଣି ସେ କହିବେ—ଆମେ ତ ନ ଥିବା, ସେକଥା କାହିଁକି ତମର ଚିନ୍ତା ପଡ଼ିଛି ? ଆମ ପୁଅ, ଯାହା କରିବ ଆମ ଅନ୍ତେ କରୁ ।

ଏଇ ଆମେ ନ ଥିବା, ଆଦୌ ଜମାରୁ ନ ଥିବା କଥାଟାକୁ ସେ ଗ୍ରହଣ କରିପାରନ୍ତି ନାହିଁ । ପ୍ରକୃତରେ ଅଭିରାମ ମିଶ୍ର ବେଳେବେଳେ ଭାବି ଅଧା ଦୁଃଖିତ, ଅଧା ଆମୋଦିତ ହୁଅନ୍ତି ଯେ ତାଙ୍କ ଛଡ଼ା ଆଉ କାହା ଆଖିକୁ କଥାଟା ଅଖାଡ଼ୁଆ ଲାଗୁନାହିଁ । ଦାଣ୍ଡ ବାରଣ୍ଡାରେ ବସି ଅନେକ ଥର ସେ ଉପରେ ପଡ଼ି ଆଲୋଚନାଟି କାହା ସାଙ୍ଗେ ଜମାଇବାକୁ ଚେଷ୍ଟା କରନ୍ତି—ସତରେ କଥା ଅଛି, 'ପୁଅ ଯଦି ଯୋଗ୍ୟ ଧନ କାହିଁ ପାଇଁ ସଞ୍ଚୁ' । ଆମ ବଶୁପାଇଁ ମୋର ଏଡ଼େ କଷ୍ଟରେ ଯାଇଥିଲା ସମ୍ପତ୍ତିର କି ମୂଲ୍ୟ ? ସେ ନିଜେ ଯେତେ ନାଁ କମେଇଛି ସେଠି, ଯେତିକି ସମ୍ପତ୍ତି କଲାଣି, ମୋର ଏସବୁ ତାର ତା' ପାଦଧୂଳିକୁ ସରି ନୁହେଁ ।

ଶୁଣୁଥିବା ଲୋକ ଏସବୁ ପୁତ୍ରଗର୍ବରେ ଗଦ୍‌ଗଦ ପିତାଟିଏର କଥା ବୋଲି ଭାବି ଯଥା—ପ୍ରତିକ୍ରିୟା ପ୍ରକାଶ କରେ । ସମସ୍ୟାଟି ଅଭିରାମ ମିଶ୍ରଙ୍କ ଛାତି ଭିତର ବନ୍ଦ କୋଠରୀରେ କୁହୁଳି ଲାଗେ ପୂର୍ବବତ୍ ।

ପ୍ରବାସୀ କାନ୍ଥୁ ଗୋଟିଏ ପିଲା, ଯିଏ ବୁଝିବା ଲୋକ ପରି କଥା କହେ—ଏମିତି କୋଠା ଅଜା କଟକ, ଭୁବନେଶ୍ୱରରେ ବି ନ ଥିବ । ଆଉ ବାଉପଟ ପୋଖରୀ, ବଗିଚାର ଯେଉଁ ପ୍ରାକୃତିକ ଶୋଭା—ଓଃ ! ଏସବୁ ଆଉ କିଏ ଟଙ୍କା କେତେଟାରେ କିଣିନେବ ଭାବିଲେ......

ପ୍ରାକୃତଙ୍କ ଶୋଷ କଥା ବୁଢ଼ା ବିଶେଷ ବୁଝନ୍ତି ନାହିଁ, ପ୍ରବୀର ବହିରୁ ପଢ଼ି ବୁଝିଥିବ । ତେବେ ଏଟିକା ବାହାରେ ବି ତାଙ୍କ ଘରଦ୍ୱାରର ଆନ୍ତରିକ କିଛି ଅର୍ଥ ବାହା ଆଗିରେ ଅଛି ଜାଣିଲେ ତାଙ୍କୁ ଶାନ୍ତି ଲାଗେ । ବିଶୁ ଯେତେବେଳେ କହେ—କାହିଁକି ଏ ଗନ୍ଧଆ, ପୁରୁଣା ସହରଟାରେ ପଡ଼ିଛ ବାପା, ଆସୁ ନ ମୋ' ସାଥେ ରହିବ—ତାଙ୍କ ଛାତି କୋରି ହେଇଯାଏ ।

ତଥାପି ସେ ଦମ୍ଭକରି ପ୍ରବୀର ନାଁରେ ଉଇଲ୍ ଟିଏ କରିପାରୁ ନାହାନ୍ତି । ସିଧାସଳଖ ଏତେ ବଡ଼ କାମଟାଏ କରିବାପାଇଁ ବାହାରିବାକୁ ସାହସ କୁଳାଏ ନାହିଁ । ସେ ଆଗରୁ ନ ଭାବିବାକୁ ଚେଷ୍ଟା କରନ୍ତି । ଦେଖାଯିବ, ଯାଉ ଦିନାକେତେ । ଜାଣି ଶୁଣି ଭାବନ୍ତି ନାହିଁ ଯେ ତାଙ୍କ ଦିନ ଏଣିକି ସରିଆସୁଚି । ସୋଲକୁ ବାନ୍ଧିବୁଛ ପୁଣି ଗହୀର ପାଣିକୁ ପଠାଇ ଦେବାକୁ ଚେଷ୍ଟା କରନ୍ତି । ପୂଜା ଓ ମାଳା ଜପିବାରେ ବେଶି ସମୟ କଟାନ୍ତି ।

ମାଳ ଗଡ଼ାଉ ଗଡ଼ାଉ ଏକୁଟିଆ ଅଥବା ଅନ୍ୟମାନଙ୍କ ଉପସ୍ଥିତିରେ ସେ ପ୍ରାୟତଃ କହନ୍ତି—'ଆଉ କେତେ ଦିନ ପ୍ରଭୁ ! ପାରିକର ଏ ଭବସାଗରରୁ । ଘଷିହୋଇ ହୋଇ ପଇସାରୁ ଅକ୍ଷର ଲିଭିଗଲାପରି ପଦ କେତୋଟିର ଅର୍ଥ କୁଆଡ଼େ ହଜିଗଲାଣି । ବାରମ୍ବାର ଉଚ୍ଚାରଣ କରିବାର ଅର୍ଥ ହେଉଛି ସେ ଘୋଷଣା କରୁଛନ୍ତି ଯେ ବୃଦ୍ଧାବସ୍ଥାକୁ ସେ ମାନି ନେଇଛନ୍ତି ଓ ଏମିତି ଘୋଷଣା କରୁ କରୁ ସମୟର ଅନ୍ୟମନସ୍କତା ଅବା କରୁଣାବଶତଃ ସେ ଠିକଣିବେ ଆହୁରି ବେଶ୍ କିଛି ଅନିର୍ଦ୍ଦିଷ୍ଟ ସମୟ ।

ବସିବା ଜାଗାରୁ ପୁଣିଥରେ ଶୋଇବାର ଉପକ୍ରମ କରୁ କରୁ ସେ ଦେଖିଲେ ପ୍ରବୀର ଚଉକୀର ପଛ ଧାରରେ ମୁଣ୍ଡରଖି ଶୋଇଯାଇଚି । ଏତେ-ବେଳକେ ସୁଯୋଗ ପାଇଲାପରି କହିଲେ—ବାପ୍ ! ଶୋଇପଡ଼ିଲୁ ନାଇଁ, କିର !

ପ୍ରବୀର ଶୋଇ ନ ଥିଲା । ତା' ମୁହଁ ସିଧା ଅଜା ଦେଖିପାରୁ ନ ଥିଲେ । ଅଧାଶୁଆ ଭଙ୍ଗୀରେ ଆଉଜିଯାଇ ସେ ନିବିଷ୍ଟ ମନରେ ମାମୁଁଙ୍କ ବଡ଼ ଫଟୋ ଆଉ ତା' ତଳକୁ ଥିବା ତାଙ୍କ ପରିବାରର ଫଟୋକୁ ଦେଖୁଥିଲା । ସେଇମିତି ରହି ଉତ୍ତର ଦେଲା—ଶୋଇନି ଅଜା !

ବୁଢ଼ା ଟିକଏ ନଇଁପଡ଼ି ପ୍ରଭାକରର ଅଧାବୁଜା ଦୃଷ୍ଟି ଦେଖିଲେ । ଟେବୁଲ ଉପରେ ମାଗାଜିନ୍‌ର ଫ୍ୟାନ୍ ପବନରେ ଉଡ଼ୁଥିବା ପୃଷ୍ଠାରୁ ରଙ୍ଗୀନ୍ ଛବି ସବୁ ଦିଶୁଛି—ପାଠ ବହି ହୋଇ ନ ଥିବ କେବେ ବି ।—କ'ଣ ସେମିତି ଆଉଜି ବସିଛୁ କରେ ? ପଢ଼ୁନୁ ? କି ବହି ସେଇଟା ଟେବୁଲ୍ ଉପରେ ?

ପ୍ରଭାକର ତନ୍ମୟ ହୋଇ ଦେଖୁଥିଲା—ଟେବୁଲ୍ ଉପରେ ଅଫ୍‌ସରେ ବସୁଥିବା କରଚାରକାଙ୍କ ଛବି, ଆଉ କାନ୍ଥରେ ସୁଟ୍, ଟାଇ ଭୂଷିତ ସଦ୍ୟ ବିଲାତ ଫେରନ୍ତା ମାମୁଁ । ତଳ ଫଟୋରେ ତାଙ୍କ ପାଖକୁ ଦାମୀ ପୋଷାକ ପିନ୍ଧି ମାଇଁ ଓ ପିଲା ଭଉଣୀ—ଯେଉଁମାନେ ଖାଲି କଡ଼ମଡ଼ ଇଂରାଜୀ କହନ୍ତି । ଗୋଡ଼ ପାଖେ କୁକୁର । ପଛପାଖେ ଲମ୍ବା କାର୍ ଓ ତାଙ୍କ ରହିବା ଘର ଦିଶୁଛି । ଅଜାଙ୍କ ଡାକ କେଉଁ ଦୂରରୁ ଆସିଲା ପରି ତା' କାନରେ ବାଜିଲା, ତାଙ୍କ ଓଦା ଗାମୁଛା ଓ ଦେହର ଆମ୍ବିଳିଆ ଗନ୍ଧ ବି ନାକ ପାଖକୁ ଫେରଆସିଲା । ରାସ୍ତାରୁ କେଉଁ ସ୍ତ୍ରୀଲୋକର ଅଶ୍ଳୀଳ ଗାଳି ଚକ୍କାର ଶୁଭୁଛି ।

ପ୍ରଭାକର ଲମ୍ବା ହାଇଓ୍ୱାସଟିଏ ଟାଣି ହଠାତ୍ ସ୍ଥିରକରି ପକାଇଲା ପରି ଟେବୁଲ୍‌ରୁ ମାଗାଜିନ୍ ଉଠାଇ ଅଜାଙ୍କୁ ଦେଖାଇଲା, କହିଲା—ଏଇଟା ଗୋଟାଏ ଫିଲ୍ମ ମାଗାଜିନ୍ । କେତେ ବିଳାସରେ ଫିଲ୍ମଷ୍ଟାର୍‌ମାନେ ରହନ୍ତି ଅଜା, ଏଥିରୁ ଜାଣିଲେ ଆଶ୍ଚର୍ଯ୍ୟ ହେବ ।

—ହୁଁ ! ସେଠୁ ? କ'ଣ ସିନେମାରେ ମିଶିବୁ ଏଥର ?

ବ୍ୟଙ୍ଗୋକ୍ତିକୁ ଉପେକ୍ଷା କରିଦେଇ ପ୍ରଭାକର କହିଲା—ନାଇଁ, ସେ ଭାଗ୍ୟ ଆମର କାହିଁ ! ତେବେ ଫରେନ୍ ଯାଇ ହୁଅନ୍ତା ଯଦି ! ଦେଖୁନ ମାମୁଁ ଯେମିତି ଆଉ୍ଡ଼ାରେ ଅଛନ୍ତି, ଆମ ଇଣ୍ଡିଆନ୍ ଫିଲ୍ମଷ୍ଟାର୍‌ଙ୍କ ସହ ସମାନ କହିଲେ ଚଳେ ।

—ତୁ ପାଠ ପଢ଼ୁଚୁ, ନା ପଙ୍ଖାତଳେ ବସି ଏଇସବୁ କଳ୍ପନା ଜଳ୍ପନା କଲୁଣି ?

ପ୍ରଭାକର ଅଳସ ଭଙ୍ଗି କହିଲା—ମୋ ଦେଇ ପାଠଶାଠ ହେବନାଇଁ ଅଜା । ତମ ସମ୍ପତ୍ତିଯାକ ସତରେ ଯଦି ମୋ ନାଁରେ ଲେଖି ଦିଅନ୍ତ, ଆଉ ପାଠ ପଢ଼ନ୍ତି ନାହିଁ ।

ଅଜା ଏଥର ସଳଖ ହୋଇ ବସି ତେଜାଳ ସ୍ୱରରେ କହିଲେ— ମୋତେ କ'ଣ ଆଉ ବାଳୁଙ୍ଗା ମିଳୁନାହାନ୍ତି କ ସମ୍ପତ୍ତି ଲେଖି ଦେବାକୁ ? ଶଃ—ତୋ ମୁଣ୍ଡରେ କଏ ପୂରେଇଚି କହିଲୁ—ମୁଁ ମୋ ପୁଅ ଥାଉ ଥାଉ ସମ୍ପତ୍ତି ଆଉ କାହା ନାଁରେ ଲେଖିବ ବୋଲି ?

ପ୍ରଭାତ ତାଙ୍କ ମିଛ ରାଗକୁ ଚିହ୍ନେ । ସାଧାରଣ ହାଲୁକା ସ୍ୱରରେ କହିଲା—କାହିଁକି ଆଉ ମିଛରେ ସେସବୁ କହୁଚ ଅଜା ? ତମେ ଜାଣିଚ ମାମୁଁ ହାତରେ ସମ୍ପତ୍ତି ପଡ଼ିଲାକ୍ଷଣି ବକଳ କୋଉ ଅନାଥା ଆଶ୍ରମକୁ ଦାନ ଧର୍ମ କରି-ଦେବେ । ଆଉ ମୁଁ ଏଇଠି ଜୀବନଯାକ ମାଟିକାମୁଡ଼ି ପଡ଼ିବି ବୋଲି ବିଶ୍ୱାସରେ ସିନା ତମେ ମୋତେ ସମ୍ପତ୍ତି ଦେବ, ଆଉ ନ ହେଲେ କ'ଣ ନାଁ କମେଇ ଫରେନ୍ ଯାଇପାରିଲେ ଦେବ ?

ବୁଢ଼ା ଭ୍ରୂକୁଞ୍ଚାଇ ତାକୁ ଏକ ଦୃଷ୍ଟିରେ ଅନାଇଲେ, ଦୁର୍ବୋଧ ପ୍ରଶ୍ନ ପରି ପଚାରିଲେ—ତୁ ଖାଲି ଫରେନ୍ ଫରେନ୍ କାହିଁକି ହେଉଚୁ କରେ ବନା କେତେ ହେଲା ?

ପ୍ରଭାତ ଥଣ୍ଡାଗଳାରେ ଆଉ ଟିକେ ଟିହାଇଲା ପରି କହିଲା—ତମେ କ'ଣ ବୁଝିବ ! ମାମୁଁ ବୁଝନ୍ତେ । ଥରେ ଯଦି ଚାଲିଯାନ୍ତି ନା ସମୁଦ୍ର ଡେଇଁ—ଆଉ ଫେରିବା କଥା ନୁହେଁ । ହେଲେ ମାମୁଁଙ୍କର ଗୋଟାଏ କଥା ମୁଁ ବୁଝିପାରେନା । ମୁଁ ଯଦି ଯାଆନ୍ତି ନା ଅଜା, ଆଗ କରି ଗୋରୁ ଛିଅଟିଏ ବାନ୍ଧାହୋଇ ପଡ଼ନ୍ତି । ଓଃ—ଶଙ୍ଖ ପରି ଚମ ଅଜା—

ଅଭିରାମ ମିଶ୍ରେ କିଛି କ୍ଷଣ ଥତମତ ହୋଇଗଲେ । ସ୍ୱର ଫୁଟିଲାକ୍ଷଣି ବଡ଼ ପାଟିରେ କହିଲେ—ତୁ ଗଲୁ ଏଠୁ ବାର, ଏକ୍ଷଣି ଯା କହୁଚି । ଏ ଘରେ ଏ ସବୁ ଛତରମି ଚଳିବ ନାହିଁ କହି ଦେଉଚି ।

ପ୍ରଭାତ ଆଶ୍ଚର୍ଯ୍ୟ ହୋଇଗଲା ଏ ଅପ୍ରତ୍ୟାଶିତ ଆକ୍ରମଣରେ, କହିଲା— ଏମିତି କ'ଣ ଚିଡ଼ିଯାଉଚ କି ଅଜା ? ତମ ସାଙ୍ଗେ କ'ଣ ଥଟ୍ଟା ହେବା ବି ମନା ?

ବୁଢ଼ା କିଛି ଜିଦ୍ କଲାପରି ଆହୁରି ବଡ଼ ପାଟିରେ କହିଲେ—ତୁ ଗଲୁ । ନିଜ ଘରେ ସବୁ ପଙ୍ଗା ନାହିଁ ବୋଲି ଚାଲିଆସିବେ ପବନ ଖାଇବାକୁ—

ପ୍ରଭାର ଏଥର ଭାଗମିଶା ଦାଢ଼ୁଆ ଥଣ୍ଟାରେ କହିଲା— ପଞ୍ଚାଶଟା କ'ଣ ଦୁନିଆଁରେ ସବୁଠୁ ବଡ଼ ବିଳାସ ବୋଲି ଭାବୁଚ କି ଅଜା ? କୁଅବେଙ୍ଗ ପରି ଏ ଘୋଟକା ସହରଟାରେ ପଡ଼ି ଭାବୁଚ ଭାରି ବଡ଼ଲୋକ ହୋଇଯାଇଚ । ଆଜିକାଲି ଦୁନିଆଁରେ ପକ୍‌କା ଘରଟାଏ କି ପଞ୍ଚାଶଟାଏ କିଛି ନୁହେଁ, ବୁଝିଲ ?

ବୁଢ଼ା ରାଗରେ ପାଚିଯାଇଥିଲେ । ଥରିଲା ବଣିଆଙ୍ଗୁଠି କବାଟ ଆଡ଼କୁ ଦେଖାଇ ପାଟିକଲେ—ଯା ମୋ ଘରୁ କହୁଚି । କାଣି କଉଡ଼ିର ଯୋଗ୍ୟତା ନାହିଁ, ମୋତେ ପାଠ ପଢ଼ଉଚ । ମୁହଁ ଉପରେ କଥା କହୁଚ । ଯା ପଳା କହୁଚି—

ପ୍ରଭାର ଏଥର ଧଡ଼ାସ୍‌ କିନା ଚଉକି ଠେଲି ଉଠିଲା । ଭାବିଲା ଏଇଲାଗେ ଆଣ୍ଠୁ ସଙ୍କଟ ନେଇ ଆସିବ, ଛାଡ଼—। ବହିପତ୍ର ହାତରେ ଯାହା ପଡ଼ିଲା ଗୋଟାଇ ଦୁମ୍ ଦୁମ୍ ଘରୁ ବାହାରଗଲା ।

ବୁଢ଼ା କିଛି ବେଳ ଫଁ ଫଁ ହେଲେ, ସୁରେଇରୁ ପାଣିଟିକେ ଓଦା ଗାମୁଛାରେ ମୁହଁ, ବେକ ପୋଛିଲେ । ବେଶ୍ କିଛି ସମୟ ପରେ ନିଃଶ୍ୱାସ ଓ ଛାତିର ଉଠ୍‌ପଡ଼୍ ସାଧାରଣକୁ ଫେରଆସିବା-ପରେ କାନ୍ଥରେ ଠାକୁରଙ୍କ ଫଟୋକୁ ହାତ ଯୋଡ଼ିଲେ । ଅଭିଯୋଗ କଲାପରି କହିଲେ—ଏତେ ଅଧର୍ମୀ ପାପିଲୋକ ସବୁ ଏମାନେ । ତାଙ୍କୁ ତମେ ସ୍ନେହ ଦିଅ, ତ୍ୟାଗ ଦିଅ, ଯାହା ଦିଅ, ନିଜ ଛଡ଼ା ସେମାନଙ୍କର ଆଉ କାହାରି ଚିନ୍ତା ନାହିଁ ।

କିଛି ସମୟ ରହି ଆଖିରେ ଜକେଇ ଆସୁଥିବା ଲୁହକୁ ମିଛି ମିଛି କରି ଚପେଇଦେଇ ଗ୍ଲେଟପିଲି ଗୁଁ ଗୁଁ ହେଲାପରି କହିଲେ--ଦଗାବାଜ୍ ସମସ୍ତେ । ଖାଲି ଇଂରାଜୀ ପାଠ ଟିକିଏ ପଢ଼ି ଚନ୍ତି । ଧର୍ମଜ୍ଞାନ ନାହିଁ, ମର୍ଯ୍ୟାଦା ଜ୍ଞାନ ନାହିଁ । ଖାଲି ସଉକ ପାଇଁ, ବିଳାସ ଟିକିଏ ପାଇଁ, ଏମାନେ ବାପ ଅଜା ତ ଛାଡ଼, ଧର୍ମକୁ ବି ଦଗା ଦେଇଦେବେ ।

ବଶୁ ବୋଉ ଖବର ନେଇଁଆସିଲାବେଳକୁ ଦହି ସରବତ୍ ନେଇ ଘରେ ପଶି ଦେଖିଲେ ବୁଢ଼ା ଭାଗବତ ପଢ଼ୁଚନ୍ତି ସ୍ୱରଦେଇ । କହିଲେ—ମୁଁ ଫେରିଲାବେଳୁ ତମ ସ୍ୱର ଶୁଣୁଚି, ଆଜି ଶୋଇନାହିଁ କି ଜମା ? ବାର ଗଲାଣି ?

ବୁଢ଼ା ବହି ବନ୍ଦ କରି ସର୍ବତ ଗ୍ଲାସ୍ ହାତକୁ ନେଲେ ଓ କାନ୍ଥ ଆଡ଼କୁ ଆଦୌ ନ ଚାହିଁ କହିଲେ—ବୁଝିଲ, ସେଇ ଟେବୁଲ୍ ସାମ୍ନାରେ ବଡ଼ୁର ଯେଉଁ ଫଟୋ ଝୁଲୁଛି, ତାକୁ ଦାଣ୍ଡ ବାରଣ୍ଡାରେ ଟାଙ୍ଗିଦେବା ଏଣିକି ।

ବଡ଼ୁ ବୋଉ ଟିକିଏ ସନ୍ଦିଗ୍ଧ ଗଳାରେ କହିଲେ—କାହିଁକି, ଘର ଭିତରୁ ପୁଅର ଫଟୋଟା ନେଇ ବାହାରେ କାହିଁକି ଟାଙ୍ଗିବ ?

ବୁଢ଼ା ଗ୍ଲାସ୍‌କୁ ଚାହିଁ ଉତ୍ତର ଦେଲେ—ବାହାରେ ବେଶି ଲୋକବାକ ଦେଖିବେ । ଆମର ବି ଗଲ୍ ଆସିଲ୍‌ବେଳେ, କେତେବେଳେ କେମିତି ଦୃଷ୍ଟି ପଡ଼ୁଥିବ ।

ବଡ଼ୁବୋଉ ତଥାପି ଅସନ୍ତୁଷ୍ଟ ହେଲପରି କହିଲେ—କାହିଁ, ଆଉ ଗୋଟିଏ ବଡ଼ ଫଟୋ କରିଦେଲେ ଦାଣ୍ଡ ବାରଣ୍ଡା ପାଇଁ ?

ଅଧୈର୍ଯ୍ୟ ଗଳାରେ ଏଥର ବୁଢ଼ା କହିଲେ—ଆଉ ଗୋଟିଏ ଫଟୋ କଲେ ଭିତର ବାରଣ୍ଡାରେ ଟାଙ୍ଗିବା, ଏ ଅନ୍ଧାରୁଆ ଘର ଭିତରେ ନୁହେଁ । ଏଇଠି କିଏ ଦେଖୁଛି ତା' ଫଟୋ ? ଖାଲି ମୁଁ ହିଁ ଦେଖୁଛି ସାରା ଦି'ପହର ଧରି, ରାତିରେ ବିଛଣାରେ ପଡ଼ି—

ତାଙ୍କ ଗମ୍ଭୀର ମନର କେଉଁ ନିଷ୍ଠୁର ଫଇସଲାକୁ ଚଟ୍‌କିନା ପଢ଼ି-ନେଇଥିବା ପରି ବଡ଼ୁବୋଉ ଥକ୍କା ହେଇ ଚାହିଁଲେ । ଧୀରେ କହିଲେ—ବୋହୂ ନିଜ ହାତରେ ଏଠି ଟାଙ୍ଗିଦେଇ ଯାଇଥିଲା । ଶକ୍ତ ସ୍ୱରରେ ବୁଢ଼ା ଉତ୍ତର ଦେଲେ—ବୋହୂ ଆମଠୁ ବଡ଼ୁ କଥା ବେଶି ଜାଣେ ? ବେଶି ବୁଝେ ?

ତା'ପରେ ଧୈର୍ଯ୍ୟର ସର୍ବତ ବୁଝାଇଲା ପରି କହିଲେ—ଦେଖ ବଡ଼ୁବୋଉ, ବଡ଼ୁ ଆମର ଯେଉଁଠି ବେଶି ଶୋଭାପାଇବ, ଲୋକଙ୍କ ସମ୍ମାନ ପାଇବ, ଆମେ ତାକୁ ସେଇଠି ରଖିବା । ସେଇଥିରେ ହିଁ ସେ ଖୁସିହେବ । ଦାଣ୍ଡ ବାରଣ୍ଡାରେ ପରା ଏବେ ନୂଆ ପଲସ୍ତରା ହେଇ ଚୂନ ଧଉଳା ହେଇଛି । ଏଇଠି ଘର ଭିତରେ ଏ ଚୂନଛଡ଼ା ଫଟା କାନ୍ଥରେ ତା' ଫଟୋ ଭଲ ମାନୁଛି ?

# ଦ୍ୱୀପ

ଅଫିସ୍ ଘଣ୍ଟା ଆଉ ନିଜ ଘଣ୍ଟା ଦେଖି ଦେଖି ନିର୍ଭ୍ରାନ୍ତ ହୋଇଗଲା ପରେ ପାଞ୍ଚଟା ବାଜିଲା । ନିଃଶ୍ୱାସ ରୁଦ୍ଧ ଆଗ୍ରହରେ ଦୁଇଘଣ୍ଟା ମିଳାଇନେଇ ନିଶ୍ଚିନ୍ତ ହେଲାପରେ ଛନ୍ଦା ନିଜ ଟେବୁଲ ଉପରକୁ ଆଖି ଫେରାଇଲା—କାଗଜଟାରେ ଅନେକବେଳୁ ଗାରଉଥିଲା ସେ, ପେନ୍ ପଛପାଖଟା ବି ଅନ୍ୟମନସ୍କ କାମୁଡ଼ାରେ ଦନ୍ତୁଡ଼ା ହୋଇ ଯାଇଛି । ବାଁ ହାତ କାଣି ଆଙ୍ଗୁଳିରେ ଖାମ୍ ଖିଆଲି ହୋଇ କେତେବେଳେ ଲଗେଇ ଦେଇଥିବା କ୍ୟାପ୍ ଟାକୁ ଟାଣି ସେ ପେନ୍ ବନ୍ଦକଲା ଓ ଚେଆର୍ ଠେଲି ଉଠିଲା । ଅଫିସ୍ ରୁ ବାହାରିଲାବେଳେ ଶୀତଦିନ ଖରଟା ନାରଙ୍ଗୀ ଧରିଲାଣି । ସ୍କୁଲ୍ ଟୋକାମାନେ ଫୁଟ୍ ବଲ୍ ଖେଳୁଥିବା ସାମ୍ନା ପଡ଼ିଆ ଆଡ଼ୁ ଶୀତୁଳିଆ ପବନ ବହି ଆସୁଛି ।

ରାସ୍ତାରେ ପାଦ ଦେଲାକ୍ଷଣି ଅନ୍ୟ ସବୁଦିନ ଭଳି ଆଜି ବି ମନେ ପଡ଼ିଲା ଯେ ଅଫିସ୍ ଭିତରେ ଥିଲାବେଳେ ପାଞ୍ଚଟା ବାଜିଲେ ଦିନକର ବନ୍ଦୀତ୍ୱର ଅନ୍ତଃ ବୋଲି ମନେ ହେଉଥିଲେ ବି ବାହାରକୁ ବାହାରିଲା ପରେ ଜାଣିହୁଏ, ବାସ୍ତବରେ ବିଶେଷ କିଛି ଫରକ୍ ନାହିଁ, ଅଫିସ୍ ଭିତର ଓ ବାହାର ଅନୁଭୂତି ଭିତରେ । ସେଇ ଘଟଣାବିହୀନତା ଓ ତଜ୍ଜନିତ ନିରବଚ୍ଛିନ୍ନ ବିରକ୍ତି । ଭାବିବାକୁ ଗଲେ ବରଂ ଅଫିସ୍ ଭିତରେ ଗୋଟାଏ ପ୍ରତୀକ୍ଷା ଥାଏ ଘଣ୍ଟାରେ ପାଞ୍ଚଟା ବାଜିବାଲାଗି । ପାଞ୍ଚଟା ବାଜିଗଲା ପରେ ହାତରେ ଖାଲି ଫାଙ୍କା ସମୟ—ପୁଣି ପରଦିନ ଅଫିସ୍ ସମୟ ଯାଏ ଘୋଷାରିବା କଥା ।

ତା' ପାଖଦେଇ ଗଲାବେଳେ ଧିମେଇ ଯାଉଥିବା ଓ ଜୋର୍ କରି ଘଣ୍ଟି ବଜାଉଥିବା ରିକ୍ସାବାଲାଙ୍କୁ ଉପେକ୍ଷା କରି ଛନ୍ଦା ଧୀରେ ସୁସ୍ଥେ ଚାଲୁଥାଏ । ରିକ୍ସାରେ ବସିବା ପାଇଁ ଖାସ୍ ସଉକ୍ ତା'ର ନାହିଁ, ଘରେ ପହଞ୍ଚିବା ଲାଗି

ଡରବର ନାହିଁ, ପଇସା ବ ବଞ୍ଚେ । ଘରେ ପହଞ୍ଚିଲାବେଳକୁ ବୋଉ ଅପେକ୍ଷା କରିଥିବ ଝର୍କା ପାଖେ—ଖଣ୍ଡେ ବାଟରୁ ଛନ୍ଦା ଗୋଟାଏ କଡ଼କୁ ସାମାନ୍ୟ ଲୁଞ୍ଚେଇ ଯାଇଥିବା ପର୍ଦ୍ଦା ଦେଖି ବାରିପାରେ । ଘର ବାରଣ୍ଡାରେ ନ ପହଞ୍ଚୁଣୁ ବୋଉ କବାଟ ଖୋଲି ସାରିଥିବ, କହିବ—ଆସିଲୁ ! ଏତେ ଡେରି ହେଲା ଯେ ?

ଆଉ ସେ ବୋଉ ଆଡ଼େ ଆଦୌ ନ ଚାହିଁ, ବିରକ୍ତ ଚିର ଆସୁଥିବା ମୁହଁକୁ ସେଲ୍ଫ୍ ଆଡ଼କୁ ବୁଲାଇ ପର୍ସ ରଖୁ ରଖୁ କହିବ—ପାଞ୍ଚଟାବେଳେ ଅଫିସ୍‌ରେ, ପାଞ୍ଚଟା କୋଡ଼ିଏ ହେଇଚି ।

ତା ଶୀତଳ ସ୍ୱରକୁ ଆଦୌ ଲକ୍ଷ୍ୟ ନ କରି ପରି ବୋଉ ପଚାରିବ—ରିକ୍ସାରେ ଆସିନୁ କି ? ଚାଲିକରି ଆସିଲୁ ?

ସେ ଦାନ୍ତଚିପି ସମାନ ସ୍ୱରରେ ଉତ୍ତର ଦେବ—ପଇସା ନାହିଁ ରିକ୍ସାପାଇଁ, ମାସ ସରିଲାଣି । ନଚେତ୍ ସନ୍ଧିକର ଯନ୍ତ୍ର ପଦେ କଥା କହିଚି ସେତେବେଳେ ତ ରକ୍ଷାନାହିଁ । ଦୁନିଆଯାକର ଦୁଃଖ, ଅଭିଯୋଗ ଗୁହୁଁ ଗୁହୁଁ ଆସି କୁଢ଼େଇ ପଡ଼ିବ—ମାଗାଜିନ୍ କି ରେଡ଼ିଓ ପାଇଁ ବି ଟିକିଏ ଜୁ ନ ଥିବ ।

ବାଁ ପାଖେ କେନାଲ୍—ଏଇ କେନାଲ୍ କୂଳେ ଜାଣିଶୁଣି ପ୍ରାୟ ଛନ୍ଦା ଟିକିଏ ଆସ୍ତେ କରି ଚାଲେ । କାରଣ ଏକୁଟିଆ ବୁଲିବା ପରି ବୁଲିବାର ଉପାୟ ନାଇଁ । ନିହାତ ଧୀରେ ଟହଲ ମାରିଲାପରି ଚାଲିଲେ ମନେହେବ, ତମେ ଯେମିତି କାହାର ପ୍ରତୀକ୍ଷା କରୁଚ । ଅତଏବ ସାନ୍ଧ୍ୟ ଭ୍ରମଣ ଇଚ୍ଛାରେ ଚାଲୁଥିଲେ ବି ବାହାନା କରିବାକୁ ହୁଏ ଯେମିତି କୌଣସି କାମରେ ବାହାରିଚ—ରାସ୍ତାକୁ ଆଖି, ସ୍ଥିର ଗମ୍ଭୀର ମୁହଁ । ଅନ୍ୟଦିନେ ଯୋଡ଼ ଯୋଡ଼ ଦମ୍ପତି, ଜଣେ ଅଧେ ପ୍ରେମିକ ପ୍ରେମିକାଙ୍କ ଯୋଡ଼ ବି ବୁଲନ୍ତି ଏଠି, ଶୀତ ସନ୍ଧ୍ୟା ବୋଲି ଜଣେ ଅଧେଙ୍କୁ ଛାଡ଼ିଦେଲେ ଏବେ ପ୍ରାୟ ଖାଲି କେନାଲ୍‌କୂଳ ।

ସିମେଣ୍ଟ୍ ବେଞ୍ଚ୍‌ଟି ଉପରୁ ଛନ୍ଦା ରୁମାଲ୍‌ରେ ଧୂଳି ଝାଡ଼ିଦେଲା—ପାଞ୍ଚ ଦଶ ମିନଟ୍ ବସିଗଲେ ଚଳିବ । ସେମିତି କେହି ଚିହ୍ନା ମୁହଁ ତ ଦିଶୁ ନାହାନ୍ତି, ତାକୁ ତତ୍‌କ୍ଷଣ ଆଖିରେ ଦେଖିଲା ଭଳି । ଦୂରେଇ ହେଇ ଏକୁଟିଆ ବସିଥିବା ଲୋକଟି ସେ ବୁଲି ନ ଅନେଇଲା, ତା ନୁହେଁ । ଖଣ୍ଡେ ଦୂରରୁ ତିନିଜଣ ଯୁବକ

ଗ୍ଲଲ ଗ୍ଲଲ ଆସୁଛନ୍ତି, ତା'ର ଏକୁଟିଆ ବସିବା ବିଷୟରେ କଥା ପଡ଼ିଲାଣି ନିଶ୍ଚୟ ତାଙ୍କ ଭିତରେ । ଛନ୍ଦା କେନାଲ୍ ପାଣିକୁ ଚାହିଁଥିବାର ପୋଜ୍‌ରେ ଅନେଇ ବି ଅଧାଶୁଣା ଟିପ୍‌ପଣୀଟିଏ ଓ ତତ୍‌ପରବର୍ତ୍ତୀ ହସ ବାଜିଲା । ନିଶ୍ଚଳ ବସିରହିଲା ସେ । ତା ସାମ୍ନାଦେଇ ଗଲାବେଳେ ସେମାନେ ହଠାତ୍ ଚୁପ୍ ହୋଇଗଲେ, ତାର ଠିକ୍ ଆଗରେ ଜଣେ ଖଣ୍ଡି କାଶ ମାରିଲା ଓ ତିନହେଁ ପୁଣି ହସର ଖୋରାକ ପାଇଗଲେ । ଖଣ୍ଡେ ଦୂରର ଏକୁଟିଆ ଲୋକଟି ପୁଣି ପଛକୁ ବୁଲି ଅନଉଛି । ଏମିତି ନିତାନ୍ତ ଅସ୍ୱସ୍ତିକର, ସମସ୍ତଙ୍କ ଦୃଷ୍ଟିର ଲକ୍ଷ୍ୟ ହୋଇ ସମୟ କଟାଇବାର ମାନେ କଣ ? ଖଣ୍ଡେ ଦୂରର ଲୋକଟି ଉଠିଲା, ପିନ୍ଧିଥିବା ପଞ୍ଜାବୀ ଝାଡ଼ି ସିଧାକଲା ଓ ତାଳକୁ ମୁହଁପୋତି ଧୀର ପାଦକ୍ଷେପରେ ଏଇଆଡ଼େ ଆସୁଛି । ଲୋକଟିକୁ ସିଧାସିଧି ନ ଚାହିଁଲେ ବି ଛନ୍ଦା ଜାଣି ପାରୁଥିଲା, ପ୍ରାୟ ପାଖେଇ ଆସିବା ପରେ ଲୋକଟିର ରହିଲି ରହିଲି ଭାବ ଓ ମୋଟା ଚଷମା ସଳଖୁଛି । ଛନ୍ଦା ମୁହଁ ବୁଲାଇ ବିପରୀତ ଆଡ଼େ ଚାହିଁଲା; ନିହାତି ହଳେ ପର ବେଶପଟା ତ ଜମା ନୁହେଁ, ଏ ଅଭଦ୍ରତା କାହିଁକି ? ଅତି ପାଖରେ ଗଳା ଝାଡ଼ିବା ଶବ୍ଦ ଓ—ଆଜ୍ଞା ନମସ୍କାର ।

ନିଜ ଅଜାଣତରେ ଛନ୍ଦା ଉଠି ଠିଆହୋଇ ପଡ଼ିଲା । ପର ମୁହୂର୍ତ୍ତରେ ସେ ଦେଖିନେଲା – ଲୋକଟି ଅମାୟିକ ହସ ହସୁଚି, ପ୍ରତ୍ୟୁତ୍ତର ଆଶାରେ ଅନେଇଚି । ଭୟ କରିବାର କିଛି ନାହିଁ ଯଥା, ମାଦାଳିଆ ମୁହଁରେ ପାନବୋଳ ହସଟି ବିରକ୍ତିକର ଦିଶୁଚି । ସାମାନ୍ୟ ହାତଟେକି ଛନ୍ଦା ଉତ୍ତର ଦେଲା– ନମସ୍କାର ।

ଆଜ୍ଞା ଟିକିଏ ଗଳାଝାଡ଼ା—ମୋତେ ଚିହ୍ନିପାରିଲେ ନାହିଁ ବୋଧେ । ମୋ ନାଁ ଭବଗ୍ରାହୀ ପଣ୍ଡା । ଆମ କଲେଜ ଏନୁଆଲ୍ ଫଙ୍କସନ୍‌ବେଳେ ଦେଖା ହୋଇଥିଲା, ଆମ ଓଡ଼ିଆ ଲେକ୍‌ଚରର ନମିତା ଦେବୀ ଚିହ୍ନାକରି ଦେଇଥିଲେ ।

—ଓଃ । ହଠାତ୍ ଚିହ୍ନିପାରିଲି ନାହିଁ ସ୍ୱରରେ ଆଦୌ ଆନ୍ତରିକତା ନ ଫୁଟେଇ ଛନ୍ଦା ଏତକ କହି ଯିବାକୁ ବସିଲା । ଭଦ୍ରଲୋକ ପାଖେଇ ଆସିଲେ, ବୁଲିବାକୁ ଆସିଥିଲେ କେନାଲ୍ କୂଳଆଡ଼େ ନାଁ ? ମୁଁ ବି ଆସିଥିଲି ଟିକିଏ ମୁକ୍ତ ପବନ ପାଇଁ । – ହଁ, ଏଇ ଅଫିସ୍ ଫେରନ୍ତା ବାଟରେ ଟିକେ ବସିଗଲି । ଆଚ୍ଛା ଯାଏ, ନମସ୍କାର !

ଭଦ୍ରଲୋକ ନିଶ୍ଚିନ୍ତ ସ୍ୱରରେ କହିଲେ— ରହନ୍ତୁ । ଆପଣଙ୍କ ଘର ବାଟଦେଇ ତ ମୁଁ ବି ଯିବି । ଗ୍ଲଲନ୍ତୁ ଯିବା ଏକାସଙ୍ଗେ । ଛନ୍ଦା ବାଧାନା ଚାନ୍ତା

କରିବା ପୂର୍ବରୁ ସମବ୍ୟଥୀ ସ୍ୱରରେ କହିଲେ—ସନ୍ଧ୍ୟା ବି ହୋଇ ଆସିଲାଣି । ଆପଣ ଏକୁଟିଆ ନ ଯିବା ଭଲ । ମୋର ତ ଘର ଆପଣଙ୍କ ଘର ପାଖେ…

ଦୁହେଁ ଏକାଠି ରାସ୍ତାରେ ଚାଲିଲାବେଳେ ଛନ୍ଦା ଭାବୁଥିଲା—ସମୟକୁ ଟିକିଏ ହେଲେ ସ୍ୱାଧୀନ ଭାବେ ଖର୍ଚ୍ଚ କରିବାକୁ ଚାହିଁଲେ ଏମିତି ନସ୍ଟେଲଜିକ ଲୋକଙ୍କ ଭଳି ଗୋଟିଏ ଅଧେ ଜିଷ୍ଟରୁ ହାବୁଡ଼ିବେ, ଆଉ କିଏ ଜାଣେ କାଲି ସମସ୍ତଙ୍କ ଆଗେ ଗାଇବୁଲିବେ ।

ଭଦ୍ରଲୋକ କହୁଥିଲେ—ମୁଁ ଆଜ୍ଞା ପ୍ରତିଦିନ ସନ୍ଧ୍ୟାରେ ଏଇଆଡ଼େ ଟିକିଏ ବୁଲିବାକୁ ଆସେ, ଏକୁଟିଆ ହେଉ ନଥିବା ସ୍ତ୍ରୀଙ୍କ ସହ ହେଉ । ମୋର ନସ୍ଟେଲଜିକ ପରିବେଶଟିଏ ନିହାତି ଦରକାର । ସବୁଦିନେ ଅନ୍ତତଃ କିଛି ସମୟ ପାଇଁ ହେଉ ପଛକେ । ଆମର ଏଇ ଶିଳ୍ପ ସହରର ରୁଟିନ୍‌ବନ୍ଧା ଜୀବନରେ ନସ୍ଟେଲଜିକ ବା ମିଳୁଛି କାହିଁ ? ମୁଁ କ'ଣ ଭାବେ…

ଛନ୍ଦା କଣେଇ ଚାହିଁଲା, ରାସ୍ତାକୁ ଅନେଇଁ ଲୋକଟି ଏକମନରେ ଶୁଣେଇ ଯାଉଚି ତା ନିଜ କଥା—ସାହିତ୍ୟରେ ଟିକିଏ ଆଗ୍ରହ ଥିଲେ, ଏ ଶୁଷ୍କ ଦୈନନ୍ଦିନ ତେଲଲୁଣର ସଂସାର କ'ଣ ଭଲଲାଗେ ।…ଆପଣ ଓଡ଼ିଆ ପତ୍ରପତ୍ରିକା ପଢ଼ନ୍ତି ? ମୁଁ କବିତା ଲେଖେ (ଭିଜିଂକ୍ ଦୃଷ୍ଟି ଓ ହେଃ ହେଃ) 'ପ୍ରସାଦ' ହେଲା ମୋର ପେନ୍ ନେମ୍ ।

ଛନ୍ଦାକୁ ଚିଡ଼ ମାଡ଼ିଲା—କିଏ ପଢ଼ୁଛି ହୋ ବାବୁ ତମ କବିତା ? ମୁଁ ଚସ୍ମିର ଯାଏ ନାହିଁ ସେ ସବୁ ସାହିତ୍ୟ ଫାହିତ୍ୟକୁ । କହିଲା—ଓଃ, 'ପ୍ରସାଦ' ! ହଁ ହଁ, ପଢ଼ିଛି ଆପଣଙ୍କ କବିତା ।

କୃତଜ୍ଞ ହସଟିଏ—ଆପଣ ପଢ଼ିଛନ୍ତି ? ମୋର ମନେ ହେଉଥିଲା ଆପଣଙ୍କର ସାହିତ୍ୟରେ ଆଗ୍ରହ ଥିବ । ମୋ ସ୍ତ୍ରୀର ମଧ୍ୟ ଭାରି ଆଗ୍ରହ କବିତା, ଇତ୍ୟାଦିରେ । ବାସ୍ତବରେ ସେ ହିଁ ମୋର ପ୍ରେରଣାର ଉତ୍ସ ।

ପ୍ରଭୁ ! ସାହିତ୍ୟରୁ ତା ପରିବାରକୁ ଟପିକ୍ ଯିବ ନା କଣ ? ଭଦ୍ରଲୋକ ପ୍ରକୃତରେ ଯୋଗକଲେ—ମୋ ବଡ଼ପୁଅ ବାବୁଲା ବି ଭାରି ଭଲ କବିତା ଲେଖୁଛି । ଚଟାପଟ ଛନ୍ଦା ଉତ୍ତର ଦେଲା—ବାଃ, ଭଲ ତ !

ତୁମେ ଶୀଘ୍ର ପାଦ ପକାଇଲ ଓ ଭାବିଲ, ତମ ବଂଶସାରା କବିତା ଲେଖୁଥାଅ ! ମୁଁ ଶୀଘ୍ର ଘରେ ପହଞ୍ଚିଲେ ଯାଏ, ବୋଉ ତେଣେ ବ୍ୟସ୍ତ ହେବଣି ।

ଭଦ୍ରଲୋକ ପ୍ରସନ୍ନ ଗଳାରେ କହୁଥିଲେ—ଲତାର ଆପଣଙ୍କ ସଙ୍ଗେ ପରିଚୟ ହେଲେ ସେ ଭାରି ଖୁସି ହେବ । ତାକୁ ନେଇ କେବେ ଆସିବି ଆପଣଙ୍କ ଘରଆଡ଼େ । (ସାମାନ୍ୟ ଅପ୍ରସ୍ତୁତ ହସ) ଆମର ଆକ୍ଚୁଆଲ ଲଭ୍ ମ୍ୟାରେଜ୍ । ମୁଁ ଯେତେବେଳେ ପ୍ରଥମେ ସ୍କୁଲ ଟିଚର୍ ଥିଲି ସୁନ୍ଦରଗଡ଼ରେ, ଲତା ମ୍ୟାଟ୍ରିକ ପଢ଼ୁଥିଲା···

( ୨ )

ସରୋଜିନୀ ଦ୍ୱିପ୍ରହର ସାରା ଘର ଝଡ଼ାଝଡ଼ି କଲେ । ତାପରେ ଧୂଆଧୋଇ ହୋଇ ଜଳଖିଆ ତିଆରି କରି ରଖିଲେ ଓ ତା'ପରେ ନିତ୍ୟନୈମିତ୍ତିକ ଭାବେ ଛୁଆର ବାଟ ଦେଖିଲେ । ଏତେବେଳକୁ କେମିତି ଏକୁଟିଆ ଲାଗେ । ଉପରଓଳି ଚାକରାଣୀ କାମ କରିବାକୁ ଆସିଲାବେଳେ ପଦେ ଅଧେ ଏଣୁତେଣୁ କଥା କହନ୍ତି ତା ସଙ୍ଗେ, କାମ ପାଇଁ ତାଗିଦ୍ ଭିତରେ—ଆଜି କିଛି ନ ହୋଇ, ତା ଠୁଣ୍‌ଠାଣ୍ କାମ ଶୁଭୁଥିଲେ ବି ସଙ୍ଗେ କିଏ ଅଛିର ଭାବଟିଏ ଥାଏ । ସେ ବି ଚାଲିଗଲାଣି । ବାରି କବାଟ ଦେବାକୁ ଯାଇ କିଛିବେଳ ଠିଆହୋଇ ରହିଲେ ସେ କବାଟକୁ ଆଉଜି । ବାରିପଟେ ଝଙ୍କେ ଦୂର ଖୋଲା ଜାଗା, ଏଣୁ ତେଣୁ ନାଳ, ଅଳିଆ ଗଦା, କିଛି ଦୂର ଛାଡ଼ି ପୁଣି ଧାଡ଼ି ଧାଡ଼ି ଘର । ଅଦୂର ପାହାଡ଼ତଳେ ଭୂଇଁରୁ କିଛି ଉଚ୍ଚରେ ସମାନ୍ତରାଳ ହୋଇ ଧୂଆଁଳିଆ ସ୍ତରଟିଏ ଜମି ଆସୁଛି । ସରୋଜିନୀ ଅନେକ ସମୟରେ ଭାବନ୍ତି ସେଇଟା କୁହୁଡ଼ି ନା ସହରଯାକର ଚୂଲିଧୂଆଁ ସନ୍ଧ୍ୟାବେଳେ ? ଅନ୍ଧାର ଘୋଟି ଆସୁଛି । ଛୁଆର ଏଯାଏଁ ଦେଖାନାହିଁ । ବାରିକବାଟ ଦେଇ କେତେଥର ବାହାର ଭିତର ହେଲାପରେ ସେ ବାହାର ବାରଣ୍ଡାରେ ବସିଲେ ଚୁପ୍‌ଚାପ୍ ଲାଇଟ୍ ନ ଜାଳି ।

ଏମିତି ସନ୍ଧ୍ୟାଟିଏ ସରୋଜିନୀଙ୍କୁ ଏକୁଟିଆ ପାଇଲେ ତାଙ୍କ ଚାରିଆଡ଼ୁ କ୍ରମେ କ୍ରମେ ଚାପି ହୋଇ ଆସି ଅଣନିଃଶ୍ୱାସୀ କରି ପକାଏ । ଏମିତି ବେଳେ କେମିତି କେଜାଣି ତାଙ୍କର ମନେ ପଡ଼ିଯାଏ—ଛୁଆ ଥରେ କହୁଥିଲା ବିଦେଶରେ ଫାଶୀ

ଆସାମୀକୁ ବିଷଗ୍ୟାସ୍ ପୂରେଇ ରୁନ୍ଧ ଦେଇ ମାରନ୍ତି । ଏସବୁ ମନକୁ ଦବେଇ ଡରେଇ ଦେଉଥିଲା କଥା ଭାବିବାକୁ ସେ ଜମା ଭଲ ପାଆନ୍ତି ନାହିଁ । ସେଇଥିପାଇଁ ସେ କାତର ହୋଇ ବେଶି ବ୍ୟସ୍ତ ହେଇ ପଡ଼ନ୍ତି ଛନ୍ଦା ଆସିବାରେ ବିଳମ୍ବ ହେଲେ ।

ଘର ସାମ୍ନାର ଫ୍ଲେଟିଆ ଲନ୍‌ଟିରେ ସସ୍ତା ବତିଖୁଣ୍ଟର ଆଲୁଅ ପଡ଼ିଲା । ପଡ଼ିଶା ଘରୁ ସ୍କୁଟର୍ ବାହାରିବା ଶବ୍ଦ—ସ୍ୱାମୀ ସ୍ତ୍ରୀ ବାହାରିଲେଣି ସିନେମା କି ବଜାର । ଗୋଟିଏ ଧାଡ଼ିରେ ପକା ଏ ଫ୍ଲେଟିଆ ସହରର ଗୋଳିଆ ମିଶା ସାମାଜିକ ଜୀବନ । ଘାହାନ୍ତାରୁ ଚଢ଼େଇ ବସା ଗୁଡ଼ିଲାପରି ସକାଳୁ ଦଳ ଦଳ ଲୋକ କାରଖାନାକୁ ଯାଆନ୍ତି । ଦି'ପ୍ରହରେ ପଡ଼ୋଶିନୀମାନଙ୍କର ଆସର ଜମେ ଗୋଟିଏ ଘରେ ଅଫିସର, ସିଲେଇ, ସିନେମା ତଥା ଅନୁପସ୍ଥିତମାନଙ୍କର ପାରିବାରିକ ଗୋପନ କଥା ସବୁ ଚର୍ଚ୍ଚା ହୁଏ । ପ୍ରଥମେ ଆସି ସରୋଜିନୀ କେତେ-ଥର ଏମିତି ଆସରରେ ଯୋଗ ଦେଇଛନ୍ତି, ବିଶେଷ କରି ତାଙ୍କର ସମବୟସ୍କାଙ୍କ ଆସରରେ । ତେବେ ଏଠିକାର ସବୁଦିନିଆ ବାସିନ୍ଦା ନୁହନ୍ତି ବୋଲି ହେଉ, ବା ବିଧବା ହୋଇ କେବଳ ଅବିବାହିତା ଝିଅଟି ସହିତ ବେଖାପ୍ ପରିବାରଟିଏ ନେଇ ଚଳୁଥିବା ହେତୁ ହେଉ, ସେ ଆପେ ଆଡ଼େଇ ହେଇଯାଆନ୍ତି । କାହା ଘରକୁ ଗଲେ ଅବଶ୍ୟ ଗପସପରେ ସମୟ କଟେ, ତେବେ ସେ ନ ଗଲେ ବି ତାଙ୍କର ମନେହୁଏ କାହାରି ଯାଏ ଆସେ ନାହିଁ, ସମସ୍ତେ ତାଙ୍କୁ ଭୁଲି ଯାଆନ୍ତି । ଏମିତି କି ଛନ୍ଦା ବି । ଏ କଥା ମନକୁ ଆସିଲାକ୍ଷଣି ତାଙ୍କ ଗୁଡି ଭିତରଟା ଘଷି ଲାଗି ଆଖି ଜକେଇ ଆସିଲା । ତଥାପି ନିଜକୁ ଆତ୍ମକ୍ଲେଶ ଦେଉଥିଲା ପରି ସେ ଜାଣି ଶୁଣି ଭାବିଲେ—ଛନ୍ଦା ବି ଭୁଲିଯାଏ ତା' ମା'ଟିଏ ଏଠି ଘରେ ପଡ଼ିରହିଛି ବୋଲି । ମୁଁ ଯେମିତି ଘରର ଟେବୁଲ୍ ଚଉକି ଭିତରୁ ଖଣ୍ଡିଏ ।

ଗେଟ୍ ଖୋଲିବାର ଶବ୍ଦ ହେଲା ଓ ଧୀର କଥାବାର୍ତ୍ତାର ସ୍ୱର ଶୁଭିଲା । ସରୋଜିନୀ ଆଖିପୋଛି ଆତ୍ମସ୍ଥ ହେଲେ । ସେ ଦେଖିଲେ ଛନ୍ଦା ସଙ୍ଗେ କିଏ ଜଣେ ପୁରୁଷ—ଗୁଡିତିଟା ଗୁଉଁକାରି ହେଲା ଓ ସେ କିଛି ସ୍ଥିର କରିବା ପୂର୍ବରୁ ଛନ୍ଦା ଡାକିଲା, ଗେଟ୍ ଖୋଲି ଆସୁ ଆସୁ—ବୋଉ, ସେଠି ଅନ୍ଧାରଟାରେ ବସିଛୁ ନା କ'ଣ ? ଲାଇଟ୍ ଜାଳିନୁ ?

ସେ ଆଶ୍ୱସ୍ତ ହେଲେ ଯେ ଛନ୍ଦା ତାଙ୍କୁ ଦେଖି ଅପ୍ରସ୍ତୁତ ହେଉନି ଅର୍ଥାତ୍ ଦୋଷ ମନେ କରୁନି ସେ ନିଜକୁ । ସେ ବା କ'ଣ ହଜାରେ ଥର ଏମିତି କୌଣସି ପରିସ୍ଥିତି ପାଇଁ ନିଜକୁ ପ୍ରସ୍ତୁତ କରିନାହାନ୍ତି ?

ଦୁହେଁ ଆଲୋକିତ ବାରଣ୍ଡାକୁ ଉଠିଲେ ଓ ଗଦ୍ ଗଦ୍ ହସି ନମସ୍କାର କରୁଥିବା ଭଦ୍ରଲୋକଙ୍କୁ ଛନ୍ଦା ଚିହ୍ନାଇଦେଲା—ସର୍ବଗ୍ରାହୀ ପଣ୍ଡା, ଏଠିକା କଲେଜରେ ସଂସ୍କୃତ ଅଧ୍ୟାପକ । ଭଦ୍ରଲୋକ ଯୋଡ଼ହସ୍ତ ତଥା ହସ ବଜାୟ ରଖି କହିଲେ—ଆପଣଙ୍କୁ ମୁଁ ଦେଖିଚି ଆଜ୍ଞା ଅନେକଥର । ମୋ ଘର ଏଇ ପାଖରେ ।

ଡାଣ୍ଡ ଘରେ ଇଜି ଚେଆର୍‌ରେ ବସିବାପରେ ଛନ୍ଦା କହିଲା—ବୋଉ, ତୁ ଟିକିଏ ଗପସପ କରୁଥା, ମୁଁ ଚା' କରିଆଣେ ।

ଭଦ୍ରଲୋକ ବିନୀତ ଆପତ୍ତି କଲେ ଥରେ ଓ ମଝି ଟେବୁଲ୍‌ରୁ ଖବର-କାଗଜ ଉଠାଇଲେ । ସରୋଜିନୀ ଲକ୍ଷ୍ୟ କଲେ ଓ ସନ୍ତୁଷ୍ଟ ହେଲେ—ଧୋତି ପଞ୍ଜାବୀ ପିନ୍ଧା ଲୋକଟି ନିତାନ୍ତ ଶାନ୍ତ ଓ ଅମାୟିକ ମନେହେଉଛି । ଡେଙ୍ଗା ଅଛି, ଛନ୍ଦାକୁ ମନ୍ଦ ମାନିବନି । ସଂସ୍କୃତ ଅଧ୍ୟାପକଙ୍କ ଭବିଷ୍ୟତ ଅବଶ୍ୟ ଖାସ୍ ସେମିତି ନୁହେଁ, ତଥାପି—ଭଗବାନଙ୍କ ଇଚ୍ଛା ।

ସରୋଜିନୀ ପଚାରିଲେ—ଏଇ ପାଖରେ ରହନ୍ତି ନା ? ସାଙ୍ଗରେ କିଏ, ବୋଉ ରହନ୍ତି ନା ଏକୁଟିଆ ?

—ମୋର ଆଜ୍ଞା ଘରେ ସ୍ତ୍ରୀ ଓ ପିଲା ଚାରୋଟି । ବଡ଼ ପୁଅ ବାବୁଲା ସପ୍ତମ ପଢ଼ୁଛି···

ପରିବାରର ବିଶଦ୍ ବିବରଣୀ ଶୁଣି ସାରିଲାବେଳକୁ ସରୋଜିନୀ ବେଶ୍ ସମ୍ଭାଳି ଯାଇଥିଲେ । ହସି କହିଲେ—ଆପଣଙ୍କୁ ଦେଖିଲେ ଏତେ ଅଳ୍ପ ବୟସର ଦିଶୁଛନ୍ତି ଯେ ମୁଁ ଭାବିଲି—

ଚା' ନେଇ ପଶି ଆସୁ ଆସୁ ଛନ୍ଦା ଏତିକି ଶୁଣିଲା ଓ ମନେ ମନେ କହିଲା--ଏକଥା ତୁ ନ କହିଥିଲେ ଚଳିଥାନ୍ତା ବୋଉ । ତାଙ୍କ ଚେହେରା ଯୋଗୁ ନୁହେଁ, ମୋ ସଙ୍ଗେ ସେ ଆସିଲେ ବୋଲି ତୁ ଆଶା କରି ପକେଇଲୁ ।

ଭଦ୍ରଲୋକ ଯାଇସାରି ରାସ୍ତା ଉପରେ ଜୋତାଶବ୍ଦ ଶୁଭିଲାପରେ ସର୍ବେଜମୀ କବାଟ ବନ୍ଦକଲେ ଓ ଟାଣୁଆ ଆକଟିଲା ଗଳାରେ କହିଲେ—ମା' ଅବିବାହିତ ଲୋକଙ୍କ ସାଙ୍ଗେ ଏମିତି ସନ୍ଧ୍ୟାବେଳେ ରାସ୍ତାରେ ବୁଲିବା, ପୁଣି ତାଙ୍କୁ ଘରକୁ ଡାକି ଆଣିବା କ'ଣ ସୁନ୍ଦର କଥା ?

ଛନ୍ଦା ଭାବିଲା କହି ଦିଅନ୍ତା—ଆଉ କ'ଣ ଅବିବାହିତ ହୋଇଥିଲେ ବେଶି ସୁନ୍ଦର ଦିଶିଥାନ୍ତା; କିନ୍ତୁ ବୁଝାଇଲା ପରି କହିଲା—ମୁଁ ଡାକିନି ବୋଉ, ବଡ଼ ନଚ୍ଛୋଡ଼ବନ୍ଧା ଲୋକ । ଅଫିସ୍ ଫେରନ୍ତା ରାସ୍ତାରେ ଦେଖାହୋଇଗଲା, ଆଉ ଯାଏ କୁଆଡ଼େ—

ବୋଉ ନରମି ଗଲା । କହିଲା—କିଏ ଦେଖିଦେବ, କି ଗୋଟାଏ କଥା ଉଠାଇ ଦେବ ବୋଲି ମୁଁ ସବୁବେଳେ ଡରୁଥାଏ ମା' । ଯେତେ ପୁରୁଷଙ୍କ ସାଙ୍ଗେ ଚାକିରି କଲେ ବି, ଏକୁଟିଆ ଝିଅ ଅଫିସ୍ ବାହାରେ ସଦାବେଳେ ସଙ୍କୋଚରେ, ସମ୍ଭ୍ରମରେ ରହିବା ଭଲ ।

ଛନ୍ଦାର ଏଥର ବେପରୁଆ ଉତ୍ତର—ତୁ ସିନା ମୋତେ 'ଏକୁଟିଆ ଝିଅ' ବୋଲି ଭାବୁଚୁ ବୋଉ—ମୋର ଆଉ ଝିଅ ବୟସ କାହିଁ ଯେ କିଏ ମୋ'ଠୁ ସଙ୍କୋଚ ଆଶା କରି ଦୂରେଇ ରହିବ !

ବୋଉର ସ୍ତବ୍ଧ ମୁହଁ କି ଉତ୍ତରକୁ ଅପେକ୍ଷା ନ କରି ଛନ୍ଦା ଆରି ଘରକୁ ଯାଇ ରେଡ଼ିଓ ଅନ୍ କରି ବିଛଣାରେ ଲେଟିଲା । ଦୁଇ ଚାରିଟା ଫେମିନା, ଇଭସ୍ ଓ୍ୱିକ୍‌ଲି ଓ ଫିଲମ୍ ଫେୟାର ଖେଳାଉ ଖେଳାଉ ଭାବିଲା—କ'ଣ କରିବ ମଣିଷ ଏବେ, ଘଡ଼ିରେ ଅନ୍ତତଃ ଦଶଟା ବାଜିବା ଯାକେ ।

( ୩ )

ବଡ଼ମା ଭିତର କବାଟ ଖୋଲୁ ଖୋଲୁ ଛନ୍ଦାକୁ ଦେଖି ଚମକି ପଡ଼ିଲେ, କହିଲେ—ଅରେ ଛନ୍ଦା, ତମେ ଏତେଦିନ ପରେ । କୁଆଡ଼େ ଥିଲ ଏତେଦିନ କହିଲ ?

ଛନ୍ଦା ବମାଚ ଭାବରେ ନଜକୁ ମୁକୁଳାଇଲା, ଆଉ ଏଣୁ ତେଣୁ କୈଫିୟତ୍ତ ଦେଲା । ତାକୁ ଏମିତ ଉତ୍ତୁରେଉଡ଼ା ଆତ୍ମୀୟତା ଜମା ଭଲ ଲାଗେନ, ବଶେଷକର ବମା ଭାଉଜଙ୍କ ପର ଆତ୍ମସନ୍ତୁଷ୍ଟ ଲୋକଙ୍କଠୁ । ମୋଟ ଉପରେ ବମା ଭାଉଜ ବୋଲ ବ ସେ ଡାକବା ଆରମ୍ଭ କଲା ତାଙ୍କର ଅନୁରୋଧରେ, ଆଗରୁ ମିସେସ୍ ମହାପାତ୍ର ଡାକୁଥିଲା । ବମଡା ବୋଲ ସେ ଡାକବାକୁ ଇଚ୍ଛାହୁଏ । ତା'ପରେ ତା'ର ଖିଆଲ ହେଲା କହିବାକୁ—ତମେ କୁଆଡ଼େ ଥିଲ ଆଗ କହିଲ ? ମୁଁ ପିନା ଗୃହକଣ୍ଡା ମଣିଷ, ତମେ କାହିଁକ ଆସି ପାରନ ?

ବମା ଭାଉଜ ଗାଇ ବସିଲେ ତାଙ୍କ ଚରଚରିତ ଆତ୍ମକଥା—କ'ଣ କରିବ ବୁଦ୍ଧ । ମୋତେ ସମୟ କାଇଁ ? ସ୍ୱାଙ୍କୁ ତ ଜାଣିଚ, ଦନରାତ୍ତି ଖାଲି କାମ, କାମ । ପିଲା ଦଇଟାଙ୍କ କାମ କର, ରନ୍ଧାବଢ଼ା କର ମୋତେ ସକାଳୁ ସଞ୍ଜଯାକେ ମିନଟେ ଫୁରୁସତ୍ ନାହିଁ । ରଘୁଆଟା ଭଲ କାମ ଦାମ କରୁଥିଲା, ଘରକୁ ଯିବ ବୋଲ କହି ପନ୍ଦର ଦନ ଛୁଟି ନେଲା । ମୋ'ଠୁ କୋଡ଼ିଏଟା ଟଙ୍କା ବ ମାଗିନେଇ ଗଲା ଯେ ଗଲା, ତା'ର ଆଉ ଦେଖାନାହିଁ .....

କଥାର ଖିଅ ଭୁଲି ଛନ୍ଦା ଝରକା ଦେଇ ବମା ଭାଉଜଙ୍କ ପୁଅ ଝିଅଙ୍କ ଖେଳ ଲକ୍ଷ୍ୟ କଲା । ଲନ୍‌ରେ କଲୋନିର ଦଳେ ଗ୍ରେଟପିଲା ହୋ-ହଲ୍ଲା କରୁଚନ୍ତି, ଖେଳରେ ମାତିଚନ୍ତି । ରୁମ୍ ଭିତରକୁ ଫେର ଆସିଲା ବେଳକୁ ବମା ଭାଉଜ ତଥାପି କହି ଗୁଲଚନ୍ତି—ବାପୁର ସ୍କୁଲ ବସ୍ ସେଦନ ବାଟରେ ଖରାପ ହେଇଗଲା । ମୁଁ ଯେ ବ୍ୟସ୍ତ ହେଇ ଖାଲି କାନ୍ଦିଲିଣି, ଇଏ ସେଠୁ କହିଲେ...

ତା'ପରେ ଛନ୍ଦା ମଗ୍ନହୋଇ ଗଳ୍ପର ସନ୍ତୋଷର ପୃଷ୍ଠଭୂମିରେ ନାନା ଭାବ ପ୍ରକାଶିତ ହେଉଥିବା ସେଇ ମୁହଁଟିକୁ ଗୃହିଁରହିଲା—ଅନର୍ଗଳ କଥା ସ୍ରୋତ ଭିତରୁ ସେ ଖାଲି 'ଇଏ', 'ବାପୁ', 'ଲିନା' ଶବ୍ଦମାନ ବାରମ୍ବାର ହାତୁଡ଼ିପିଟା ଦାଉଁ ଦାଉଁ ପର ଶୁଣିପାରୁଥାଏ । ଆଦର୍ଶ ପତ୍ନୀ ଓ ମାତାର ଫର୍ଦ୍ଦକୁ ଖାପ୍ ଖାଉଥିବା ଭଳି ସ୍ନେହ ସି୍ନଗ୍ଧ, ଉତ୍ସର୍ଗୀକୃତ ମୁହଁ ଦଶବର୍ଷ ତଳୁ ବାହାହେଇ ଯାଇଥିଲେ ଏତେବେଳକୁ ତା ନଜ ମୁହଁରେ ବ ଏଇ ଗ୍ରୁପମାପ ଭାବଟିଏ ଫୁଟନ୍ତାଣି ।

ବମା ଭାଉଜ, ରମେଶ ମହାପାତ୍ରଙ୍କ ସ୍ତ୍ରୀ । ସାଧାରଣ ଚେହେରା; ମୋର ବୟସର ହେବେ । ବ. ଏ. ପଢ଼ୁ ପଢ଼ୁ ବାହା ହେଇଥିଲେ । ମୋଠୁ ସୁନ୍ଦର

କେବେ ବି ନଥିବେ । ବି. ଏ. ପଢ଼ିଲାବେଳକୁ ମୋ ବାପା ଯଦି ବାହାଘର ପାଇଁ ଚେଷ୍ଟା କରିଥାନ୍ତେ, ଆଉ ରମେଶବାବୁଙ୍କ ସଙ୍ଗେ ଭେଟ ହୋଇଥାନ୍ତା, ହୁଏତ ମୁଁ ହିଁ ରମେଶ ବାବୁଙ୍କୁ ବାହା ହୋଇଥାନ୍ତି । ଯେ କୌଣସି ଝିଅ ବାହାହୋଇ ପାରିଥାନ୍ତା ରମେଶବାବୁଙ୍କୁ । ଅଥଚ ବର୍ତ୍ତମାନ ଭାବୁଛି ସେ ରମେଶ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ।

ଅତି ବାହ୍ୟା ପିଲାଳିଆ ବିରକ୍ତିଟିଏ ଛନ୍ଦା ମୁହଁ ସାମ୍ନାରେ ଭାଉଁରେଇ ହୋଇ ଓ ବିମଳା ଆଡ଼େ ଚାହିଁବାକୁ ତାର ମନ ହେଲାନି । ଇଏ—ଇଏ—ଇଏ । ଯୌବନ ଆରମ୍ଭରୁ ସେଇ ଢଙ୍ଗ। ଗୋରା ମଣିଷଟି—ତା ଦରମା— ଗୋଟି ଗୋଟି ପିଲା ଦୁଇଟି । ସ୍ତ୍ରୀ ବ୍ୟକ୍ତିର ଆଉ କଣ ଜାଣିତ ବିସ୍ତୃତ ଜୀବନରେ ? ମୁଁ ଛନ୍ଦା ଦାଶ । ସେ କେବଳ ମିସେସ୍ ମହାପାତ୍ର । ବାପୁ ଲୀନାଙ୍କ ମମି, କଲୋନୀରେ ମହାପାତ୍ର ଆଣ୍ଟି ।

ସେ ପଚାରୁଛନ୍ତି—ଆଉ କଣ ଛନ୍ଦା ! ତମ କଥା ଟିକିଏ ଏଥର କୁହ । ତମ ପ୍ରଭାତବାବୁଙ୍କ ଖବର କ'ଣ ?

ବିମଳା ଭାଉଜ ଥରେ ଚିଠିଟାଏ ଦେଖି ପକେଇଥିଲେ—ପ୍ରଭାତ ପାଖକୁ ଛନ୍ଦାର ଅଧାଲେଖା ଚିଠି ଯାହା ଆଜିକାଲି ତକିଆ ତଳେ ଓ ଟେବୁଲ କ୍ଲଥ ତଳେ ଜମାହୁଏ । ବିମଳା ଭାଉଜ କ'ଣ ଜାଣିସିଆଣୀ ହୋଇ ପଚାରୁଛନ୍ତି ?

—ଭୋଜ କେବେ ଦେଉଛ ମ ? ଖାଲି ଏ ଚିଠି ଦିଆନିଆ କେତେଦିନ ଚାଲିଥିବ ? ଛନ୍ଦା ନିଜସ୍ୱର ଶୁଣିଲା—ଗୁଡ଼ ଭାଉଜ । ମୋ ବାହାଘର ଫା' ହର ଆଉ ହେବନି । —କାହିଁକି ମ ? ଏମିତି କାହିଁକି କହୁଛ ? କେତେ ଏମିତି ତମର ବୟସ ହୋଇଛି କି ? ଏଇ ସରକାର ବାବୁଙ୍କ ଭଉଣୀ ପାରୁଲ୍ କଥା ଦେଖୁନ—

ପାରୁଲ୍ ଆଉ ସିପ୍ରାମାନଙ୍କର ପରିଣତ ବୟସରେ ଭାଗ୍ୟ ଖୋଲିଥିବାର ଉଦାହରଣ ଛନ୍ଦା ହଜାରେଥର ଶୁଣି ସାରିଛି । ବିମଳା ଭାଉଜଙ୍କ ପରି ସମବେଦନା-ଭରା ମିଠାସ୍ୱର ବୁଝିପାରୁଥିବା ଗୃହିଣୀ ବି ସେ ଲକ୍ଷେଥର ଦେଖିଛି । ଛନ୍ଦା ହାଲ ଚପିଲା—ମୁଁ ବି ରୋଜଗାରିଆ ସ୍ୱାମୀ ଓ ଦୁଇଟି ସନ୍ତାନର ସୁଖୀ ପରିବାରଟିଏ ପାଇଥିଲେ ଏତେବେଳକୁ ଛନ୍ଦା ପରି ଚାକିରିଆ ଏକୋଇମାନଙ୍କୁ

ଉତ୍ସାହବାଣୀ ଶୁଣାଉଥାନ୍ତି; କିନ୍ତୁ ବସନ୍ତା ଏତକ ଜାଣିରଖ—ଅନ୍ତତଃ ତୋ ଜୀବନରେ ମୁଁ କିଛି ଈର୍ଷା କରୁନାହିଁ—ବିଶେଷତଃ ତୋର ଏ ରଙ୍ଗଛଡ଼ା ମୁହଁ ଓ ଝୁରିଆଡ଼କୁ ଆଗି ଘୂରଉଥିବା ପତିକୁ ତ ଆଦୌ ନୁହେଁ ।

—ମୁଁ ଯାଏ ଭାଉଜ, ଡେରି ହେଲାଣି ।

ବସ ମ, କଣ କହୁଚ । ଏମିତି ଗୁ’ ଟିକିଏ ନଖାଇ ଯିବନା । ମୁଁ ଗପରେ ମାତି ଏଣେ ସବୁ ଭୁଲିଗଲିଣି, ଦେଖିଲ ।

ତା’ପରେ “ଡେରି ହେଲାଣି, ଆଉ କେବେ ଆସିବ” ଓ “ମୋ ରାଣ, ଆଉ ପାଞ୍ଚ ମିନଟ୍ ବସ”ର ଝଣା ଓଟରି ଭିତରେ ଲୀନା ତେଣୁ ପଡ଼ଯାଇ ଆଣୁ, ଗଣ୍ଠି ଛୁଣ୍ଡାଇ ରାହାଧରି ପଦାଙ୍କିଲା ଓ ତା ପଛେ ପଛେ ବାପୁ ନିର୍ଦ୍ଦୋଷ ବୋଲି କୈଫିୟତ୍ ଦେଉ ଦେଉ । ବସନ୍ତ ଭାଉଜଙ୍କ ତତ୍‌କ୍ଷଣାତ୍ ବାତ୍ସଲ୍ୟ ପ୍ରେମର ଫୁଆରାରେ ଛନ୍ଦା କଡ଼କୁ ଆଡ଼େଇ ହୋଇଯାଇ, ଘରୁ ବାହାରି ଆସି ନିଃଶ୍ୱାସ ମାରିଲା ।

( ୪ )

ବସନ୍ତ ଭାଉଜଙ୍କ ଘରୁ ବାହାରି ଆସି ଗେଟ୍ ଖୋଲିବାକୁ ହାତ ବଢ଼ାଇଲା କ୍ଷଣି ତା’ର ମନେପଡ଼ିଲା, ଆଜ ସେ ବେଶ୍ କିଛି ସମୟ ଏଠି କଟାଇଯିବ ବୋଲି ଆସିଥିଲା । ଅଥଚ ଏବେ ସନ୍ଧ୍ୟା ବ ଗାଢ଼ ହୋଇନ । ଗେଟ୍ ଖୋଲିଲେ ହାତରେ ପୁଣି ଅନନ୍ତ ପାଣିଚିଆ ସମୟ ।

ଗେଟ୍‌ରୁ ହାତ ଫେରାଇ ଫାଙ୍କା ମନରେ ଛନ୍ଦା ବଗିଚାକୁ ଚାହିଁଲା । ପିଲାମାନେ ଖେଳସାରି ଚାଲିଗଲେଣି । ସବୁଜ ଲନ୍‌ର ଚାରିକଡ଼େ ରଙ୍ଗୀନ୍ ବିଦେଶୀ ଫୁଲର ସରୁ ସରୁ ବିଛଣା । କିଛି ସମୟ ଆଗରୁ ମାଳୀ ବୋଧହୁଏ ପାଣିଦେଇ ଯାଇଛି । ଉଷୁମ ଓଦାଳିଆ ବାସ୍ନାଟିଏ ଆସୁଛି ମାଟିରୁ । ସବୁଜ ଘାସ କ୍ଳାନ୍ତିକୁ ମନେ ପକେଇ ଦେଉଛି—ଏଇଠି ମୁହଁ ମାଡ଼ି ଶୋଇଗଲେ ପଥର ପରି ଓଜନିଆ ଲାଗୁଥିବା ଛାତିରୁ ଦୁଃଖ ସବୁ ବାମ୍ପ ହୋଇ ବହିଯା’ନ୍ତା କି ନିଃଶ୍ୱାସ ହୋଇ !

—କ'ଣ ଛନ୍ଦା, ମୋ ବଗିଚ୍ଚର ତାରଫ୍ କରୁଚ ?

ଛନ୍ଦା ଫେରି ଚାହିଁଲା, ଛୁଇ ଅନ୍ଧାରରେ ତାଙ୍କ ଲମ୍ବା ଶରୀରରୁ ରମେଶବାବୁ ବାରହୋଇ ଯାଉଚନ୍ତି । ପଚାରିଲେ—ଅନେକ ଦିନ ପରେ, କ'ଣ ଆସିଲ ନା ଯାଉଚ ?—ଯାଉଚି, ଅନେକବେଳୁ ଆସି ବସିଲାଣି ।

—ବେଶି ବେଳ ତ ହୋଇନି, ଚାଲ ଆଉ ଟିକଏ ବସିବ । ବିନୀ ନିଶ୍ଚେ ତା' ଘରଦ୍ୱାର କଥାରେ ତମକୁ ବୋର୍ କରିଥିବ । ମୁଁ ଇଣ୍ଟରେଷ୍ଟିଂ କଥା କହିପାରେ, ଚାଲ ।

ଛନ୍ଦାର ହଠାତ୍ ଖିଆଲ୍ ହେଲା ସେ ନିଜ ଅଜାଣତରେ ରମେଶ ବାବୁଙ୍କ ଆସିବାକୁ ଅପେକ୍ଷା କରି ହିଁ ସମୟ ଗଡ଼ାଉଥିଲା କି ଏଇଠି ? ତାଙ୍କ ଅନୁପସ୍ଥିତିର ନିରାଶାରେ ବିନୀ ଭାଉଜ ଅନ୍ୟ ଦିନଠୁ ବେଶି ବିରକ୍ତିକର ମନେ ହେଉଥିଲେ ?

ରମେଶବାବୁ କହି ଚାଲିଲେ—ନା ଏଇ ଲନ୍‌ରେ ଚେଆର୍ ପକାଇବା ? ବିଶେଷ ଥଣ୍ଡା ତ ଲାଗୁନି । ରୋମାଣ୍ଟିକ୍ ଲାଗିବ । ବିନୀକୁ ଡାକି ଲାଭ ନାହିଁ, ସେ ଏବେ ରୋଷେଇଘରେ ଲାଗି ଯାଇଥିବ ।

ଛନ୍ଦା କହିଲା—ଥାଉ ଆଉ କେବେ ଆସିବି । ଆଜି ବହୁତ ଡେରି ହୋଇଗଲାଣି, ବୋଉ ତେଣେ ବ୍ୟସ୍ତ ହେବ ।

—ଦିନେ ବ୍ୟସ୍ତ ହୁଅନ୍ତୁ ନା । ମୁଁ ତମକୁ କେତେଦିନ ପରେ ଦେଖିଲି ଭାବିଲ ।

ପାଖେଇ ଆସି ସେମିତି ହାଲ୍‌କା ଗଳାରେ ରମେଶବାବୁ କହିଲେ— ଆସନ୍ତା ରବିବାର ଦି'ପ୍ରହରେ ଆସ, ତାସ୍ ଖେଳିବା କଣ କହୁଛ ?

ଟିକଏ ଧୀର ସ୍ୱରରେ ଆଖି ମାରି ଥଟ୍ଟାକଲା ପରି ଯୋଗକଲେ— କହିବ ଯଦି ବିନୀକୁ ମ୍ୟାଟିନୀ ଶୋ' ପଠେଇଦେବି ପିଲାଙ୍କ ସଙ୍ଗେ ।

କଥାର ଶେଷାଂଶ ନ ଶୁଣିଲା ପରି ଛନ୍ଦା ଯାଉ ଯାଉ କହିଲା—ବିନୀ ଭାଉଜଙ୍କୁ ନେଇ ଆସିବେ କେବେ ଆମ ଘରଆଡ଼େ । ନମସ୍କାର ।

ଆଉ ମନେ ମନେ ସ୍ପଷ୍ଟ କରି କହିଲା– ରମେଶବାବୁ ସମ୍ମାନ କି ଭଦ୍ର ବ୍ୟବହାରର ଯୋଗ୍ୟ ନୁହନ୍ତି ।

ଛୁଇଁଛୁଇଁଆ ବଗିଚାରୁ ବେପରୁଆ ଅଧା ହସିଲା ଚାପା ସ୍ୱର ଶୁଭିଲା— ରାଗିଲ କି ଛନ୍ଦା ମୋ କଥାରେ ? ଥଟ୍ଟାରେ କହିଲି, ବାମୀଙ୍କୁ କହିବନି ବୁଝିଲ ।

ପୁଣି ସେହି ଅନୁଭୂତି, ରମେଶବାବୁଙ୍କ ଜୀବନ୍ତ ଆବହାଓ୍ୱା ଆପେ ସଞ୍ଚରିଯାଏ ଆଖି ପାଖକୁ । ନିଜ ହସିଲା ଉତ୍ତର ଶୁଣିଲା ଛନ୍ଦା—କହିଦେବି ବାମୀ ହିଁ ତାଙ୍କୁ ।

ରମେଶ ବାବୁ ହୋ' ହୋ' ହସିଲେ । ଛନ୍ଦାର ମନେହେଲା ହଠାତ୍ ଉପର ଝଲକଟିଏ ଛିଡ଼ିଗଲା କି ସେ ହସରେ । ଛନ୍ଦା ଗେଟ୍ ବନ୍ଦ କରୁ କରୁ ଶୀଘ୍ର ପାହୁଣ୍ଡରେ ପୁଣି ତା' ପାଖେ ପହଞ୍ଚିଯାଇ ପଚାରିଲେ ରମେଶବାବୁ—ଅନ୍ଧାର ହେଲଣି, ଡରିବନି ତ ? ଯିବି ସାଙ୍ଗରେ ?

ଛନ୍ଦା ଗେଟ୍ ବନ୍ଦ କରିଥିଲା, ଭିତରେ ପାଖେ ରମେଶବାବୁ । ନିଅନ୍ ମିଶା ଫିକା ଜହ୍ନ ଆଲୁଅରେ ଦିଶୁ ଛି—ପବନ ହାଲ୍କା ଉଡ଼ାଉଥିବା ତାଙ୍କ ବାଳ, ଉଜ୍ଜ୍ୱଳ ତାଙ୍କ ଆଖି ଓ ଜୀବନୋଚ୍ଛଳ ହସ ।

ଛନ୍ଦା ଓଠରୁ ପ୍ରତିବିମ୍ବିତ ହସ ଲିଭିଲା—ଥାଉ, ମୁଁ ଚାଲିଯିବି ଏକା ।

( ୪ )

ରାତିବେଳ । ଛନ୍ଦା ରୁଟି ବେଲୁଥିଲା ଆଉ ସରୋଜିନୀ ଚୂଲାରେ ସେକୁଥାନ୍ତି । ଗପି ଚାଲିଥାନ୍ତି କେତେଆଡ଼ୁ କେତେ କଥା । ସବୁପାକ ତାଙ୍କ ଅନୁଭୂତିରୁ । ସ୍ମୃତି ଭିତରେ ବିଶେଷ ଲୁଚେଇବାର କିଛି ନାହିଁ ଛନ୍ଦାଠି, କିଛି ବନ୍ଦକେଇବାର ନାହିଁ । ସରୋଜିନୀଙ୍କ ଧାରଣା ସବୁ ଭିତରେ ଜୀବନଟିଏ ଯେମିତି ହେବାର କଥା ସେମିତି ସାଧାରଣ ଜୀବନଟିଏ ତାଙ୍କର ବି ହେଲା ବା ଆଉ ଟିକିଏ ସୁଖ ସେ ପାଇଥାନ୍ତେ । ଏତେ ଦୁଃଖ ତାଙ୍କୁ ଅକାରଣେ ମିଳିବାର ନ ଥିଲା ।

ଛନ୍ଦା ଶୁଣେ । ସୁଖ କଥା ସେ ଆତ୍ମବିସ୍ମୃତ ହୋଇ ଗପନ୍ତି । ଦୁଃଖ କଥା କହିଲାବେଳେ ଗାଲ, ନାକ କଡ଼ ଦେଇ ବହି ଯାଉଥିବା ଆଖି ଲୁହକୁ ନ ପୋଛି ଭଙ୍ଗା ଭଙ୍ଗା ସ୍ୱରରେ କହନ୍ତି—ମୋ ଜୀବନ ଖାଲି ଏଇଆ ଲୋ ମା' ! ଦୁଃଖ ଛଡ଼ା ଆଉ କିଛି ମୁଁ ପାଇନାହିଁ ଜୀବନରେ ।

ଛନ୍ଦା ସାନ୍ତ୍ୱନା ଦେବା ଦରକାର ମଣେନା । ସେ ଜାଣେ ସରୋଜନୀ କଥା ମଝିରେ ତା'ର ଯୋଗଦେବା ଶୁଣିବାକୁନ । ସେ କହିଯାଆନ୍ତି । ଆଉ କାହା ଆଗେ କହି ବା ପୁଣିଥରେ ଜୀଇଁନେବ ସେ ଗଲା ଦିନ ସବୁ । ହେଉପଛେ ସେ ଦୁଃଖର ଦିନ, ଥରେ ସ୍ମୃତି ବାଲିଗରଡ଼ା ପର ଚିକ୍କଣ ପାଲଟିଲେ ଆଉ ଦୁଃଖକଷ୍ଟର ମୂନ କୋଉଠି ଥାଏ ।

—ସେଥର ଲୁନା ଦେଢ଼ ବର୍ଷର ହୋଇଥାଏ, ମୋ ଡାହାଣ ହାତ-ପୋଡ଼ି ଯାଇଥାଏ (ଏଇ ଦେଖ୍—ଦାଗ ଲିଭି ଗଲାଣି ଏବେ) । ସେଇ ହାତରେ ଘର ଯାକର କାମ କରେ, ବାସନମାଜେ, ଘର ଲିପେ । ଶାଶୁଙ୍କୁ ଭାତ ଟିକେ ଗାଳିଦିଅ ବୋଲି କହିଲି ଯେ ମୁହଁ ଛୁଆଁଇ ଦେଲେ । ଗାଳୁ ଗାଳୁ ହାତରୁ ଖସିଗଲା ହାଣ୍ଡି—

ଅନେକ କଥା ଦୋହରି ହେଇ ହେଇ ଦାଢ଼ ମରିଯାଇଥାଏ ଛନ୍ଦାପାଇଁ । ସେଥିଲାଗି ବେଳେ ବେଳେ ସରୋଜନୀଙ୍କ ଆଖି ଭରି ଆସି ସ୍ୱର ନାଲୁଆ ଶୁଭିଲା-ବେଳକୁ ଛନ୍ଦା ଗୁଡ଼ିକନ କଥାକୁ ଫେରଆସେ, ଖସି ଚାଲି ଯାଇଥିବା କଥା ସବୁ ଅନ୍ଦାଜରେ ଯୋଡ଼ାଯୋଡ଼ି କରିନଏ । ଆହା, ମିଛରେ ଗପି ଯାଉଛି ବିଚାରୀ ।

ସରୋଜନୀ ସାଙ୍ଗ ପର ଗପନ୍ତି - ପୁଅ ଝିଅ କେହି ହେବା ପୂର୍ବରୁ, ବାହାନାନର ବର ପ୍ରହ୍ଲାଦ ଭାଇ ପାଣିଚଳେ ଥରେ ତାଙ୍କ ଉପରକୁ ଥଟ୍ଟାରେ ଗୁଡ଼ ଦେଇଥିଲେ ଯେ ଛନ୍ଦାର ବାପା କେମିତି ତାଙ୍କ ସଙ୍ଗେ ତିନି ଦିନ କଥା କହି ନ ଥିଲେ, ସେ ନ ଖାଇ, ନ ପିଇ ଶୋଇଥିଲେ ସେଇ ତିନିଦିନଯାକ ।

ଲୁଚି ବେଲୁ ବେଲୁ ଛନ୍ଦା ଭାବିଲା – ଆଉ ଦୋଳିଦିନ ମୋ କୋଳିଗ୍ କେଇଜଣ ଘରକୁ ଆସିଲେ ରଙ୍ଗ ଦେବାକୁ ଯେ, ତୋ'ର ଆଗରେ ତ ସେମାନେ ମୋ ମୁହଁରେ ଅବିର ବୋଳିଲେ—ତୁ କେତେ ରାଗିଲୁ । ବାପା କ'ଣ ବା ଭୁଲ୍

କଲେ, ତୋତେ ପ୍ରହ୍ଲାଦ ମଉସା ପାଣି ଛୁଟିଲାବେଳକୁ ତୋ ବୟସ ଆହୁରି ଯଥେଷ୍ଟ କମ୍ ହୋଇଥିବ ।

ବୋଉ ସେଠୁ ପୁଣି ରଜଦୋଳି କଥାକୁ ଗଲାଣି—ଭୂଆସୁଣି ହେଲା ପରେ ବି ସେ କେମିତି ଦୋଳି ଲୋଭ ଛାଡ଼ିପାରେନି । କହୁ କହୁ ନିଆଁକୁ ଅନେଇ ଥିବା ଆଖି ଦାଇଁଠାରେ ଦୋଳି ଆକାଶକୁ ଉଠି ଯିବାର ପୁଲକ ଛୁଇଁ ଯାଉଚି । ସେଇ ଆଖିକୁ ଚାହୁଁ ଚାହୁଁ ଛଦା ଭିତରକୁ ବି କିଛିଟା ଅନୁଭୂତି ଚହଲି ଆସେ ।

ତୁ ଗପ୍ ବୋଉ—ତୋ ସ୍ମୃତିର ଦୁନିଆଁରେ ମୁଁ ବି ଟିକେ ବୁଲିଗଲେଁ, ତୋ ଜୀବନରେ ପୁରୁ ପୁରୁ ଅଚହ୍ନା ମଣିଷଟିଏ ପରି—ଯଦିଓ ମୁଁ ବି ତୋ ଜୀବନର ଚରିତ୍ରଟିଏ ବୋଲି ମୁଁ ବୁଝୁଛି । ଛଦା କଥା ବେଳେ ବେଳେ ଆସିଯାଏ ତୋ ଗପ ଭିତରେ, ମୋ'ର କଥା, ଯେତେବେଳେ ମୁଁ ତୋ ଜୀବନର ଅଂଶ ବ୍ୟତୀତ ଆଉ କିଛି ନଥିଲି । ତୋର ଇଚ୍ଛା ନେଇ ତୁ ମୋତେ ବଞ୍ଚିବା ଶିଖାଉଥିଲୁ, ଇଚ୍ଛା ହେଲେ ଧମକ ଦେଇ ମୋ ମନ ଭିତରୁ ପାଖକୁ ସୁଦ୍ଧା ଓଲଟାଇ ଝାଡ଼ି ପକାଉଥିଲୁ । ଏବେ କିନ୍ତୁ ସେ ଅଧିକାର ମୋର ଏକଚାଟିଆ, ତୁ ହିଁ ନିଜେ ମୋତେ ଡାକୁନୁ, ତୋ ମନ ମୋ ପାଖେ ଖୋଲି ଧରୁଚୁ । ମୁଁ ଜାଣେ । ମୋର ସଚେଷ୍ଟ ଅଂଶ ଗ୍ରହଣ ତୁ ସେବେ ବି ଚାହୁଁ ନ ଥିଲୁ । ଏବେ ବି ନୁହେଁ । ମୁଁ ଦର୍ଶକ, ଶ୍ରୋତା । ତୋ'ର ତ ବର୍ତ୍ତମାନ ନାହିଁ କି ଭବିଷ୍ୟତ ନାହିଁ, ଜୀବନ କହିଲେ ହିଁ କେବଳ ତୋ ଅତୀତ—ତୋ ଗପର ଚରିତ୍ରମାନେ ପ୍ରାପ୍ୟ ଅସ୍ତିତ୍ୱହୀନ ମୋ ପାଇଁ । ନଈ ଘାଟରେ ତୋ ଝିଅଦିନ ସାଙ୍ଗ ମେଳ କଥା, ତୋ ଶାଶୁଶ୍ୱଶୁରଙ୍କ ଅତ୍ୟାଚାର, ବା ମୋ ବାପାଙ୍କ ସହିତ ବାକ୍ ବିତଣ୍ଡା—ଯାହା କିଛି ତୁ ମନଇଚ୍ଛା ବନେଇ ଚୂନେଇ କହିପାରୁ । ମୋର କିଛି ଯାଏ ଆସେନାହିଁ, ବିଚାର କରିବା ଦାୟିତ୍ୱ ମୋର ନୁହେଁ । ମୋଠୁ ତୋର ଶୁଣିବା ପାଇଁ ବି କିଛି ନାହିଁ । ତୋ ଧାରଣା ତୁ ମୋ ବିଷୟରେ ସବୁ ଜାଣିଚୁ, ଯାହା କହିଲି ଭଲ ଅଛି । ତୋ ଆଖିରେ ମୋ ଅତୀତ କେବଳ ବାଲ୍ୟକାଳ; ଶୁଖିଲା ଦୈନନ୍ଦିନ ଅଫିସ ଯା-ଆସ ବର୍ତ୍ତମାନ ଓ ଅସ୍ପଷ୍ଟ ଭବିଷ୍ୟତଟିଏ । ତୁ ପୁଣି ସବୁ ଦାୟିତ୍ୱ ମୁଣ୍ଡାଇ ଆବୋରି ଜଗି ବସିଚୁ ମୋ ବର୍ତ୍ତମାନ ଓ ଭବିଷ୍ୟତକୁ । ତୁ ବୁଝିବୁ ନାହିଁ—ତୋ'ଠୁ ଅଲଗା, ବହୁତ ଦୂରରେ ମୋ ନିଜସ୍ୱ ସ୍ମୃତି ଅନୁଭୂତି ଆଉ କଳ୍ପନା ମାନ । ମୋ କହିଲି କେଉଁ କଥା ବା ତୁ ସହିପାରିବୁ—ଏଇ ଦୈନନ୍ଦିନ ଅଫିସର ଏଣୁ ତେଣୁ ଘଟଣା କି ମାଗାଜିନ୍‌ରୁ ପଢ଼ା କେଉଁ ଚମକିଦିଆ ଘଟଣାଟିକୁ ଛାଡ଼ିଦେଲେ ।

—କ'ଣ ଏତେ ଭାବୁଚୁ ଛନ୍ଦା ? ଶୁଣୁନୁ କି ମୋ କଥା ?

—ଶୁଣୁଚି ତ ବୋଉ !

—ଜମା ଶୁଣୁନୁ । ଖାଲି ଭୁନାଭାମା ବସିଚୁ ଆଜି । କ'ଣ ହେଲା କି ଅଫିସ୍‌ରେ ?

ବୋଉ ମୁହଁରେ ସ୍ନେହ ଓ ଶଙ୍କା, ହାତ ବଢ଼ାଇ ପିଠି ଆଉଁସି ଦେବାର ଭାବ । କୋଉଠି ପଡ଼ିଗଲୁ କି ? ଉଠ୍, କାନ୍ଦନା । କିଏ ନେବୁ କହିଲୁ, ଖେଳନା ନା ମିଠେଇ ?

—ବୋଉ, ଆରମାସ ଏଠି ଗୋଟେ କଲ୍‌ଚରାଲ୍ ପ୍ରୋଗ୍ରାମ୍ ହେବ ଛନ୍ଦାନ ଧରି, ଓ୍ୱିଣ୍ଟର୍ ଫେଷ୍ଟିଭାଲ୍ । ଡ୍ରାମା, ଗୀତ, ନାଚ ସବୁ ହେବ । ମୋ କଲିଗ୍‌ମାନେ ମୋତେ ବହୁତ କରି ଲଗାଇଚନ୍ତି ଡ୍ରାମାରେ ପାର୍ଟଟିଏ ନେବାକୁ । ଲକ୍ଷ୍ମୀ ବୋଲି ମୋର ଯେଉଁ କେରଳୀ ସାଙ୍ଗ ଜଣକ, ତାର ଭାରି ଇଚ୍ଛା ସେ ରୋଲ୍‌ଟା ନେବାକୁ । ତାର କିନ୍ତୁ ଓଡ଼ିଆ ଉଚ୍ଚାରଣ ବଡ଼ କଦର୍ଯ୍ୟ—

ବୋଉ ମୁହଁକୁ ବାଆଁରେଇ ନ ଚାହିଁଲା ଯାଏ ଛନ୍ଦା କହି ଚାଲିଥିଲା, ତା ମୁହଁରେ ଆଖି ପଡ଼ିଲାକ୍ଷଣି କିନ୍ତୁ ଅଚାନକ ବନ୍ଦ ହୋଇଗଲା ତା କଥା ।

କିଛି ବୁଝି ପାରୁ ନ ଥିବା ଭଳି ଥକ୍‌କା ମୁହଁରେ ଧୀରେ ଧୀରେ ସେ କହିଲେ—"କ'ଣ କହିଲୁ ଛନ୍ଦା, ତୁ ଡ୍ରାମା କରିବୁ ବୋଲି କହୁଚୁ ?"

ଯେତେ କାନ୍ଦିଲେ ବି ଖେଳନା, ମିଠେଇ ଦେବାକୁ ଆଜି ବୋଉ ପ୍ରସ୍ତୁତ ନୁହେଁ । ମାଡ଼ରୁ କାନ ଯୋଡ଼େଇ ଦେବାକୁ ବି ନୁହେଁ । ଗୁଣୁଗୁଣିଆ ସ୍ୱରରେ ଛନ୍ଦା ଆଉ ନାଚ, ଡ୍ରାମାରେ ଭାଗ ନେଉଥିବା ଝିଅଙ୍କ ଉଦାହରଣ ଦେଇବସିଲା । ବୋଉ ବି ସବୁ ନାକଚ କରିଦେଲା—"ଲକ୍ଷ୍ମୀ, ସିଏ ତ ଓଡ଼ିଆ ଝିଅ ନୁହେଁ, କେରଳୀ; ମିସେସ୍ ମହାନ୍ତି ଡ୍ରାମା କରିବେ, ସେ ତ ଆଉ ଝିଅ ନୁହନ୍ତି, ତାଙ୍କ ସ୍ୱାମୀ ଅନୁମତି ଦେଲେ, ତାଙ୍କୁ କହିବାକୁ କିଏ ଅଛି ? ଅଳକା ? ଓଃ—ସେ ତ ପି. ୟୁ. ପଢ଼ୁଚି, ନାଚିବାର ବୟସ ତାର ଯାଇନି, ଓଡ଼ିଶୀ ବି ଶିଖୁଚି ମାଷ୍ଟର ରଖି । ତୁ ବି ସ୍କୁଲ, କଲେଜରେ ସବୁଥିରେ ମିଶୁଥିଲୁ, ମୁଁ କ'ଣ ମନା କରୁଥିଲି ?"

ସେମିଷେଇ ପରେ ଦୁହେଁ ନିଜ ନିଜ ସମସ୍ୟା କାଟିଲେ କିଛି ବେଳ । ଖାଇଲା ବେଳେ ସରୋଜିନୀ କହିଲେ—"ଡ୍ରାମାରେ ମିଶିବାକୁ ମନାକଲି ବୋଲି ରାଗ ରଖିଚୁ ଏ ଯାଏଁ, ନାଇଁ ମା' ?"

ନନ୍ଦା ସହଜ ଗଳାରେ ଉତ୍ତରଦେଲା—"ନାଇଁ ଯେ, କରିଥିଲେ ବ କିଛି କ୍ଷତି ହୋଇ ନ ଥାନ୍ତା । ଏଠି ତ ପ୍ରତିବର୍ଷ କେତେ ସ୍ତ୍ରୀ ଲୋକ ଭାଗନିଅନ୍ତି ଏମିତି ଶୋ' ମାନଙ୍କରେ । ଆଉ ମୁଁ ବ ଘରେ ବସି ବସି କେମିତି ବୋର୍ ହେଉଚି ତୁ ତ ଦେଖୁଚୁ ।"

ସରୋଜିନୀ କେମିତି ବ୍ୟଥିତ ଦେଖାଗଲେ । କହିଲେ—ସନ୍ଧ୍ୟାବେଳେ ପଡ଼ିଶା ଘରକୁ ସବୁ ବୁଲିବାକୁ ଯାଉନୁ, ଘରେ ବସିବାକୁ କିଏ କହୁଚି ! ଆଉ ମନକୁ ଲଗାଇବାକୁ ଚାହିଁଲେ ଘରେ ବସି ବ କେତେ କାମ କରିବାକୁ ଅଛି । ତା'ଛଡ଼ା ତୁ ତ ସାଙ୍ଗମାନଙ୍କ ସଙ୍ଗେ ମିଶି ସିନେମା ଯାଉ, ବଜାର ଯାଉ, କିଛି କ ମନାକରେ ? ଡ୍ରାମାରେ ମିଶିବା କଥା ଅଲଗା ।"

—କାହିଁକି, ମୁଁ ତ ପୁଣି ସ୍କୁଲ କଲେଜରେ ପଢ଼ିଲାବେଳେ ସବୁଥିରେ ଭାଗ ନେଉଥିଲି ।

—ସେ ସବୁ ଦିନ ଅଲଗା ଥିଲା, ପିଲାଦିନ, ପାଠପଢ଼ାଦିନ । ଏବେ ତୁ ଆଉ ପିଲା ହୋଇ ନାହୁଁ, ମୁଁ ଆଉ ତୋତେ ସବୁ କଥା ବୁଝେଇ ପାରିବି ? ତୁ ଯାହା ଭଲ ଭାବୁଚୁ କର୍ ।

ବୋଉର ଗଳାରେ ଆଉ ବୁଝେଇଲା, ସାକୁଳେଇଲା ଭାବ ନାହିଁ, ବରଂ ସେକ୍‌ଟୋକ୍ ଗଳା; କିନ୍ତୁ ତାର ଭୁରୁକୁଞ୍ଚା କପାଳ ଓ ଗମ୍ଭୀର ଖାଇବା ଭଙ୍ଗୀ ଆହୁରି କେତେକ କଥା ନନ୍ଦାକୁ ସ୍ପଷ୍ଟ କହିଦେଲା—ତୋ ପିଲାଦିନ ସଙ୍ଗେ ହସଖେଳ ପିଲାଳିଆମିର ଦିନ ଚାଲିଯାଇଚି । ଅନ୍ୟ ସବୁ ନାରୀଙ୍କ ପରି ବେଳ କାଟିବାର ଦିନ ତୋର ଏଯାକେ ଆସିନାହିଁ । ଅତଏବ ତୋର ବଞ୍ଚିବା ସ୍ଥଗିତ ରଖାଯାଉ ଆପାତତଃ ।

ନନ୍ଦା ବିସ୍ମିତ ହେଲା, ବୋଉ କଥାରେ ନୁହେଁ, ନିଜକୁ ଚାହିଁ । ଆଉ କେତେଦିନ ମୋତେ ଏମିତି ଜବରଦସ୍ତି କାନି ଘୋଡ଼େଇ ରଖିବୁ ବୋଉ, ତୋ କାନି ଭଲ ମୋତେ ପାଉଚି ? ମୁଁ ରହିଥିବି ସବୁଦିନେ ଏମିତି ହାଣ୍ଡିଘୋଡ଼ା ବାଙ୍ଗରା ହଳଦିଆ ଚୂରା ହୋଇ ?

ସେ ହଠାତ୍ ପଗ୍ଚରିଲ—କ'ଣଟାଏ ଏମିତି ହୋଇଯିବ କି ଷ୍ଟେଜ୍‌କୁ ଥରେ ଗ୍ଚଲିଗଲେ ?

ସରୋଜିନୀ ଛନ୍ଦା ମୁହଁକୁ ଅନେଇଲେ—ଦୁର୍ନାମ ହେବ । ଝିଅ ହୋଇ ନିଜ ନାଁ, ପରିବାରର ନାଁରେ ଦୁର୍ନାମ ଆଣିବା ଅପେକ୍ଷା ମରିଯିବା ଭଲ ।

—ମରିଯିବା କାହାପାଇଁ ଭଲ ? ତମମାନଙ୍କ ପାଇଁ, ପରିବାର ପାଇଁ ନୁହେଁ ?

ସରୋଜିନୀ ଏ ରୁଢ଼ସ୍ୱର ଆଗରୁ ଶୁଣିଛନ୍ତି । ଅବିଚଳିତ ସ୍ୱରରେ କହିଲେ—କ'ଣ ତୁ କେତେବେଳେ କହୁ ମୁଁ ବୁଝିପାରେନି ।

ତା' ପରେ ସୁସ୍ଥେ ପାଣିପିଇ ଉଠି ବାରଣ୍ଡା ନଳା ପାଖେ ହାତ ଧୋଉ ଧୋଉ କହିଲେ—ତୋ ଭାଉଜ ଲେଖିଚି, ସେମାନେ ତୋ ପାଇଁ ଗୋଟେ ଭଲ ଜାଗାରେ ପ୍ରସ୍ତାବ ଦେଇଛନ୍ତି । ପିଲାଟି ଯଦି ଶୁଣେ, ତୁ ଏଇଠି ଡ୍ରାମାରେ ପାର୍ଟ କରୁଚୁ, କଣ ହେବ କହିଲୁ ?

ଥାଳି ଉପରେ ଛନ୍ଦାର ହାତ ନିସ୍ତେଜ ରହିଗଲା । ବୋଉର ଶେଷ ଅସ୍ତ୍ର । ହଠାତ୍ କୋହଟାଏ ଉଠି ତା ତଣ୍ଟି ପାଖେ ଗୁଣ୍ଡାଟାକୁ ବାନ୍ଧି ପକାଇଲା ।

( ୭ )

ଦର୍ପଣର ଝିଅଟି ସେ କୌଣସି ଫ୍ୟାଶନ୍ ମାଗାଜିନ୍‌ର ମଝିପେଜ୍ ମଡ଼େଲର ବି ହୋଇ ପାରିଥାନ୍ତା । ତା' ଆଖିତଳେ ଗ୍ଳାଇ, କଜଳର ସରୁ ସରୁ ଗାର ଏଇ ଖାଲି ଆଖିରେ ଦିନା ଦିଶିଯାଉଚି, କେଉଁ ବଡ଼ଟିମିଆନ୍‌ର ହାତରେ ଉଜ୍ଜ୍ୱଳ ଷ୍ଟୁଡ଼ିଓ ଲାଇଟ୍ ତଳେ ଧରାପଡ଼ନ୍ତା ନାହିଁ । ଖାଲି ଆଖିରେ ଧରା ପଡ଼ିଯିବାର ଯେତେକ ଭୟ । ପପୁଲାର୍ ରଙ୍ଗୀନ୍ ମାଗାଜିନ୍‌ମାନ ପଢ଼୍ ପଢ଼୍ ଛନ୍ଦାର ଅନେକ ସମୟରେ ମନେହୁଏ—ଆହା, ସେମିତି କୌଣସି ଜୀବନ ହେଲାନାହିଁ କାହିଁକି ତା'ର—ବଡ଼ କେଉଁ ନଗରୀରେ, ଯେଉଁଠି ଖାଲି କ୍ୟାମେରା କି ରେଡ଼ିଓ ଦେଇ ଲୋକଙ୍କ ସାଙ୍ଗେ ସେ ଭେଟାଭେଟି ହେଉଥାନ୍ତା । କେତେବେଳେ ବାହାରକୁ

ଆସିଲେ ଦୂରରୁ ଖାଲି ସମ୍ଭ୍ରମ ପାଉଥାନ୍ତି । ଲୋକଙ୍କ ଆଖିକୁ ଏତେ ଭୟ କରିବାକୁ ପଡ଼ନ୍ତାନି । ସେ ଶୁଖିଲା ଅଫିସଟାରେ କାମ କରୁ କରୁ ଚୁପ୍‌ଚାପ୍ କଥା ଶୁଣି ନିଜକୁ ଏତେ ନଗଣ୍ୟ, ଦୟନୀୟ ଲାଗନ୍ତାନି ।

କାଲି ଦରମା ପାଇଲା ପରେ ଲକ୍ଷ୍ମୀ ସଙ୍ଗେ ବଜାର ଯାଇଥିଲା ଛନ୍ଦା, ଲକ୍ଷ୍ମୀ ସଙ୍ଗରେ ମିଶି ଅନେକଗୁଡ଼ାଏ ପ୍ରସାଧନ ଜିନିଷ କିଣି ଆଣିଚି, ନୂଆ ବିଜ୍ଞାପନରୁ ପଢ଼ି । ଆଉ ଆଜି ସନ୍ଧ୍ୟାରେ ବି ମିନତିର ବାହାଘରର ରିସେପ୍‌ସନ । ଯିବାକୁ ସେମିତି ଖାସ୍ ଆଗ୍ରହ ନଥିଲେ ବି, ଏମିତି ଗହଳି ଚହଳିରେ ସମୟ କଟାଇବାକୁ ସନ୍ଧ୍ୟାଟିଏ କ୍ୱଚିତ୍ ମିଳେ । ତା'ଛଡ଼ା ଭଲକରି ଟିକିଏ ମେକ୍‌ଅପ୍ କରି, ବନାରସୀ ଶାଢ଼ୀଟିଏ ପିନ୍ଧି ବାହାରିବାକୁ ସୁଯୋଗ ମିଳିବ । ଆହୁରି ଅନେକଙ୍କୁ ଭଲ ବେଶପଟାରେ ଦେଖିହେବ, ସେମାନଙ୍କ ବିଷୟରେ ତା'ର ଜଣେ ଅଧେ ସାଙ୍ଗଙ୍କ ସହ ଆଲୋଚନା କରିହେବ ।

ଆଜି ସକାଳୁ ଛନ୍ଦା ରନ୍ଧାବଢ଼ାର ଦାୟିତ୍ୱ ନିଜେ ନେଇ ବୋଉକୁ ପଠାଇ ଦେଇଛି ରବିବାବୁଙ୍କ ଘରକୁ—ତାଙ୍କ ମା' ଆସିଚନ୍ତି, ବୋଉର ଅନେକ ଦିନର ପରିଚିତା । ବୋଉକୁ ଟିକିଏ ବିଶ୍ରାମ ଦରକାର । ଛନ୍ଦା ବି ଘରେ ଏକୁଟିଆ ମନ ଇଚ୍ଛା ଦର୍ପଣ ଆଗରେ ବସିପାରିବ ।.

ପ୍ରସାଧନରେ ସମୟ ବି କଟେ, ସନ୍ତୋଷ ବି ମିଳେ । ଛୁଟିଦିନ ଗୋଟିଏ ଓଳି ତାର ପ୍ରାୟ ପ୍ରସାଧନରେ କଟେ, ବାକି ସମୟ ସାଧାରଣତଃ କୌଣସି ପତ୍ରିକାରୁ ପଢ଼ା ନୂଆ କେଉଁଟା ରେସିପି ରାନ୍ଧିବାରେ । ନଖଗୁଡ଼ିକ ଯତ୍ନରେ ଅଣ୍ଡାକୃତି କରି କାଟୁ କାଟୁ ପୁଣି ମିନତି କଥା ମନକୁ ଆସିଲା । ସେଦିନ ତା ବାହାଘର ପାଇଁ ନିମନ୍ତ୍ରଣ କରିବାକୁ ଆସିଥିଲାବେଳେ ମିନତି ଏତେ ନିଶ୍ଚିନ୍ତ, ସୁଖୀ ଦିଶୁଥିଲା ଯେ, ଚଗଲା ଟୋକା ନିସ୍ତରଙ୍ଗ ପାଣିକୁ ଢେଲା ମାରିଲା ପରି ଛନ୍ଦା ନ ପଚାରି ରହିପାରିଲା ନାହିଁ—ଗୋଟିଏ କଥା ପଚାରିବ ମିନୁ, କିଛି ଭାବିବୁନି । ସୁଦର୍ଶନ ବାବୁଙ୍କ ବିଷୟରେ ଯାହା ସବୁ ଏଣୁ ତେଣୁ ଶୁଣାଯାଉଥିଲା, ସବୁ ତ'ହେଲେ ମିଛ ନା ?

ମୁହଁରେ ସେମିତି ସ୍ୱର୍ଗୀୟ ପ୍ରଶାନ୍ତି ବଜାୟ ରଖି ମିନତି ଉତ୍ତର ଦେଲା—କିଏ କହିବ ସତ କି ମିଛ; କିଏ ପଚାରୁଛି ?

ଛନ୍ଦା ବୋଧେ ବୋକାପରି ଦିଶିଥିବ କି କ'ଣ, ମିନତି ଟିକେ ନଇଁପଡ଼ି ଆତ୍ମୀୟତାରେ ସ୍ୱର ଗାଢ଼ କରି କହିଲା—ସତ କହିବି ଛନ୍ଦା, ଯାହା ମୁଁ ପାଇବି, ଏତେ କେବେହେଲେ ଆଶା କରି ନ ଥିଲି । ସେ କାନାଡ଼ାରେ ରହିଲାବେଳେ ଯେଉଁ ଆପାର୍ଟମେଣ୍ଟରେ ରହୁଥିଲେ, ତା'ର ଫଟୋ ମୁଁ ତୋତେ ଦେଖାଇବି । ତାଙ୍କୁ ଏଠି ମୋଟେ ଭଲ ଲାଗୁନାହିଁ, ଆମେ କାନାଡ଼ା ଯାଉଚୁ ଫେବୃଆରୀରେ । ମୋ ପାସ୍‌ପୋର୍ଟ ମିଳିଗଲାଣି ।

ଇସ୍, ଅନ୍ୟମନସ୍କ ହୋଇ କାଟୁ କାଟୁ ନଖଟିଏ ଗୋଟାଏ ଆଙ୍ଗୁଠି ପୋଛୁ ହୋଇଯାଇ ଚେପାଳିଆ ଦିଶିଲା । ବାହାରେ କିଏ ଆସିବାର ଶବ୍ଦ, ବୋଉ ହୋଇଥିବ । କବାଟ ଠକ୍ ଠକ୍ ହେଲା—ଅତଏବ ବୋଉ ନୁହେଁ । କବାଟ ଖୋଲି ଛନ୍ଦା ସାମାନ୍ୟ ଆଶ୍ଚର୍ଯ୍ୟ ହେଲା—"ଓଃ ଆପଣ, ନମସ୍କାର—"

ରମେଶବାବୁ ତାଙ୍କ ପାଲିସ୍ ହସ ଖଣ୍ଡିକ ଖେଳାଇ କହିଲେ—"କ'ଣ, ଚମ୍‌କେଇ ଦେଲି ?" ଛନ୍ଦା ରାସ୍ତା ଆଡ଼କୁ ଚାହିଁ ପଚାରିଲା—"ବାଇଭାଉଜ କାହାନ୍ତି ?"

—ଦୁହିଁ ଆସିନି । ମାନେ ସସନ୍ତାନେ ଯାଇଚ ବାପଘର ।

ଭିତରକୁ ଆସି ଚେୟାର୍‌ରେ ସ୍ୱଚ୍ଛନ୍ଦଭାବେ ହାତଗୋଡ଼ ଖେଳାଇ ବସି ଆହୁରି କହିଲେ—ଗୋଟାଏ କାମରେ ଯାଇଥିଲି ସକାଳୁ । ଫେରୁ ଫେରୁ ତମ ଘରି ପଡ଼ିଲା । ଭାବିଲି ଛୁଟିଦିନଟାରେ ଖାଲି ଘରଟାକୁ ଫେରିବା ଅପେକ୍ଷା, ତମ ଘରେ ଟିକିଏ ମୁହଁମାରି ଦିଆଯାଇପାରେ । ଚା' ନ ହେଲେ ଥଣ୍ଡା ପାଣି ଗ୍ଲାସେ ମିଳିବ ତ ।

—ନିଶ୍ଚୟ, ବସନ୍ତୁ । ଆସୁଚି—

—ଅରେ ବସ ବସ । ତମେ ତ ପିଶପୁସ୍‌ଲ ନେଲଣି । କିଛି ଦରକାର ନାହିଁ ଚା' ପାଣିର ।

ଏଣୁ ତେଣୁ କଥାବାର୍ତ୍ତା ।

—ମାଉସୀ କାହାନ୍ତି ?

—ଏଇ ପଡ଼ିଶା ଘରକୁ ଯାଇଛନ୍ତି, ଏଇନେ ଆସିଯିବ ।

—ଅଚ୍ଛା, ଅଚ୍ଛା ।

ରମେଶବାବୁ ଆଉ ଟିକିଏ ସ୍ୱସ୍ତିରେ ବାଁ ଆଣ୍ଠୁ ଉପରେ ଡାହାଣ ଗୋଇଠି ରଖି ଚଉକିରେ ଆଉଜି ଗଲେ ଓ ଗୀତଟିଏ ଗୁଣୁଗୁଣେଇ ଖୋଲାଖୋଲି ଛନ୍ଦାର ସଦ୍ୟ ପ୍ରସାଧିତ ପରିପାଟୀକୁ ଲକ୍ଷ୍ୟକଲେ ।

ଛନ୍ଦା ଆଳକର ଭିତରକୁ ଆସିଲା, ଭାବିଲା ଚା' ତିଆରି କରିବ ନା ସଚରେ ସୁରେଇରୁ ପାଣି ଗ୍ଲାସେ ଦେଇ ଗମ୍ଭୀରହୋଇ ଜଣେଇଦେବ ବୋଉ ନ ଥିଲାବେଳେ ତାଙ୍କ ଉପସ୍ଥିତି ସେ ଚାହୁଁନି । ବୋଉକୁ ହିଁ ତା'ର ବେଶି ଡର । ଶେଷରେ ଚା' ନେଇ ପଶିଲାବେଳକୁ ରମେଶବାବୁ ହାତରେ ଖୋଜି ମାଗାଜିନ୍ ଖଣ୍ଡେ ଧରି, ଚଉକି ପଛରେ ମୁଣ୍ଡ ଆଉଜି, ଫ୍ୟାନ୍‌କୁ ଚାହିଁ କ'ଣ ଭାବୁଥିଲେ । ଛନ୍ଦା ଆସିବା ବାରି ସିଧା ସଜାଡ଼ି ବସିଲେ, ତାକୁ ନିରେଖି ଚାହିଁ ହାତରୁ ଚା' ନେଲେ ଓ କହିଲେ—"ଛନ୍ଦା, ଜାଣ, ମୁଁ ବେଳେବେଳେ ଭାବେ—ଠିକ୍ ସମୟରେ ଅସଲ ଲୋକ ସଙ୍ଗେ ଭେଟ କାହିଁକି ହୁଏ ନାହିଁ ।"

ଛନ୍ଦା ନିଜ ଚା' କପ୍‌ରୁ ରମେଶବାବୁଙ୍କ ମୁହଁକୁ ଚାହିଁଲା—"କ'ଣ କହିଲେ ?" ଟିକିଏ ନୀରବ ରହି ରମେଶବାବୁ ଦୀର୍ଘଶ୍ୱାସ ଛାଡ଼ିଲେ । କହିଲେ—"ମାନେ ତମ କଥା । ତମ ସଙ୍ଗେ ମୋର ବହୁତ ଆଗରୁ ପରିଚୟ ହେବା ଉଚିତ ଥିଲା । ବହୁତ ଡେରି ହୋଇଗଲା, ବୁଝିଲ ।"

ଛନ୍ଦା ଏଣେ ତେଣେ କାନ୍ଥ ଫଟୋକୁ ଚାହିଁଲା ଓ ଝର୍କା ଦେଇ ଗେଟ୍ ଆଡ଼କୁ ଚାହିଁଲା—ବୋଉ କେତେବେଳେ ଆସିବ । ବିବ୍ରତ ହୋଇ ଅନ୍ୟ ବିଷୟ ପକେଇବାକୁ ଚାହିଁଲାବେଳକୁ କିଛି ମନେପଡ଼ୁନି—"ବଡ଼ମା ଭାଉଜ କେବେ ଆସିବେ ? ମୋତେ ଉଲ୍‌ରେ ଗୋଟେ ନୂଆ ପ୍ୟାଟର୍ଣ୍ଣ ଶିଖେଇଦେବେ ବୋଲି କହିଥିଲେ ।"

ରମେଶବାବୁ ସିଧାସଳଖ ଛନ୍ଦା ମୁହଁକୁ ଚାହିଁ ନିଃସଙ୍କୋଚରେ ହସିଲେ—ତମେ କଥା ବାଆଁରେଇ ଦେଉଚ, ନୁହେଁ ଛନ୍ଦା ! ବ୍ୟକ୍ତିଗତ କଥା ପଡ଼ିଲେ ତମର ଭାରି ଡର, ମୁଁ ଆଗରୁ ବି ଲକ୍ଷ୍ୟ କରିଛି ।

ଛନ୍ଦା ବ୍ୟସ୍ତ ହୋଇ ଭାବିଲା—ତମ ସଙ୍ଗେ ବ୍ୟକ୍ତିଗତ କଥା କି ସମ୍ପର୍କ ମୋର ଦରକାର ନାହିଁ, ଶୀଘ୍ର ଗଲ । ବୋଉ କାଳେ ରାଗିବ, ପଡ଼ିଶା ଘରେ କିଏ କ'ଣ ଭାବିବ ।

ତା' ଭାବନା ପଡ଼ିନେଲା ପରି ରମେଶବାବୁ ଖାଲି କପ୍ ଥୋଇ ଉଠିଲେ—"ମୁଁ ଯାଏ । ତମେ ଭାରି ସିରିୟସ୍ ଅଛ ଆଜି । ଭାବୁଥିଲି ଛୁଟୀ-ଦିନଟାରେ ତମେ ବି ହୁଏତ ବୋର୍ ହେଉଥିବ—"

ଛନ୍ଦା ବାଟେଇ ଦେବାକୁ ଆସୁ ଆସୁ କହିଲା—ମୁଁ ବୋର୍ ହୁଏନି । ବୋଉ ତ କେତେ ଗପୁଡ଼ି ଜାଣନ୍ତି । ଆଉ ଏଣୁ ତେଣୁ ପତ୍ରିକା, ରେଡ଼ିଓରେ ମୋର ସବୁବେଳ ଚାଲିଯାଏ । ଏମିତିକି ସିଲେଇ ସବୁ ଅଧାକରି ପକେଇ ରଖେ--

ରମେଶବାବୁ ଜାଣିଲାପରି ମୁଣ୍ଡ ନୂଆର ହସିଲେ, ସତେ କି କହୁଚନ୍ତି—ହଉ, ହଉ, ବିଶ୍ୱାସ କଲି ।

ଚାଲି ଯାଉ ଯାଉ ରହିଯାଇ ରମେଶବାବୁ ତାଙ୍କର ହସିଲା ଅଧା ଥଟ୍ଟା, ଅଧା ଗମ୍ଭୀର ଗଳାରେ କହିଲେ—ଛନ୍ଦା, ସିନେମାଟିଏ ଯାଆନ୍ତେ ନି ? ବଡ଼ ବୋର୍ ଲାଗୁଚି ଏକୁଟିଆ, ସତ କହୁଚି ।

ଛନ୍ଦା ରାଗିବ ବୋଲି ସ୍ଥିର ନ କରୁଣୁ ତା' ଓଠରେ ହସ ଫିଟିପଡ଼ିଲା ଓ ରମେଶବାବୁଙ୍କ ପ୍ରତିଫଳିତ ସ୍ୱରରେ କହିଲା—ବିନୀ ଭାଉଜ ଆସିଲେ କହିବି, ମୋତେ ସିନେମାକୁ ଡାକୁଥିଲେ ବୋଲି ?

ରମେଶବାବୁ ଖୋଲାହସ ମଝିରେ ଉତ୍ତର ଦେଲେ—ମୁଁ ତାକୁ ଓଲଟା ନାଲିସ୍ କରିଦେବିନି ତମ ନାଁରେ ! ତା'ର ଦେବୋପମ ସ୍ୱାମୀକୁ ବିଗାଡ଼ୁଥିଲ ବୋଲି ।

( ୭ )

ଘର ଭିତରକୁ ଆସିଲାପରେ କ'ଣ କରିବ ଭାବୁ ଭାବୁ ଛନ୍ଦା ଅନ୍ୟମନସ୍କ ହୋଇ ଡ୍ରେସିଂ ଟେବୁଲ ପାଖକୁ ଚାଲିଗଲା । ଦୁଇ ତିନିଟା କୋଣରୁ ନିଜକୁ ଦେଖି ସନ୍ତୁଷ୍ଟ ହେଲା ପରେ ତା'ର ନଜର ପଡ଼ିଲା ପ୍ରସାଧନୀ ସବୁ ଖୋଲାଇ ହୋଇ-

ପଡ଼ିଛି । ଯତ୍ନରେ କାଟିଥିବା ନଖରେ ଆଉ ପଲିଶ୍ ଲଗାଇବାରେ ତା'ର ଆଗ୍ରହ ନାହିଁ । ସବୁ ରଖାରଖି କରି ଆସି ଗ୍ରେଟିଆ ଟେବୁଲ ପାଖେ ସେ ବସିଲା । ଅବରୁଦ୍ଧ ଲାଗୁଛି, ହାତ ଆଞ୍ଜୁଳା ଭିତରେ ମୁହଁ ଥାପି ଭାବିଲା—ଅନେକଦିନ ପରେ କାହାକୁ ଗୋଟେ ମନ କଥା ଖୋଲି କହିବାକୁ ଇଚ୍ଛା ହେଉଛି । ଚିଠିଟିଏ ଲେଖିବାକୁ ଇଚ୍ଛା ହେଉଛି ।

ଅତଏବ ଲେଖାଯାଉ । କାଗଜଟିଏ ଟାଣି ପେନ୍ ଖୋଲିଲା ଓ କିଛି ଭାବିବା ପୂର୍ବରୁ ତା'ର ଅଭ୍ୟାସବଶତଃ ପ୍ରଭାତକୁ ସମ୍ବୋଧନ କରି ହୋଇଗଲା ।

ତା'ର ଖିଆଲ ହେଲା ବେଶ୍ କିଛିଦିନ ହୋଇଗଲା ସେ ଚିଠି ଲେଖିନି, ତେଣୁ ଆଗେଇ ହେଉନାହିଁ । ଅବଶ୍ୟ ପ୍ରଭାତ ପାଖକୁ ଲେଖା ଚିଠି ଆଜିକାଲି ଇଛା ଯାକେ ଯାଏ ନାହିଁ ପ୍ରାୟ, ତା' ପୂର୍ବରୁ ଚଉତା ହୋଇ ବହି ଭିତରେ କି ଟେବୁଲ୍ କ୍ଲଥ୍ ତଳେ ରଖାହୁଏ ଓ କିଛି ପୁରୁଣା ହେଲାପରେ ତାହାର ଦାବି ହିଁ ଆବିଷ୍କୃତ ହୋଇ ଚିରାଯାଏ । କୋଉ ପିଲାଦିନେ ପଢ଼ିଥିବା ଗପଟିଏ ଝାପ୍‌ସା ମନେପଡ଼ିଲା—ଲୋକଟିଏ କି ଗୋଟେ ଗୁପ୍ତକଥା ମନ ଭିତରେ ସୂପିରଖି ନପାରି ଗଛ କୋରଡ଼ ଭିତରେ କହି ଦେଇଥିଲା । ସେଇ ଗଛ ତିଆରି ଢୋଲ ପୁଣି ଠାଉଁ ଠାଉଁ ବାଜି ସବୁ ଗୁପ୍ତ କଥା କହିଦେଲା, ଠିକଆ ତଳ ଚିଠି ବମା ଭାଉଜଙ୍କ ମୁହଁରୁ ଶୁଭିଲା ପରି ।

ନିଜ ତୁଳନାରେ ଛନ୍ଦା ହସିଲା ଓ କାଗଜଟା ମକଚିଦେଲା—ଆଉ ଚଉତା ଯିବନି ଅଧାଲେଖା ଚିଠି । ସଲିଲଙ୍କ ଆଉ ମନ ଭିତର ଚପା କଥା ଭିତରେ ଖାସ୍ ପାର୍ଥକ୍ୟ ବା କ'ଣ । ପେନ୍ ବନ୍ଦକରି ସେ ଉଠିଲା । ପ୍ରଭାତ ଅନେକଦିନରୁ ତା' ପାଖରୁ ମୁକୁଳି ଯିବାକୁ ଚାହୁଁଥିଲା, ସମ୍ପର୍କ ବି ଧିମେଇ ଆସି ଅବଶିଷ୍ଟାଂଶ କିଛି ନ ଥିଲା ପ୍ରାୟ । ଛନ୍ଦା ହିଁ କେବଳ ନିଃସଙ୍ଗତାର ଭୟରେ ମନ ଭିତରେ ଜାବୁଡ଼ି ଧରିଥିଲା ତାକୁ । ନିଜ ଅଜାଣତରେ କେତେବେଳେ ଛନ୍ଦାର ମଧ୍ୟ ପ୍ରସ୍ତୁତି ଆସିଯାଇଛି—ମନ ଭିତରେ ପ୍ରଭାତ ଗୁଡ଼ ପାଲଟି ଅସ୍ତିତ୍ୱ ହରାଇଛି ।

ବିଛଣାରେ ପଡ଼ି ଛାତକୁ ଚାହିଁ ଛନ୍ଦା ଭାବିଲା—ବୋଉ କାହିଁକି ଆସୁନାହିଁ । ଭଲା ଶୁଣାଳୀଟିଏ ପାଇ ଗପୁଥିବ ନିଶ୍ଚେ । ଘର ଭିତରେ ବାନ୍ଧହୋଇ ପଡ଼ିଥାଏ ବରୁଷା, ଯାଉ ଯାଙ୍ଗଟିଏ ପାଇଛି, ଟିକେ ସମୟ କଟାଇ ଆସୁ । ବୋଉ

ଥିଲେ ଘରସାରା ତା'ର ନିଶ୍ଚିନ୍ତ, ଉଷୁମ ସ୍ଥିତି ଗୁଞ୍ଜିଥାଏ । ସେ ଥିଲେ ତା'ର ଅନବରତ ଗପ ଝରକ ଲାଗେ—ଏମିତିକି ବେଳେ ବେଳେ ମୁଣ୍ଡ ଉପର ଘାଉଁ ଘାଉଁ ପଙ୍ଖା କି ଘରଚଟିଆଙ୍କ ସାରା ଦ୍ୱିପ୍ରହର କିଚିରିମିଚିରିର ଅସହ୍ୟ ଝରକ ପରି ଘରୁ ବାହାରି ଗଲେ ହିଁ ଆଶ୍ୱସ୍ତ ଲାଗେ । ସେ ନ ଥିଲାବେଳେ କିନ୍ତୁ ନିଗୁଛିଆ ଲାଗେ । ମନକଥା କିଛି ନ ବୁଝୁ ପଛେ, ଖାଲି ତା' ନିରନ୍ତର ସ୍ନେହର ଖରା ପାଖେ ଟିକିଏ ପୋଇଁ ହେଇଗଲେ କିଛି ଦୁଃଖ ହାଲ୍‌କା ହୋଇଯାଏ ।

କଡ଼େଇ ଯାଇ ତକିଆରେ ମୁହଁ ମାଡ଼ିଲା ଛନ୍ଦା ଓ ଆଖିବୁଜି ନିଜକୁ ସାମ୍ନା କଲା । ରମେଶବାବୁଙ୍କ କଥା ଭାବିବାକୁ ଚାହୁଁ ନାହିଁ ବୋଲି ହିଁ ସେ ଏତେକର ବୋଉ କଥା ଭାବୁଚି, ଚାହୁଁଚି ସେ ଶୀଘ୍ର ଆସୁ ବୋଲି, ଯେମିତି ସେ ଆସିଲାକ୍ଷଣି ଛନ୍ଦା ମନର ଲଗାମ ଧରି ଆଙ୍କଟ କରିବ ।

ସମସ୍ତ ଥାଉ ଥାଉ ଅସଲ ଲୋକ ସଙ୍ଗେ ଭେଟ ହୁଏନି । ନା ଠିକ୍ କ'ଣ ସେ ପଦଗୁଡ଼ିଏ କହିଗଲେ ରମେଶବାବୁ ?

ରମେଶବାବୁଙ୍କର ଅଧିକା ଆଗ୍ରହ ଛନ୍ଦା ସବୁଦିନେ ଲକ୍ଷ୍ୟକରି ଆସିଛି, ତାଙ୍କର ଅଧା ଥଟ୍ଟା ଇଙ୍ଗିତମିଶା କଥା ବୁଝି ନ ପାରିଲା ପରି ନିର୍ବୋଧ ନୁହେଁ ସେ । ବିମ୍ବା ଭାଉଜଙ୍କ ଉପସ୍ଥିତିରେ ଅନେଇ ରହନ୍ତି ଛନ୍ଦାକୁ, ସାଦାସିଧା ଗପ କରନ୍ତି । ହସ କଥା କହନ୍ତି ବିମ୍ବାଭାଉଜଙ୍କୁ ନେଇ—ପ୍ରଚ୍ଛନ୍ନ ବ୍ୟଙ୍ଗ ବିମ୍ବା ଭାଉଜ ଧରି ପାରନ୍ତି ନାହିଁ, ଦାମ୍ପତ୍ୟ ପ୍ରେମର ନିଦର୍ଶନ ମନେକରି ହସରେ ଯୋଗଦିଅନ୍ତି ଅଧା ଥଟ୍ଟା ବୁଝି । ଝିଅଙ୍କୁ ଅନେକ ସମୟରେ ଫେରେଇ ଘରକୁ ପଠେଇ ଦିଅନ୍ତି ପକୁଡ଼ି ମାଗିବାର ବାହାନାରେ । ସୁଗୃହିଣୀ ବିମ୍ବା ଅବଶ୍ୟ ସ୍ୱାମୀଙ୍କୁ ସନ୍ଦେହ କରେନାହିଁ ମୋଟେ; ବରଂ ଇଚ୍ଛାରେ ତା'ର କୃତିତ୍ୱ ଦେଖାଇବାର ସୁଯୋଗଟିଏ ମିଳିଗଲା ବୋଲି ଖୁସିହୁଏ । ଆଉ ଝିଅର ଅନୁପସ୍ଥିତିରେ ହଠାତ୍ ନିଜକଥା କହି ବସନ୍ତି ରମେଶବାବୁ—କେମିତି ତାଙ୍କୁ ବେଳେବେଳେ ବଡ଼ ଏକୁଟିଆ ଲାଗେ । ମନ ବୁଝିଲା ଭଳି କେହି ନାହାନ୍ତି । ଏମିତି ସବୁ ।

ତଥାପି ତକିଆରେ ଆଖିବୁଜି ଛନ୍ଦା ଭାବିଲା—କ'ଣ କରାଯିବା ଉଚିତ୍ ? ରମେଶବାବୁଙ୍କ ପ୍ରଚ୍ଛନ୍ନ ନିବେଦନକୁ ଆସ୍ପର୍ଦ୍ଧା ବୋଲି ଭାବିବ ନା ତାଙ୍କ ମନର

କଥା ବୋଲି ବୁଝି ପୁଲକିତ ହେବ ? ଭବଚନ୍ଦ୍ର ଯଦିଓ ଗୋଟିଏ କଥା ଅନୁଭବ କରି ହୁଏନାହିଁ—ଭୁଲ୍‌ ଠିକ୍‌ ଚିନ୍ତା କରୁ କରୁ ନିଜ ପ୍ରତିକ୍ରିୟା ଆପେ ପ୍ରକାଶ ପାଇ ଯାଉଥାଏ ।

ପ୍ରେମ ଆବେଦନ—ପ୍ରଚ୍ଛନ୍ନ, ଅଥବା ଖୋଲାଖୋଲି—ସେ ନୂଆ ଦେଖୁନାହିଁ । ତଥାପି ପ୍ରତିଥର ନୂଆ କରି ଶୁଭେ, ନୂଆ କରି ଭୁଲ୍‌ ହେବାର ଆଶଙ୍କା ଥାଏ । ଆଶ୍ଚର୍ଯ୍ୟ ପୁରୁଣା ସେଇ ଭାବ—ପ୍ରତି ମୁହଁରେ ଅଲଗା ଦିଶେ, ନିଜଠି ଅଲଗା ଭାବ ଆଣେ । ତା'ପରେ ପାରିପାର୍ଶ୍ୱିକ ଅବସ୍ଥାମାନ ବିଗ୍ଭରକୁ ଆଣି ପରବର୍ତ୍ତୀ ପଦମାନ ମାପିବାକୁ ପଡ଼େ ।

ରମେଶବାବୁ ଦାୟିତ୍ୱସମ୍ପନ୍ନ ଗୃହସ୍ଥ । ତାଙ୍କ ଆଖିକୁ ମୁଁ କ'ଣ ବୋଲି ଦିଶିଥିବି ଯେ ନିଜ ସ୍ତ୍ରୀର ବନ୍ଧୁକୁ ଏମିତି ଇଙ୍ଗିତ ଦେଉଛନ୍ତି, ସମ୍ପର୍କର ହାତ ବଢ଼ାଉଛନ୍ତି ? ପରେ ପରେ ଆତ୍ମସମ୍ମାନର ପିଠି ଥାପୁଡ଼ାଇ ମନ ଭିତରୁ କିଏ ଜଣେ ସାନ୍ତ୍ୱନା ଦିଏ—ନା । ମୋ ଉପରେ ହୀନ ମତନେଇ ସେ ଯେ ଇତର ଇଙ୍ଗିତ ଦେଉଛନ୍ତି ତା ନୁହେଁ । କିଏ କହିବ ବିମଳା ଠୁ ସେ ବାସ୍ତବିକ ହତାଶ ନୁହନ୍ତି । ତାଙ୍କୁ ନିଛାଟିଆ ଲାଗିବାର ସବୁ କାରଣ ଅଛି । ପ୍ରେମ ତ ସାମାଜିକ ଉଚିତ୍‌ ଅନୁଚିତର ବିଗ୍ଭର ରଖେନାହିଁ । ଆଉ ଟିକିଏ ଦୃଢ଼ ହୋଇ ନିଜକୁ ସାମ୍ନା କରିବାକୁ ଗଲେ—ମୁଁ ହିଁ କ'ଣ ତାଙ୍କ ଉପସ୍ଥିତି ଗ୍ଭହେନି, ତାଙ୍କୁ ପ୍ରଶ୍ରୟ ଦେଇନି ଅନେକ ସମୟରେ ?

ଛନ୍ଦା ପୁଣିଥରେ ନିଜକୁ ଝାଡ଼ିଝୁଡ଼ି ପ୍ରଶ୍ନ କଲି—କିନ୍ତୁ ଏବେ କ'ଣ କରିଯିବା ଉଚିତ୍‌ ? ପ୍ରକୃତ ପ୍ରେମରୁ ହେଉ, ଅଥବା ଇତର ଇଚ୍ଛାରୁ ହେଉ, ରମେଶବାବୁ ତା'ର ସାନିଧ ଗ୍ଭହାନ୍ତି ଏବଂ ଏକୁଟିଆପଣରୁ ହେଉ କିମ୍ବା ସାଧାରଣ ଆକର୍ଷଣରୁ ହେଉ, ଛନ୍ଦା ତାଙ୍କ ବ୍ୟବହାରକୁ ଅନୁମୋଦନ କରେ ଓ ତାଙ୍କ ଉପସ୍ଥିତି କାମନା କରେ ।

ପ୍ରଭାତ ମନେପଡ଼ୁଛି । ପ୍ରଭାତକୁ ସେ ଗ୍ଭହିଁଥିଲା, ତାକୁ ନେଇ ସ୍ଥିର ଭବିଷ୍ୟତର କଳ୍ପନା ବି କରିଥିଲା । ସମ୍ପର୍କର ପ୍ରଥମ ପାହାଚରେ ଦୁହିଁଙ୍କର ଅଫୁରନ୍ତ ଉଚ୍ଛ୍ୱାସ—ପ୍ରେମ ବୋଲି କୁହାଯିବ ? ତା'ପରେ କେବେ କେଜାଣି

ଉଣ୍ଡା ଆସିଲା । ପ୍ରଶାନ୍ତ ବିବାହର ଦିନ ଗଡ଼ାଇଲା । ଆଉ ତା'ପରେ ହଠାତ୍ ଆଧୁନିକତାର ଦର୍ଶନ ଗାଇ ବସିଲା—ଛନ୍ଦା କୌଣସି ପ୍ରକାର ଦର୍ଶନରେ ଆଗ୍ରହୀ ନଥିଲା କେବେ ବି ମଣିଷର, ହୃଦୟର ସମ୍ପର୍କରେ ସମାଜର ଅନୁମୋଦନକୁ ବିଶ୍ୱାସ କରେନାହିଁ ବୋଲି ପ୍ରଶାନ୍ତ କହୁଥିଲା । ସେତେବେଳେ ସମ୍ପର୍କ ଶିଥିଳ ହୋଇ ଆସିବାର ଦିନ ।

ସର୍ତ୍ତହୀନ ଆତ୍ମସମର୍ପଣ ପ୍ରେମିକାଠୁ କିଏ ନ ଚାହେଁ ? ସମ୍ପର୍କ ଭାଙ୍ଗିଯିବା ପୂର୍ବରୁ ପ୍ରଶାନ୍ତର ବାହାନା ଥିଲା ତା'ର ଆଧୁନିକ ପାଶ୍ଚାତ୍ୟ ଦର୍ଶନ । ନିଜ ସାମାଜିକ ଯୋଗ୍ୟତା ଉପରେ ଗଭୀର ଆସ୍ଥା ଥିଲେ ଓ ସଙ୍ଗୀ ବାଛିବାପାଇଁ ଅନେକ ସମ୍ଭାବନା ଥିଲେ କିଏ ଚାହିଁବ ଗୋଟିଏ ପ୍ରତିଜ୍ଞାରେ ବାନ୍ଧି ହୋଇ ପଡ଼ିବାକୁ—ବିଶେଷତଃ ଯେଉଁଠି ଆବେଗ ଦନ୍ଥର ହୋଇ ଆସେ, ସମ୍ପର୍କ ନୂତନତା ହରାଇଥାଏ ।

ଏବେ ରମେଶ ବାବୁଙ୍କ ବାହାନା—ଠିକ୍ ସମୟରେ ଭେଟ ହୋଇ ପାରିଲାନାହିଁ ଛନ୍ଦା ସଙ୍ଗେ । ବର୍ତ୍ତମାନ ସେ ବିବାହିତ, ଏଣୁ କୌଣସି ସାମାଜିକ ଚୁକ୍ତି ହୋଇପାରେନା । କେବଳ ପ୍ରେମ ।

( ୮ )

ସରୋଜିନୀ ପଚାରିଲେ—କ'ଣ ଠିକ୍ କଲୁ ମା' ?

ବିଛଣାରେ ଶୋଇ ବହିରୁ ଆଖି ନ ଉଠାଇ ଛନ୍ଦା ଦେଖିଲା—କ'ଣ ?

—ଏଇ ମୁଁ ଯିବା କଥା । ଠିକ୍ ସେମିତି ଶୋଇରହି ଛନ୍ଦା ପୁଣି ଓଲଟି ପଚାରିଲା--ଯିବୁ ତୁ । ମୁଁ ଠିକ୍ କରିବି କ'ଣ ?

ସରୋଜିନୀ ଦୀର୍ଘଶ୍ୱାସ ଛାଡ଼ିଲେ । ଛନ୍ଦା ରାଗିଥିଲେ ନିଜ ତରଫରୁ କେବେ ବି ଆଗେଇବନି, ସେ ଜାଣନ୍ତି; କିନ୍ତୁ ତା ସଙ୍ଗେ ଅବୁଝାମଣା ନ ଭାଙ୍ଗିଲେ ତ ସେ ଜମା ଯାଇପାରିବେ ନାହିଁ, ଅଥଚ ତାଙ୍କୁ ଯିବାକୁ ହିଁ ହେବ । ପୁଣି ସେ କହିଲେ—ବୁଝୁନୁ ମା । ମୁଁ କ'ଣ ତୋତେ ଏକୁଟିଆ ଛାଡ଼ି ଯିବାକୁ ଚାହୁଁଚି ? କିନ୍ତୁ ମୁଁ ନ ଗଲେ—

ଛନ୍ଦା ଏଥର ତକିଆ ଉପରେ ବହିଟାକୁ ଓଲଟାଇ ଥୋଇ, ବାରଣ୍ଡା ଉପରେ ପେଟେଇ ପଡ଼ି ବୋଉ ମୁହଁକୁ ସିଧାସଳଖ ଚାହିଁଲା—ବୁଝିଲୁ, ତୁ ନଗଲେ ଚଳିବନି । ସାନଝିଅଙ୍କ ପିଲାପିଲି ହେବ । ତୁ ଯାଇ ତାଙ୍କୁ ସାହାଯ୍ୟ କରିବୁ, ତୋ ନାତି ନାତୁଣୀଙ୍କ ଖବର ବୁଝାବୁଝି କରିବୁ । ବେଶ୍ । ତୋର ଯେବେ ଇଚ୍ଛା ସେବେ ଯା । ମୋତେ ଟିକେ ଏ ବହିଟା ପଢ଼ିବାକୁ ଦେ—ଡିଟେକ୍ଟିଭ୍ ବହିଟାଏ ପଢ଼ିଲାବେଳେ ଡିଷ୍ଟର୍ବାନ୍ସ ଜମା ଭଲ ଲାଗେନି ।

ଛନ୍ଦା କାନ୍ଥ ଆଡ଼କୁ ମୁହଁ ବୁଲାଇ ବହିରେ ମୁହଁ ଗୁଞ୍ଜିଲା । ସରୋଜିନୀ ହତାଶିଆ ଆଖିରେ ତାକୁ ଚାହିଁ ଭାବିଲେ—ସବୁବେଳେ ମୋ ସ୍ନେହ, ସଦିଚ୍ଛା ଆଡ଼କୁ ପିଠି ବୁଲେଇ ଦେଉଚୁରେ ଛନ୍ଦା । ମୋ ବ୍ୟତୀତ ତୋର ଆଉ ଶୁଭାକାଙ୍କ୍ଷୀ କିଏ ଅଛି ? ତା ବୋଲି ମୋର ଅନ୍ୟ ଆଡ଼େ କର୍ତ୍ତବ୍ୟ ତ ପୁଣି ଅଛି । ହେଲା ବା ମୋ ନାତିନାତୁଣୀଙ୍କ ପାଖେ କିଛି ଦିନ କାଟିବାକୁ ମୋର ଆଗ୍ରହ ଆସୁଚି । କେବଳ ତୋ ପାଖେ ମୁଁ ସବୁଦିନେ ଏଠି ପଡ଼ି ରହିଥିବି କେତେ ବା ସ୍ନେହ ଓ ଧୈର୍ଯ୍ୟରେ କହିଲୁ ? କେତେ ଦିନ ଆଉ ଜୀବନ ବା ମୋର ଅଛି ?

ଛନ୍ଦା ବହି ପୃଷ୍ଠାରେ ଦେଖୁଥିଲା—ପିଲାଦିନର ନିଦା ପରିବାର ଜଣ ଜଣ କରି ବୟସ ବଢ଼ିବା ସଙ୍ଗେ ବିଚ୍ଛିନ୍ନ ହୋଇପଡ଼େ—ଗୋଛାଏ କଅଁଳ ଆସୁଥିବା ଡାଳ ବଢ଼ି ଚାରିଆଡ଼କୁ ମେଲେଇ ହୋଇଗଲା ପରି । ଦୂରତା ବଢ଼ିଯାଏ ପରସ୍ପର ଭିତରେ—ଗୋଟି ଗୋଟି ଡାଳ ମାଟିରେ ଓହଳ ପେଲି ସ୍ୱାଧୀନ ହୋଇଯାନ୍ତି । ଛନ୍ଦା ଭାବିଲା—ଯେ ଯାହାର ସ୍ୱାଚ୍ଛନ୍ଦ୍ୟ କଥା ଚିନ୍ତାକଲେ ବୋଲି ମୁଁ ଧରି ବସୁନାହିଁ; କିନ୍ତୁ ମୋତେ କାହିଁକି ଛାଡ଼ି ଦେଉନାହଁ ସ୍ୱତନ୍ତ୍ର ମଣିଷଟିଏ ପରି । ମୋ ଭବିଷ୍ୟତ ନୁହେଁ—ତମରି ସୁନାମ ଦୁର୍ନାମ କଥା ତମେ ଭାବୁଛ । ଜୀବନ ବହିଯାଉଛି ମୋ କଡ଼ ଦେଇ । ଆଉ ଦର୍ପଣ ବି ମୋତେ ଆନନ୍ଦ ଦେଉନାହିଁ—ପାଚିଲା ବାଳ ଥରେ ଅଧେ ଦେଖିଲଣି ମୋ ପାନିଆରେ । ବୋଉ ଯେତେକ ଆଦର୍ଶ, ତ୍ୟାଗର ବଡ଼ ବଡ଼ କଥା ଶୁଣାଏ—ଏଇ ଦେଖ ଭୁଲିଯିବାକୁ ବସିଚି ଟିକିଏ ଆରାମ, ଗହଳଚହଳ ସାଙ୍ଗସୁଖର ଲୋଭରେ । ନିଛାଟିଆ ଘରଟାରେ ନିର୍ବୋଧ ବକ୍‌ବକ୍ ବି ଶୁଣିବାକୁ ମିଳିବ ନାହିଁ—ବହି ପଢ଼ି, ରେଡ଼ିଓ ଶୁଣି ବିରକ୍ତ ହେଲାପରେ ଛାତକୁ ଚାହିଁ ମାଙ୍କଡ଼ସା, ଝିଟିପିଟିଙ୍କୁ ନେଇ ସମୟ କାଟୁଥିବ ।

ନିଜକୁ ନିଜେ କହିଲା ଭଳି ସରୋଜିନୀ କହିଲେ—ତୋଠୁ ଦୂରରେ ଥିଲେ କେତେ ଦୁଶ୍ଚିନ୍ତାରେ ମୁଁ ଥାଏଁ, ତୁ କାହୁଁ ବୁଝିବୁ ?

ବହିକୁ ଚାହିଁ ଛନ୍ଦା କହୁଥିଲା ମନେମନେ—ବହୁତ ବୁଝିଛି । ଏଇ ଚିନ୍ତା ଯନ୍ତ୍ରଣା କଲେଜରେ ମୋ ନିରାପତ୍ତା ବିଷୟରେ ତୁ ନିଃସନ୍ଦେହ । ତୋର ସବୁ ଦୁଶ୍ଚିନ୍ତା ମୋ ମନକୁ ଟାଣେ—ତୋର ଅନୁପସ୍ଥିତିରେ କାଳେ ତୋ ସ୍ଥାନରେ ମୁଁ ଡେଇଁଯିବ ।

ରବିବାର ଦିନ । ସରୋଜିନୀ ପ୍ରାୟ ଧାଁ-ଧପଡ଼ କରି ସଜଡ଼ା ସଜଡ଼ି କରୁଥାନ୍ତି । ଦାଣ୍ଡଘରେ ଛନ୍ଦା ବଡ଼ ଭାଇଙ୍କଠାରୁ ଝିଙ୍କୁ, ମିନାଙ୍କ ଦୁଷ୍ଟାମିର ଝିକିନାଖି ବୃତ୍ତାନ୍ତ ସବୁ ଶୁଣୁଥାଏ, ମଝି ମଝିରେ ହସରେ ଉଚ୍ଛୁଳ ପଡ଼ି କହୁଥାଏ—ସତରେ, ଭାରି ଇଚ୍ଛା ହେଉଛି ସେମାନଙ୍କୁ ଦେଖିବାକୁ । କେତେ ବଡ଼ ହୋଇ-ଯିବେଣି, ନୁହେଁ ?

ଭିତରୁ ସରୋଜିନୀ ଡାକି ଉଠୁଥାନ୍ତି—ଛନ୍ଦା, ମିନା ପାଇଁ କଣ୍ଢେଇଟା କୋଉଠି ରଖିଲୁ, ପାଉନି ମୁଁ ।

ଛନ୍ଦା ଆସି ଦେଖିଲା ବୋଉକୁ । ଦ'ଣ୍ଟିଏଟା କ'ଣ ଜିନିଷ ତାର, ଗ୍ରେଟିଆ ସୁଟ୍‌କେଶଟିଏ ବି ପୂରା ହଉନି । ବ୍ୟସ୍ତତାରେ ଝାଳ ଫିଟି ପଡ଼ୁଛି କପାଳରୁ । ଏତେ ଉତ୍ସାହ ତାର ଯିବ ବୋଲି ଏଠୁ !

ସରୋଜିନୀ ଚେଆର୍ ଉପରେ ବସିଯାଇ କାନିରେ ମୁହଁ ପୋଛିଲେ । ଛନ୍ଦା କହିଲା—ଲୁଗା ପାଲଟି ବାହାରି ପଡ଼ ବୋଉ, ଟ୍ରେନ୍ ବେଳ ହୋଇଯିବ ।

ସରୋଜିନୀ ଚାହିଁଲେ ଛନ୍ଦାକୁ—ଭାରି ସଙ୍ଗୋ ଗପୁଛି ସକାଳୁ, ଉଜ୍ଜ୍ୱଳ ମୁହଁ । ପୂର୍ବର ବିରକ୍ତି, ମୁହଁ ଫୁଲା ଆଉ ନାହିଁ । ସେ କ'ଣ ଚାହୁଁଛି ମୁଁ ଏଠୁ ଚାଲିଯାଏଁ ବୋଲି ? କ'ଣ ବେଶି ସ୍ୱାଧୀନତା ପାଇବ ବୋଲି ?

ପରସ୍ପର ଆଖି ପଡ଼ି ନେଲାକ୍ଷଣି ଦୃଷ୍ଟି ଫେରାଇ ଦୁହେଁ ବନ୍ଧା ଜିନିଷପତ୍ର ଆଡ଼େ ଚାହିଁଲେ । ତା'ପରେ ଦୁହେଁ କଥା ଆରମ୍ଭ କଲେ ଏକା ସଙ୍ଗେ ଓ ଦୁହେଁ ସଚେତନ ହୋଇ ଅଟକିଗଲା ପରେ ସରୋଜିନୀ ପଚାରିଲେ—କ'ଣ କହୁଥିଲୁ ?

ଛନ୍ଦା ହସି କହିଲା—ଭାରି ଖୁସି ହେଉଛୁ ନୁହେଁ, ଏଠୁ ଯିବୁ ବୋଲି ?

ସରୋଜିନୀଙ୍କ ମୁଖଭଙ୍ଗୀ ବଦଳିଲା—ତୋତେ ଏକୁଟିଆ ଛାଡ଼ିଦେଇ ମୁଁ କେବେ ବି ନିଶ୍ଚିନ୍ତ ରହିପାରିବି ଛନ୍ଦା ? ନହେଲେ ଦରକାର ପଡ଼ିବାରୁ ଯାଉଚି ।

ତା'ପରେ ଛନ୍ଦା ଆଶାନୁଯାୟୀ ଶୁଣିଲା, ବୋଉ ତା'ର ଭାବ ଗଦ୍ ଗଦ୍ ହୋଇ କହୁଚି—କହିବୁ ଯଦି ଏଇଲଗେ ବି ରହିଯିବି, ତୋର ଯଦି ଅସୁବିଧା ହେବ ବୋଲି କହିବୁ ।

—ନାଇଁ ବୋଉ, ତୁ ଯା । ଅସୁବିଧା ହେଲେ ତୋତେ ପୁଣି ଚିଠି ଲେଖି ଡକେଇବିନି ।

କଥାବାର୍ତ୍ତା ଅନ୍ତରଙ୍ଗ ଗତିରେ ପଡ଼ିଗଲା ପରେ ଦୁହେଁ ସହଜ ହୋଇଗଲେ । ଛନ୍ଦା ଚା' ଆଣିଲା ଓ ପିଉ ପିଉ ସରୋଜିନୀ ଉପଦେଶ କେଇଟା ଦେଲେ ।

ଛନ୍ଦା ଭାବିଲା—ଏଇ ଉପଦେଶ ଦେବା ଓ ତୋ ଅତୀତରୁ ଗପିବା ବ୍ୟତୀତ ତୋ ପାଇଁ ଏଠି ଥିଲା କ'ଣ ଯେ ବୋଉ ତୁ ଯିବାକୁ ଚାହାନ୍ତୁ ନି ?

ସରୋଜିନୀ ଭାବିଲେ—କେଡ଼େ ଏକୁଟିଆ ତୁ ରେ ଛନ୍ଦା ! ମୁଁ ବା ମୋର ଶେଷ ବୟସରେ ଏକୁଟିଆ ହେଲି ବା ଅବହେଳା ଭୋଗିଲି—କିନ୍ତୁ ତୁ ଏ ବୟସରେ ?

ହଠାତ୍ ଦୋଷୀ ଭାବରେ ଭାରି ହୋଇଗଲା ତାଙ୍କ ମନ—ଥରେ କୋଡ଼ ଛାଡ଼ା ହୋଇ ଅଲଗା ଠିଆ ହେଇଗଲେ ଏତେ ବେଶି ହାତ ପାଆନ୍ତାରୁ ଦୁରେଇ ଯାଏ ମଣିଷ, ଏତେ ଅସହାୟ ହେଇଯାଏ ?

ଜନଷପନ ଶବ୍ଦସାରେ ଲଦାଗଲା ଓ ଛନ୍ଦା ପାଇଁ ସମବେଦନା ସତ୍ତ୍ୱେ ସରୋଜିନୀଙ୍କ ମୁହଁରେ ଖୋଲା ପବନକୁ ପଶିଯିବାର ଆନନ୍ଦ ଛନ୍ଦା ପଢ଼ି ପାରୁଥିଲା । ଆହା, କେଡ଼େ କାଟ୍ଟଟିଆ ବରଜ୍ଞରେ ଘରଟା ଭିତରେ ପଡ଼ି ରହିଥିଲା ବିଚାରୀ ଯେ ଘରୁ ବାହାରିବା ମାତ୍ରେ ତା' ମୁହଁରେ ଆନନ୍ଦ ଝଲସୁଚି ? କେତେ

କମ୍ ଥର ଆନନ୍ଦ ଆସେ ଆଜକାଲ ଏଇ ମୁହଁକୁ--ମୁହଁଟି ପୂରା ସମସ୍ତଙ୍କ ଦୃଷ୍ଟିରୁ ହଜିଯିବା ଆଗରୁ କେତେଥର ଆଉ ବା ଆନନ୍ଦ ଦେଖିବ ? ବଡ଼ ଭାଉଜଙ୍କ ସେବା କରିବ, ନାତି ନାତୁଣୀଙ୍କି ଦେଖିବ । ତଥାପି ତା'ର ଏକୁଟିଆ ଜୀବନରେ ସାଉଁଟି ନେଇ ବଞ୍ଚୁଥିବା ଯେତିକ ସୁଖ ପାଉଚି ।

ଭାଇ ରିକ୍ସାରେ ବସି ତରବରେଇଲେ—ବୋଉ, ଆ ଶୀଘ୍ର, ଡେରି ହୋଇଯାଉଚି ।

ଛନ୍ଦା ପ୍ରଣାମ କଲା ଓ ତା' ଚିବୁକ ଛୁଇଁ ଚୁମା ଖାଇ ସରୋଜନୀ ରିକ୍ସାକୁ ଉଠିଲେ । ଆଖି ଜକେଇ ଆସିଥାଏ ଓ କୋହ ରୁନ୍ଧ ସେ କଥା କହି ପାରୁ-ନ ଥାନ୍ତି । ରିକ୍ସାରେ ବସି ଆଖି ପୋଛିଲେ, କହିଲେ "ଖିଆପିଆ କରିବୁ, ନିଜର ଯତ୍ନ ନେବୁ ମା' ।"

ରିକ୍ସାରୁ ଫେର ଝୁଲୁଥିବା, ଆଖି ପୋଛୁଥିବା ମୁହଁ ଲୁଚିଗଲା ରାସ୍ତା ଶେଷ ମୋଡ଼ରେ—ନାଟକ୍ କରୁଣାର ମୁହଁଟିଏ, ଆଉ କିଛି ହିଁ ଦିଶୁ ନ ଥିଲା ସେ ମୁହଁରେ ଓ ଠିକ୍ ନୀଳ କାଚ ଦର୍ପଣଟିଏ ପରି ଛନ୍ଦା ଅନୁଭବ କଲା ତା' ନିଜ ମୁହଁ ଆଖିରେ ବି ଏବେ ଆଉ କିଛି ହିଁ ନାହିଁ—ଏବେ ଅଦୃଶ୍ୟ ହୋଇଯାଇଥିବା ବସ୍ତୁଟା ନାରୀଟି ପାଇଁ କରୋଳା କରୁଣାରେ ବୁଡ଼ିଯାଇଚି ତା' ମୁହଁ ଓ ଛାତି ଭିତର ସାରା ।

ଖାଲି ଘରକୁ ପଶିଲାବେଳେ ଛନ୍ଦା ବୁଝି ଥିଲା— ଏକୁଟିଆ ରହିବା ହିଁ ସବୁଠୁ ବଡ଼ କଷ୍ଟଟିଆପଣ । ବୋଉ ତାକୁ ସମ୍ପୂର୍ଣ୍ଣ ରୂପେ ସ୍ନେହ କରୁନାହିଁ, ତା' ମନ ଦୁଃଖ ବୁଝୁନାହିଁ ବୋଲି ତା'ର ଯେଉଁ କ୍ଷୋଭ ହେଉଥିଲା—ଏବେ ବୁଝୁଚି ବାସ୍ତବରେ ସେ ସବୁର ଦରକାର କ'ଣ ? ସ୍ନେହ, ବୁଝାମଣା--ସବୁ ବୋଧହୁଏ ସମ୍ପର୍କରେ ବିଭିନ୍ନ ଅବସ୍ଥାମାନ । କେବଳ ପରସ୍ପର ପାଇଁ ଦାୟିତ୍ୱବୋଧ ହିଁ ସବୁ ରକମର ତିର ସମ୍ପର୍କର ମୂଳ—ସମ୍ଭବତଃ ବିବାହର ବି ।

( ୯ )

ଅଫିସ୍‌ରୁ ବାହାରୁ ବାହାରୁ ହିଁ ରାସ୍ତା କଡ଼ ପାନ ଦୋକାନ ପାଖେ ସିଗାରେଟ ଟାଣୁଥିବା ବ୍ୟକ୍ତିଙ୍କ ଉପରେ ଛନ୍ଦାର ଦୃଷ୍ଟି ରହିଗଲା ।—ବୋଧହୁଏ ତାଙ୍କର ସମ୍ପୂର୍ଣ୍ଣ ଅଚିହ୍ନା ମୁହଁ ଓ ଟିପ୍‌ଟପ୍ ବେଶ ପୋଷାକରୁ । ଭଦ୍ରଲୋକ ରାସ୍ତା

ଉପରକୁ ଉଠି ଅଫିସ୍ ଫେରନ୍ତ ଷାଠିଏ ବାବୁଙ୍କୁ କିଛି ପଚାରିଲେ ନିମ୍ନସ୍ୱରରେ—ଛନ୍ଦା କିଏ ଜାଣିବାକୁ ଚାହୁଁଥିଲେ ନିଶ୍ଚୟ—ଓ ତା' ଆଡ଼େ ଧୀର ପାଦକ୍ଷେପରେ ଆଗେଇ ଆସିଲେ । ଛନ୍ଦା କୁଣ୍ଠିତ ପାଇଥିଲା ସେ କିଏ ।

ପଇଁତିରିଶ୍ ପାଖାପାଖି ଭଦ୍ରଲୋକ, ମଧ୍ୟମ ଉଚ୍ଚତା, ସୁସ୍ଥ ଗଠନ ଓ ଶରୀର ଶାନ୍ତ ପାଟି । ଛନ୍ଦା ପାଖକୁ ଆସି ସେ ହାତ ଯୋଡ଼ି ନିଜ ପରିଚୟ ଦେଲେ—ପଚାରିଲେ, "ମୋ ଚିଠି ଆପଣ ପାଇଛନ୍ତି ତ ?"

ଛନ୍ଦା ସଂକ୍ଷେପରେ ଉତ୍ତର ଦେଲା, ସେ ପାଇଛି । ସେ କହିଲା ନାହିଁ ଯେ ଖାଲି ତାଙ୍କଠୁ ନୁହେଁ, ଏକାଦିନକେ ଭାଉଜଙ୍କଠୁ ବି ତାଙ୍କର ବିଷୟ ନେଇ ଚିଠିଟିଏ ପାଇଥିଲା—"ଖୁବ୍ ଭଲ ପିଲା । ନିଜେ ଯାଇ ତମ ସଙ୍ଗେ ପରିଚିତ ହେବାକୁ ଚାହୁଁଛନ୍ତି । ତମର ତ ବୟସ ହେଲାଣି, କିଛି ମନେକରିବ ନାହିଁ ବୋଲି ଆମେ ଭାବୁଛୁ ।"

ଭଦ୍ରଲୋକ ନିଜେ ହିଁ କହିଲେ—ଅପଣଙ୍କ ଭାଇ ଭାଉଜ ମୋ ବିଷୟରେ ଆପଣଙ୍କୁ ଜଣାଇଥିବେ ବୋଲି ମୁଁ ଭାବୁଛି ।

ଛନ୍ଦା ମୁଣ୍ଡ ନାଡ଼ିଲା । ପୁଣି ସେ ନିଜକୁ ନିଜେ କହି ସ୍ଥିର କଲାପରି କହିଲେ—ଏଇଟା ଆପଣଙ୍କ ଅଫିସ୍ କ୍ୟାଣ୍ଟିନ୍ ନିଶ୍ଚୟ । ଏଇଠି ଟିକିଏ ବସିଯିବା ? ନା, ବହୁତ ଭିଡ଼ ମନେ ହେଉଛି । ଚାଲନ୍ତୁ ରାସ୍ତାରେ ଯାଉ ଯାଉ କଥାବାର୍ତ୍ତା କରିବା, କ'ଣ କହୁଛନ୍ତି ? ଆପଣଙ୍କ ଘର ଏଠୁ କେତେ ବାଟ ?

ଦୁହେଁ ରାସ୍ତା ଉପରକୁ ଉଠିଲାବେଳେ ଛନ୍ଦା ଲକ୍ଷ୍ୟକଲା, ଆକାଶରେ ଗୋଟାଏ କୋଣ ଭାରି ହୋଇ ଆସୁଚି । ବର୍ଷାଟାଏ ହୋଇପାରେ ।

ଅଫିସ୍ ଫେରନ୍ତ କେତେକ ଚିହ୍ନା ଲୋକ ଛନ୍ଦାଆଡ଼େ ଫେରି ଚାହୁଁଥିଲେ । ସାଙ୍ଗରେ ଚାଲିଥିବା ଭଦ୍ରବ୍ୟକ୍ତିଙ୍କ ଗଳାରେ କିଛି ସହଜ ଆତ୍ମୀୟତା ଓ ସିଗାରେଟ୍ ଧରା ମୁଠାରେ ସୁଚିନ୍ତିତ ଦୃଢ଼ତା । ଏଣୁତେଣୁ କଥା ଭିତରେ ଲୋକ ଗହଳି ସମ୍ପୂର୍ଣ୍ଣ ପାରି ହୋଇଗଲା ପରେ ସେ ବିଶେଷ ଉପକ୍ରମଣିକା ନ ଦେଇ ସିଧା ଆରମ୍ଭ କଲେ—ଆପଣଙ୍କ ବଡ଼ ଭାଇ ଓ ମା'ଙ୍କୁ ଦେଖା କରିଥିଲି । ଚିଠିରେ ଆପଣଙ୍କ ପରିବାରକୁ ବେଶ୍ ଜାଣିଯାଇଛି ଏ ଭିତରେ ।

ଛନ୍ଦାକୁ ଚାହିଁ ପ୍ରଥମକରି ଖୋଲାହସ ହସି ସେ କହିଲେ—ଖୋଲାଖୋଲି ଭାବେ କହିବାକୁ ଗଲେ ମୁଁ ଆପଣଙ୍କ ପରିବାରର ପସନ୍ଦ ହୋଇସାରିଛି । ଆପଣ ବି ଆମ ପରିବାରର । ବାକି ରହିଲେ କେବଳ ଆମେ ଦିହେଁ ।

ଛନ୍ଦାର କିଛି କହିବାର ନ ଥିଲା । ଏଠି ପାଇଲାପରେ କେମିତି ଏ ଚିରାଚରିତ ପାତ୍ରୀ ଦେଖା ନୂଆ ଢଙ୍ଗରେ ହେବ, ତାକୁ ଭାବି ଅଖାଡୁଆ ଲାଗୁଥିଲା । ତେଣୁ ବାସ୍ତବରେ ତାକୁ ଏକରକମ ଭଲ ଲାଗିଲା, ଏ ଖୋଲା ବ୍ୟବହାର, ସିଧା ଦୃଷ୍ଟି । ଭଦ୍ରଲୋକ ପୁଣି କହିଲେ—କଥାଟାକୁ ଆହୁରି ସଂକ୍ଷେପ କରିବାକୁ ଗଲେ ଆପଣ ହିଁ ବାକି ଅଛନ୍ତି, ମୋ ମତାମତ ପ୍ରାୟ ତିଆରି ସରିଛି, ଆପଣଙ୍କୁ ଦେଖିବା ପୂର୍ବରୁ ।

ଦୁହେଁ କେନାଲ୍ ପାଖ ସିମେଣ୍ଟ ବେଞ୍ଚରେ ବସିଲେ । ଛନ୍ଦା ପ୍ରଥମ କରି ପଚାରିଲା ନିଜଆଡୁ—କେମିତି ? ମୋତେ ଦେଖିଥିଲେ କେବେ ଆଗରୁ ?

—ନା, ଦେଖି ତ ନ ଥିଲି । ଫଟୋ ଦେଖିଛି—ତେବେ ଦେଖା-ଦେଖିରେ ଅଧିକ କ'ଣ ହୁଏ, କେତେ ଜାଣି ହେବ ପରସ୍ପର ବିଷୟରେ ? ଆପଣଙ୍କ ବିଷୟରେ ଜାଣିଛି ଯଥେଷ୍ଟ—ମାନେ ଶୁଣିଛି ।

ଛନ୍ଦା ଆକାଶରେ ବ୍ୟାପି ଆସୁଥିବା ମେଘଆଡ଼େ ଚାହିଁ, ଥଣ୍ଡା ପବନକୁ ମୁହଁ କରି ରୁଦ୍ଧଶ୍ୱାସ୍ ଆଉଜି ଯାଇଥିଲା ବେଞ୍ଚ୍ ପଛରେ । ସେ ବୋଉ ଓ ଭାଇ ଭାଉଜଙ୍କ କଥା ଭାବୁଥିଲା—ତା' ପରିବାର ସାରା ହଠାତ୍ ସ୍ଥିର ନିଶ୍ଚିନ୍ତତା ବି ଯେ ଓହ୍ଲାଇ ଆସିଥିବ, ସେ ଅନୁଭବ କରିପାରୁଥିଲା । ଭଦ୍ରବ୍ୟକ୍ତିଙ୍କ ବ୍ୟକ୍ତିଗତ ଚରିତ୍ର, ପରିବାର ? ଯାଏ ଆସେ ନାହିଁ—ସେ ସବୁ ଦାୟିତ୍ୱ ଭାଇ, ଭାଉଜ, ବୋଉ ନେଇଥିବେ ।

ଅଭ୍ୟାସବଶତଃ ଛନ୍ଦାକୁ ବ୍ୟସ୍ତ ଲାଗିଲା—ଯିବା ଏଥର, ଡେରି ହେଲାଣି । ଭଦ୍ରବ୍ୟକ୍ତି ଘଡ଼ି ଦେଖି କହିଲେ—ମୋତେ ଆଜି ହିଁ ଏଠୁ ଫେରିବାକୁ ହେବ । ତେବେ ଆପଣଙ୍କ ଘରକୁ ଯିବା ? ନା ଏଇଠି କଥାବାର୍ତ୍ତା ସାରିଦେଇ ଯିବା ?

ଆଜ୍ଞର କ କଥାବାର୍ତ୍ତା ଅଛି ? ଛନ୍ଦା କଣେଇ ଚାହିଁଲା—ନା, ଗମ୍ଭୀର, ଅଟଳ ମୁହଁରେ ଚାଞ୍ଚଲ୍ୟର ଚିହ୍ନ ନାହିଁ । ତାଙ୍କୁ ଘରକୁ ଡାକନେବା ପାଇଁ ବିଶେଷ ଆଗ୍ରହ ନ ଥିଲା ଛନ୍ଦାର, ତା' ଛଡ଼ା ଅସ୍ୱସ୍ତି ମନ୍ଧାତେ ଶଙ୍କା ବି । କହିଲା—ଏଇଠି ବସିଯିବା ଆଉ ଟିକେ ବେଳ ହେଲେ । ଖୋଲା ଜାଗା, ଭଲ ଲାଗୁଛି ।

ଭଦ୍ରବ୍ୟକ୍ତି ପାଟିଟାକୁ ଆଉ ଟିକିଏ ଚିପି ଚିନ୍ତିତ ହୋଇ ସ୍ଥିରକଲାପରି କହିଲେ—ତମ ଚାକିରୀଟା ବର୍ତ୍ତମାନ ଏଇଠି ଥାଉ ।

ଆପଣଙ୍କୁ ଏ ହଠାତ୍ ତୁମେ ଛନ୍ଦା ଲକ୍ଷ୍ୟକଲା, ସେ ନିଜେ ବୋଧେ ଅଲକ୍ଷ୍ୟରେ କହିଥିଲେ । କପାଳରୁ ବାଳ ସଜାଡ଼ି ଛନ୍ଦା ସାଧା ସ୍ୱରରେ କହିଲା—ମୋ ଚାକିରୀଟାକୁ ମୁଁ ଖୁବ୍ ପସନ୍ଦ କରିନେଇନି କେବେ ବି । ବିଶେଷତଃ ଏ ସେଉଁ ଚାକିରୀ, ମଝିରୁ କଥା କହିଲେ—ସେ ନା, ନା । ମୋ କଥା ଠିକ୍ ବୁଝିଲ ନାହିଁ । ମୁଁ ସେଠି ତମ ପାଇଁ ଗୋଟିଏ ଚାକିରୀ ଦେଖୁଛି । ତମ ଭାଇ ବି ଚେଷ୍ଟା କରୁଛନ୍ତି । ଅନ୍ତତଃ ସେ ଯାଏଁ ତମେ ଏ ଚାକିରୀରେ ରହିବ ।

ଛନ୍ଦା ଏ ପରିବର୍ତ୍ତିତ ସ୍ୱରର ମୁହଁକୁ ଚାହିଁଲା । କେନାଲ୍ କୂଳ ନିର୍ଜନ ହୋଇ ଆସିଥିଲା । ସନ୍ଧ୍ୟା ଅସ୍ପଷ୍ଟ କରି ଦେଇଥିଲା ସେ ଚିନ୍ତିତ ମୁହଁକୁ । ହାତରେ ସିଗାରେଟ୍ ନେଇ ପାଣି ଧାରକୁ ଲକ୍ଷ୍ୟ କରି ସେ ତାଙ୍କ ବ୍ୟକ୍ତିଗତ ଜୀବନ କଥା କହୁଥିଲେ । ତାଙ୍କ ସ୍ୱର କହୁଥିଲା – ଅତି ସହଜରେ ସେ ଛନ୍ଦାକୁ ନିଜ ସଂସାରର ପରିଧି ଭିତରକୁ ନେଇ ଯାଇଥିଲେ । ଛନ୍ଦା କିନ୍ତୁ ବିଶେଷ ମନୋଯୋଗ ଦେଇ ପାରୁ ନ ଥିଲା ଏ ଅପରିଚିତଙ୍କ କଥାରେ – ତାଙ୍କ ବାପା ବୋଧହୁଏ ଅନେକ ଆଗରୁ ମୃତ ଓ ଭାଇ ଭଉଣୀମାନଙ୍କ ଦାୟିତ୍ୱ ତଥା ନିଜ ଉଜ୍ଜ୍ୱଳ ଭବିଷ୍ୟତର ଚିନ୍ତା ନେଇ ତାଙ୍କ ବ୍ୟକ୍ତିଗତ ଜୀବନ ।

ଶେଷରେ ଦୁହେଁ ଯିବାପାଇଁ ଉଠିଲାବେଳେ ଭଦ୍ରବ୍ୟକ୍ତିଙ୍କ କଠୋର ମୁହଁ ଭାବପ୍ରବଣତାରେ ନମ୍ର ହୋଇ ଆସିଥିଲା । କହିଲେ—ତମରି ପରି ଜଣେ ସାଥୀର ମୋର ପ୍ରୟୋଜନ ଥିଲା । ତମକୁ ଦେଖିଲାବେଳୁ ମୋର ବିଶ୍ୱାସ ହୋଇଛି, ତମେ ମୋ ପରିବାରକୁ ନିଜର କରିବ ।

ଛନ୍ଦା ସଙ୍ଗେ ଘରଯାଏ ଛାଡ଼ିବାକୁ ଯିବା ଅନୁରୋଧକୁ ଛନ୍ଦା ସହଜରେ ଟାଳଦେଲା—ମୋ ଘର ତ ଏଇ ଦିଶୁଛି ପ୍ରାୟ, ଏଇ ସାମ୍ନା ମୋଡ଼ରେ ଗଲେ ଡୃଡ଼ୀୟ ଘରଟା । ଆପଣ ବରଂ ଶୀଘ୍ର ନ ଗଲେ ସାତଟା ବେଳ ବସ୍ ଚାଲିଯିବ, ଆଜି ଆଉ ବସ୍ ପାଇବେନି ।

ବିଦାୟ ନେଇ ଦୁଇ ଚାରିପାଦ ଗଲାପରେ ଛନ୍ଦା ଫେରିଚାହିଁଲା—ଭଦ୍ରଲୋକ ଶୀଘ୍ର ପାଦରେ ଚାଲି ଯାଉଥିଲେ, ଆଦୌ ପଛକୁ ନ ଅନେଇ ।

ପାଦ ତଳର ମାଟିକୁ ଅନେଇ ଛନ୍ଦା ଅନ୍ୟମନସ୍କ ହୋଇ ଭାବୁଥିଲା—କୁଆଡ଼େ ଯିବାକୁ ହେବ ତାକୁ । ଆଉ ତଳକୁ ମୁହଁ ପୋତି ପାଦ ଘୋଷାରି ଯାଉ ଯାଉ ଝଲକାଏ ପବନର ଧକ୍କାରେ ମୁହଁ ଉଠାଇ ସେ ଦେଖିଲା—ଠିକ୍ ସାମ୍ନାର ମେଘୁଆ ଆକାଶ ଆଡ଼ୁ ଉଠାଇଛି ଝଡ଼—ମାଡ଼ି ଆସୁଛି ନାହିଁ ନ ଥିବା ଅନ୍ଧାରିଆ ମେଘ ଓ ଧୂଳିଆ ଅଣଚାଶ ପବନ ।

ଆଉ ଛନ୍ଦା ଏ ଅନ୍ୟ ରାସ୍ତାରେ କାହିଁକି ଚାଲୁଛି ? ସେ ଦେଖିଲା, ଚାଲୁ ଚାଲୁ ସେ କେତେବେଳେ ନିଜ ଘର ରାସ୍ତାରେ ନ ଯାଇ କେନାଲ କୂଳେ କୂଳେ ଚାଲିଛି—ବାଁପାଖେ ଧାଡ଼ି ହୋଇ ଘଞ୍ଚ ହେଜହେଗ ବଂଗ୍ଲୋମାନେ । ଝଡ଼ ଉଠେଇଛି ଆକାଶରେ ।

ଲୋକଙ୍କ ଆଖି କମ୍ବା ଖାଲି ଘରକୁ ଆଉ ଭୟ ନାହିଁ - ନିଶ୍ଚିନ୍ତ ଭବିଷ୍ୟତ ଆଗରେ । ନିରାପତ୍ତା ଓ ସ୍ୱାଚ୍ଛନ୍ଦ୍ୟ ବାଣ୍ଟି ନେବାର ଚୁକ୍ତିନାମା ସରିଛି । ସନ୍ଧ୍ୟାର ନିଶୂନ୍ ରାସ୍ତା ବି ତାକୁ ଶଙ୍କିତ କି ଆତ୍ମସଚେତନ କରୁନାହିଁ; କିନ୍ତୁ କାହାକୁ ଏତେ ଭୟ ଲାଗୁଛି, କାହାଠୁ ଏମିତି ଦୌଡ଼ି ପଳେଇବାକୁ ମନ ହେଉଛି ? ବଡ଼ ବଡ଼ ପାହ୍ମଣ୍ଡ ପକେଇ ସେ ଶୂନ୍‌ଶାନ୍ ରାସ୍ତାରେ ବି କାହିଁକି କେଉଁ ସଙ୍କୀର୍ଣ୍ଣ ଗଳିରେ ପେଶି ହୋଇ ନିଃଶ୍ୱାସ ରୋକି ଯିବାର ଏ ଅନୁଭୂତି ?

ପ୍ରଭାତ ସର୍ତ୍ତ ରଖିନାହିଁ ନ ଥିଲା । ରମେଶବାବୁ ଚାହାନ୍ତି ସର୍ତ୍ତବନ୍ଧନ୍ ସମ୍ପର୍କ । ବୋଉ କହେ ସର୍ତ୍ତ ନେଇ ହିଁ ତ ଜୀବନ । ଆଉ ନିଜକୁ ସମ୍ପୂର୍ଣ୍ଣ ସମର୍ପି ଜଣକ ପାଖେ ଲେଟି ଯିବା ପର ପ୍ରେମକଥା ସେ ପଢ଼ିଛି, ଶୁଣିଛି—ନିଜେ ଜାଣିନାହିଁ ।

ଚପ୍‌ଚୁପ୍ ତା' ପାଦତଳେ ଲମ୍ବିଥିବା ବାଟ ଚାଲି ଆସିଥିଲା ସେ ଆଜଯାକେ—ବୋଉର ଆଦର୍ଶ ସଙ୍ଗେ ଯୁକ୍ତ କରିନାଇଁ କି ପ୍ରଭାତର ମତ କାଟିବାକୁ ଚେଷ୍ଟା କରିନାଇଁ । ତେବେ ଦୁହିଙ୍କ ସଙ୍ଗେ ମନେ ମନେ ଅମତ ହୋଇ କେଉଁ ଆଶା ମନରେ ପୋଷିଥିଲା—ସମ୍ଭବତଃ ସେଇ ଦୁଇ ବିପରୀତକୁ ମିଳାଇଥିବା କେଉଁ ମଧୁର ସ୍ରୋତଟିଏ ତାକୁ ମିଳିଯିବ ? କେବେ ହୁଏତ ସେ ପାଇଯିବ ସମ୍ପର୍କଟିଏ, ଯେଉଁଠି ସର୍ତ୍ତର ବାଧବାଧକତା ନ ଥିବ—ଆକର୍ଷଣରେ ଗାଢ଼ତା ନିଜେ ହିଁ ଜଡ଼ାଇ ଧରିବ ଦୁଇ ଜଣଙ୍କୁ ସବୁଦିନ ପାଇଁ ?

ତା' ହୁଏନାହିଁ ପ୍ରକୃତ ଜୀବନରେ ସେ ଜାଣିଥିଲା । ତଥାପି ମୁହଁ କରି ବାଟ ଚାଲୁଥିଲା ଓ ସ୍ୱପ୍ନ ଦେଖୁଥିଲା, ନିଶ୍ଚୟ ଦିନେ ଏ ନିଛାଟିଆ ରାସ୍ତାର ଅନ୍ତ ହେବ ।

ହଠାତ୍ ଅନ୍ତ ଆସିଗଲା—ଏତେ ଅତର୍କିତରେ ଯେ ସେ ଆଶ୍ଚର୍ଯ୍ୟ ହେବାକୁ ସୁଦ୍ଧା ବେଳ ପାଇଲା ନାହିଁ । ରାସ୍ତା ସରି ନ ଥିଲା ଠିକ୍—ହଠାତ୍ ଭୁଷୁଡ଼ି ପଡ଼ିଥିବା କେଉଁ ପର୍ବତର ଶିଳାଖଣ୍ଡମାନ ତା' ରାସ୍ତା ମଝିରେ କାନ୍ଥ କୁଢ଼େଇ ହୋଇଗଲେ ଯେପରି । ଆଉ ସ୍ଥିର ହୋଇଯିବାର ଅଚୂନକ ଭୟ ତାକୁ ଜଡ଼ କରିଦେଇଥିଲା ।

ତେବେ କୁଆଡ଼େ ମୁହାଁଇଚି ସେ ଏ ଝଡ଼ ରାତିରେ ? ଏକୁଟିଆ କେବେ ବି କୌଣସି ପ୍ରଶ୍ନର ସମାଧାନ ପାଇଁ ସେ ସାହସ କରିଚି ? ବୋଉ କାହିଁକି ତୁ ପାଖରେ ନାହୁଁ, ଏ ଝଡ଼ ରାତିରେ ନିଶ୍ଚିତଭାବେ ମୋତେ ଘରକୁ ଟାଣିବାକୁ ? ମୋତେ ଶିଖେଇ ମଣେଇବାକୁ ?

ଛନ୍ଦା ଅବଶ୍ୟ ବୁଝିପାରିଥିଲା ଏ ଉର୍ଦ୍ଧ୍ୱଶ୍ୱାସୀ ଭୟ ଥରେ ତାକୁ କାବୁ କଲାପରେ ସେ ଆଉ ଧୋ-ବାପ୍ଧା ଗୀତ ଗାଇ ନିଜକୁ ଶୋଇ ପକାଇ ପାରିବନି ।

ରମେଶବାବୁଙ୍କ ଘର—ଶୋଇବା ଘରୁ ଆଲୁଅ ଦିଶୁଛି । ବର୍ଷା ଭାଉଜ ନାହାନ୍ତି । ଛନ୍ଦାର ପାଦ ଅଟକିଗଲା ।

—ଯାଉଥିଲ, ଝଡ଼ ଉଠେଇଲ, ଗୃଳ ଆସିଲ । ତମ ସଙ୍ଗେ କଟିଯିବ କଷ୍ଟ ସମୟ—

ଖାଲି ରାସ୍ତା । କେହି କୁଆଡ଼େ ନାହିଁ । ଦୂର ରାସ୍ତାଆଡ଼ୁ ଖଣ୍ଡି ଆ-ଭୂତଟାଏ ଦିଶୁଚି—ଧାଇଁ ଧାଇଁ ଆସୁଚି ଖଣ୍ଡି ଆଭୂତ—ଅଣନିଃଶ୍ୱାସିଆ ଘୂରି ଘୂରି ଆସି ଗିଳି ପକାଉଛି ଗୋଟାପଣେ, ଧୂଳିରେ ରୁନ୍ଧ ହୋଇଯାଉଚି ଆଖି ନାକ—ଦାନ୍ତ ଘୃପିଲେ ରଗଡ଼ ହେଉଚି ବାଲି—

ଆଃ—କୋଉଠି ସେ ଆଲୁଅଟା ଦିଶୁଥିଲ – ଉଷୁମ ଜୀବନ୍ତ ଆଲୁଅଟିଏ ? ଝଡ଼ର ସୁଉ ସୁଉ ଭିତରେ ବି ପକ୍କା ରାସ୍ତା ଉପରେ ନିଜ ଚପଲ ଶବ୍ଦ ଶୁଣିପାରୁଥିଲ ଛଡା – ମୁହଁ ଉପରେ ରୁମାଲ୍ ଘୃପି ସେଇ ଧୂଳିପଟଳ ଭିତରୁ ଦିଶୁଥିବା ଝରକାର ଆଲୁଅ ଆଡ଼କୁ ସେ ଦୌଡ଼ୁଥିଲ ।



ମୁଦ୍ରାକର : ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ୍, କଟକ-୭୫୩୦୦୨